ଶୁଦ୍ରମୁନି ୰ ଶାରଳା ଦାସଙ୍କ କୃତ

# ମହାଭାରତ



ପ୍ରକାଶକ- ଧର୍ମଗ୍ରନ୍ଥ ଷ୍ଟୋର ଅଲିଶା ବଜାର, କଟକ-୨

ଶୂଦ୍ରମୁନି ଶାରଳା ଦାସଙ୍କ ବିରଚିତ




# ଦ୍ରୋଣପର୍ବ

(ନୂତନ ମୁଦ୍ରଣ)

ପ୍ରକାଶକ ଓ ପ୍ରାପ୍ତିସ୍ଥାନ -

ଧର୍ମଗ୍ରନ୍ଥ ଷ୍ଟୋର

ପରିଚାଳକ -

ଶ୍ରୀ ବିଦ୍ୟାଧର ସାହୁ

ଅଲିଶା ବଜାର, କଟକ - ୨

ଫୋନ୍ - ୬୦୮୨୯୬,







## ମହାଭାରତ ଦ୍ରୋଣପର୍ବର

# ସୂଚୀପତ୍ର



ଦ୍ରୋଣପର୍ବର ସୂଚିପତ୍ର ସମାପ୍ତ

# ମହାଭାରତ

## ଦ୍ରୋଣପର୍ବ

ନାରାୟଣ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟମୁଦୀରୟେତ୍ ।।
ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା ।
ଆଦୌ ଚାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ।।
ତଂ ବେଦଶାସ୍ତ୍ରପରିନିଷ୍ଠିତ ଶୁଦ୍ଧବୁଦ୍ଧିଂ,
ଚର୍ମାମ୍ବରଂ ସୁରମୁନୀନ୍ଦ୍ର ନୁତଂ କବିନ୍ଦ୍ରଂ ।
କୃଷ୍ଣଦ୍ୱିଦଂ କନକପିଙ୍ଗଜଟାକଳାପଂ,
ବ୍ୟାସଂ ନମାମି ଶିରସା ତିଳକଂ ମୁନୀନାମଂ ।
ଆଦୌ ତଦ୍ଧୃତରାଷ୍ଟ୍ରପଣ୍ଡୁ ଜନନଂ ଲାକ୍ଷାଗୃହେ ଦାହନଂ,
ଦ୍ୟୂତେ ସ୍ତ୍ରୀହରଣଂ ବନେ ବିଚରଣଂ ମତ୍ସାଳୟେ ଗୋପନଂ ।
ଲୀଳା ଗୋହରଣଂ ହ୍ୟନେନ ତରଣଂ ସନ୍ଧିକ୍ରିୟା କୁନ୍ତ୍ରଣଂ,
ଭୀଷ୍ମଦ୍ରୋଣସୁଯୋଧନାଦି ଦଳନଂ ଏତନ୍ମହାଭାରତଂ ।।
ଭୀଷ୍ମଦ୍ରୋଣତଟା ଜୟଦ୍ରଥଜଳା ଗାନ୍ଧାରନୀଳୋତ୍ପଳା,
ଶାଲ୍ୟଗ୍ରହବତୀ କୃପେଣ ବହନୀ କର୍ଣ୍ଣେନ ବେଳାକୁଳା ।
ଅଶ୍ୱତ୍ଥାମାବିକର୍ଣ୍ଣ ଘୋର ମକରା ଦୁର୍ଯ୍ୟୋଧନା ବର୍ତ୍ତିନୀ,
ସୋଽତ୍ତୀର୍ଣ୍ଣ ଖଳୁ ପାଣ୍ଡବୈଃ ରଣନଦୀ ଯତ୍କର୍ଣ୍ଣୋଧାରୋ ହରିଃ ।
ଆଦ୍ୟ ପର୍ବଂ ସଭାପର୍ବଂ ପର୍ବମାରଣ୍ୟକଂ ତଥା ।
ବିରାଟ ପର୍ବ ବିଜ୍ଞେୟଂ ଚତୁର୍ଥଂ ତଦନନ୍ତରଂ ।।
ଉଦ୍‌ଯୋଗଂ ପଞ୍ଚମଂ ପର୍ବଂ ଭୀଷ୍ମପର୍ବଂ ତତଃପରଂ ।
ସପ୍ତମଂ ଦ୍ରୋଣପର୍ବଂ ସ୍ୟାଦ୍ କର୍ଣ୍ଣପର୍ବଂ ତତଃପରଂ ।
ଐଷିକଂ ତୁ ତଥା ପ୍ରୋକ୍ତଂ ଗର୍ଭ ନାଶନମେବଚ ।।
ତ୍ରୟୋଦଶଂ ତୁ ସ୍ତ୍ରୀପର୍ବଂ ପ୍ରଦାନମୁଦକସ୍ୟତୁ ।
ଶାନ୍ତିପର୍ବଂ ତତଃ ପ୍ରୋକ୍ତଂ ଅଶ୍ୱମେଧିକମେବ ଚ ।।
ସ୍ୱର୍ଗାରୋହଣକ ଚୈବ ହରିବଂଶ ତଥୈବଚ
ଇତ୍ୟଷ୍ଟାଦଶପର୍ବାଣା ସଂଖ୍ୟା ଦ୍ୱୈପାୟନେରିତାଃ ।।
ହେମନ୍ତେ ପ୍ରଥମେ ମାସି ଶୁକ୍ଳପକ୍ଷେ ତ୍ରୟୋଦଶେ ।
ପ୍ରବୃତ୍ତ ଭାରତ ଯୁଦ୍ଧ ନକ୍ଷତ୍ରେ ଯମଦୈବତେ ।।
ଭାରତଶତିମାତ୍ରେଣ ଗଙ୍ଗା ସ୍ନାନେନ ମାନବଃ ।
ବିଷ୍ଣୁ ସ୍ମରଣମାତ୍ରେଣ ସର୍ବପାପୈଃ ପ୍ରମୁଚ୍ୟତେ ।।
ପରାଶରାତ୍ମଜ ବନ୍ଦେ ଶୁକତାତ ତପୋନିଧି ।।
ତତ୍ରୈବ ଗଙ୍ଗା ଯମୁନା ଚ ତତ୍ର, ଗୋଦାବରୀ ତତ୍ର ସରସ୍ୱତୀ ଚ ।
ସର୍ବାଣି ତୀର୍ଥାନୀ ବସନ୍ତି ତତ୍ର ଯତ୍ର ଯତ୍ରାଚ୍ୟୁତୋଦାରକଥା ପ୍ରସଙ୍ଗଃ ।।

## ଶାରଳାଙ୍କ ବନ୍ଦନା

ଜୟ ଜୟ ଦିଗମ୍ବରୀ ତ୍ରିପୁରୀ ମୋହିନୀ
ଜୟ ମାଗୋ ଶାକମ୍ବରୀ ଦୁରିତ ନାଶିନୀ ।
ଶ୍ରୀସିଦ୍ଧଶାରଳାରୂପେ ଏ କଳିଯୁଗରେ
ଭକ୍ତଙ୍କ ପାଇଁ ବସିଛୁ ଝଙ୍କଡ଼ପୁରରେ ।
ତୋହର ପ୍ରସନ୍ନେ ମାଗୋ ଏ ମହାଭାରତ
ଅକ୍ଳେଶରେ ଲେଖିବାକୁ ଭାବଇ ମୋ ଚିତ୍ତ ।
ଏବେ ଦ୍ରୋଣପର୍ବ କଥା ଲେଖିବି ଗୀତରେ
ପଦମାନ କହିଦିଅ ବସି ମୋ କଣ୍ଠରେ ।
ଶୁଣ ସୁଜ୍ଜନରେ ମହାଭାରତର ବାଣୀ
ଅନାୟାସେ ତରିଯିବ ଭବସିନ୍ଧୁ ପୁଣି ।



## ଦୁର୍ଯ୍ୟୋଧନର ମ୍ଳେଚ୍ଛରାଜା ସହିତ ଭେଟ ଓ ଜଳଧର ବ୍ୟୂହ ଦର୍ଶନ

ମନୁ ରାଜା ପଚାରିଲେ ଅଗସ୍ତି ମୁନିଙ୍କି
ଦୁର୍ଯ୍ୟୋଧନ ଯାଇଥିଲେ ଭୀଷ୍ମଙ୍କ କତିକି ।
ତିଆରିଲେ ଯେ ଅନେକ ମତେ ଗଙ୍ଗାସୁତ
ନିରାଶ ହୋଇଲେ ଶୁଣି ରାଜା କୁରୁନାଥ ।
ତଦନ୍ତେ କି ହେଲା ଫେଡ଼ି କହ ବ୍ରହ୍ମଚାରୀ
ବଦନ୍ତି ଅଗସ୍ତି ଯେଉଁପରି କୃଷିନାରୀ ।
ବଳଦ ହଜାଇ ଏଣେତେଣେ ଖୋଜି ବୁଲି
ଭୀଷ୍ମଙ୍କ ଅଭାବେ ରାଜା ହେଲା ସେହିପରି ।
ଇତସ୍ତତଃ ହୋଇ ଏଣେ ତେଣେ ବୁଲୁଥିଲା
ଅରୁଣ ପ୍ରକାଶେ ଦ୍ରୋଣ ଗୁରୁଙ୍କୁ ଦେଖିଲା ।
ଦ୍ରୋଣ ବୋଇଲେ ବାତୁଳ କିମ୍ବା ତୁ ରାଜନ
ଦୁର୍ଯ୍ୟୋଧନ ବୋଲେ ଭୀଷ୍ମ ହେବାରୁ ମଉନ
ତହୁଁ ଦ୍ରୋଣ ବୋଲେ ରାଜା ଶୁଣ ମୋ ବଚନ
ନୈର୍ଋତ ଗିରିକୁ ବାବୁ ଚଳସି ବହନ ।
କର୍ମକୁ ଆଦରି ଚଳେ ମାନଚକ୍ରବର୍ତ୍ତୀ
ନୈର୍ଋତ ପର୍ବତେ ମିଳୁ ହୋଇଲା ପାହାନ୍ତି ।
ମ୍ଳେଚ୍ଛ ଦେଶର ନୃପତି ମାୟାସୁର ରାଜ
ବଡ଼ କାମରୂପୀ ସେହୁ ଅଟଇ ଦନୁଜ ।
ସଙ୍ଗେ ବତିଶ ଅର୍ବୁଦ ରହିଛନ୍ତି ଯୋଦ୍ଧା
ସେମାନଙ୍କର ଚଳନ୍ତେ କମ୍ପେ ବାରାନିଧି ।
ଡଗର ମୁଖୁ ଭାରତ ସମର ସେ ଶୁଣି
ସଗର୍ବରେ ଆସେ ଘେନି ଥାଟର ପଲାଣି ।
ପ୍ରଭାତେ ରୈବତଗିରି ବିଜେ ଧାର୍ତ୍ତରାଷ୍ଟ୍ରି
ଯାଇଣ ମ୍ଳେଚ୍ଛରାଜାର ସହିତରେ ଭେଟି ।
ଅଳକିତ ଥାଟ ଦେଖି ମାନଚକ୍ରବର୍ତ୍ତୀ
ପାଣ୍ଡବଙ୍କ ସୈନ୍ୟପ୍ରାୟ ମଣି କଲା ଭ୍ରାନ୍ତି ।
ଆସନ୍ତେଣ ଯୋଦ୍ଧାମାନେ କରନ୍ତି ପହିଜ
ସେ ନିଉନ ତାର ପକ୍ଷେ କରିବେ ସାହାଯ୍ୟ ।
ଆଶାହୀନ ଲୋକଙ୍କୁ ସେ କରନ୍ତି କାରଣ
କ୍ଷତ୍ରିୟକୁଳ ଦମନ ତାଙ୍କ ବଡ଼ପଣ ।
ଏହି କଥା ଶୁଣି ରାଜା ହୋଇଲେ ଉଷତ
ଥାଟ ନିକଟକୁ ଯାଇ ପୁଚ୍ଛିଲେ ତୁରିତ ।
କେବଣ ଦେଶର ତୁମ୍ଭେ ଅଟ ମହୀପାଳ
ରାଜାଙ୍କୁ ଦେଖି ରହିଲେ ସେ ସକଳ ବଳ ।
ଯୋଦ୍ଧାଏ ପୁଚ୍ଛିଲେ ତୁମ୍ଭେ କେବଣ ନୃପତି
ରାଜ୍ୟେଶ୍ୱର ପରାୟେକ ଦିଶେ ତୁମ୍ଭ ମୂର୍ତ୍ତି ।
ମୁହିଁ ଅଟେ କୁଞ୍ଜଗଳ ଦେଶ ଅଧୀଶ୍ୱର
ପାଣ୍ଡବଙ୍କ ତୁଳେ ଜାଣ ବିବାଦ ମୋହର ।
ଭୀଷ୍ମ ବୋଲିଣ ମୋହର ଯେଉଁ ମହାରଥୀ
ତାହାର ପ୍ରତିଜ୍ଞା ପାଇ ପାଣ୍ଡବେ ଅପ୍ରୀତି ।
ସାକ୍ଷାତରେ ବଳୀୟାର ଅଟେ ନିଜ କର୍ମେ
ପର୍ଶୁରାମ ପରାଜୟେ ଯାହାର ସଂଗ୍ରାମେ ।
ବିପାକ କର୍ମ ମୋହର ଦଇବ ଅବଳେ
ସେ କ୍ଷତ୍ରିୟ ଶରଶଯ୍ୟା କଲା ବୃଦ୍ଧକାଳେ ।
ତାହାଙ୍କ ବିହୀନେ ମୁହିଁ ହୋଇ ନିରିମାକ୍ଷୀ
ପଳାଇବି ଇଚ୍ଛାକଲେ ସ୍ୱରାଜ୍ୟ ଉପେକ୍ଷି ।
ହୋଇବି ଭିକ୍ଷାଶୀ ବନେ ଯୋଗୀରୂପ ଧରି
ଛାଡ଼ିଲି ଯେ ମାୟା ମୋହ ଧନ ପୁତ୍ର ନାରୀ ।
ଆହେ ମେଚ୍ଛ ନରପତି ଶୁଣି ତୋର ବାନା
ଶରଣ ବତ୍ସଳ ତୋତେ ବୋଲୁଥାନ୍ତି ସିନା ।
ନିରକ୍ଷ ଚାତକ ମତ ଅଟଇ ମୁଁ ଜାଣି
ସ୍ୱର୍ଗ ଜଳଧାରା ପ୍ରାୟ ଏ ତୋହର ବାଣୀ ।
ତାହା ଶୁଣିଣ ବୋଇଲା ମ୍ଳେଚ୍ଛ ନରପତି
ତୁ ଯେବେ ଏଡ଼େ ଦୁଃଖୀ ମୁଁ ହେଲି ତୋରକତି
ନିଶ୍ଚିନ୍ତରେ ଥାଅ ଏବେ ନ ଛାଡ଼ି ତୋ ରାଜ୍ୟ
ପାଣ୍ଡବ ତୁଳେ ସମର କରିବାକ ଆଜ ।
ଆଜ ତୋର ଥାଟେ ସେନାପତି ହୋନ୍ତୁ ଦ୍ରୋଣ
ନସୈନ୍ୟ ଘେନି ପାଣ୍ଡବଙ୍କ ସଙ୍ଗେ କର ରଣ ।
ଆମ୍ଭର ସଞ୍ଚିତ ଜଳଧର ବ୍ୟୂହ ଗୋଟି
ଶ୍ରୀକୃଷ୍ଣ ଏଣେ ଆସନ୍ତୁ ଘେନିଣ କିରୀଟୀ ।
କୃଷ୍ଣ ଅର୍ଜ୍ଜୁନ କାଲି ତୋ ସମରେ ନ ଥିଲେ
ଚାରି ପାଣ୍ଡବଙ୍କୁ ଜିଣିବୁଟି ତୋର ବଳେ ।
ରାଜା ବୋଲେ ତୁ ଜିଣିଲେ କୃଷ୍ଣ ଅର୍ଜ୍ଜୁନଙ୍କୁ
କ୍ଷଣକେ ଜିଣିବି ମୁହିଁ ଚାରି ପାଣ୍ଡବଙ୍କୁ ।

ପୂର୍ବେ ଗିରି ପଶ୍ଚିମରେ ଥାଇ ପୀଢ଼ ଚାରି
ଉତ୍ତର ମୈନକା ଦକ୍ଷଭାଗେ ଯେ ଅଙ୍ଗୁରୀ ।
ପଞ୍ଚଦଶ ଯୋଜନ ତା ମଧ୍ୟସ୍ଥଳ ଅଛି
ଚଉକତି ସରସ୍ୱତୀ ଯମୁନା ବେଢ଼ିଛି ।
ତହିଁର ମଧ୍ୟରେ ଜଳଧର ବ୍ୟୂହ ରଚି
ଅନେକ ମାୟା ସେ ମ୍ଲେଚ୍ଛ ଜାଣଇ ଯେ ପାଞ୍ଚି
ଦ୍ୱାବିଂଶ ଖଣାରେ ଉନବିଂଶ ଯେ ପାଚେରୀ
ଅଠାଣୋଇ ଶତ ଦ୍ୱାରେ ସେନା ସଞ୍ଚାରି ।
ଅଭେଦ ବ୍ୟୂହ ଏ ପୁଣି ଦୈତ୍ୟ କାମରୂପୀ
ପଞ୍ଚଦ୍ୱାରେ ରହିଲେକ ସବୁ କୋଣ ବ୍ୟାପୀ ।
ମନ ଭେଦିପାରେ ଯେହୁ ନିଜେ ଯୋଗବଳେ
ସେ ଜଳଧର ବ୍ୟୂହକୁ ଭେଦିବ ସେ ହେଲେ ।
ସ୍ୱର୍ଗ କରିପାରେ ତଳ ମଞ୍ଚକୁ ଉପର
ଏ ସୈନ୍ୟ ଅଭେଦ୍ୟ ବ୍ୟୂହ ଅଷ୍ଟଚକ୍ରାକାର ।
ସେହି ମ୍ଲେଚ୍ଛ ଦେଶ ରାଜା ଘେନିଣ ନୃପତି
ଜଳଧର ବ୍ୟୂହକୁ ଯେ ରଚିଲାକ ରାତି ।
ଆହେ ମନୁ କୃଷ୍ଣାର୍ଜ୍ଜୁନ ଆସିବେକ ଏଣେ
ଚକ୍ରବ୍ୟୂହେକ କରିବେ ଗୁରୁ ଦ୍ରୋଣ ତେଣେ ।
ମ୍ଳେଚ୍ଛ ନୃପତି ବୋଇଲା ଚାରିହେଁ ମରିବେ
କୃଷ୍ଣ ଅର୍ଜ୍ଜୁନ ଯଦ୍ୟପି ଏଠାକୁ ଆସିବେ ।
ଚାରି ପାଣ୍ଡବଙ୍କୁ ଧରି ଜିଣି ତୁମ୍ଭେ ରଣେ
କୃଷ୍ଣ ଅର୍ଜ୍ଜୁନଙ୍କୁ ମୁହିଁ ମାରିବଇଁ ଏଣେ ।
ଜଳଧର ବ୍ୟୂହ ଦେଖି ତୋଷ ନରପତି
ବିଜୟ କରିଲା ତହୁଁ ତେଜି ମନୁ ଭ୍ରାନ୍ତି ।
ଆହେ ପ୍ରଭୁ ପୂର୍ଣ୍ଣବ୍ରହ୍ମ ଚତୁର୍ଦ୍ଧା ମୂରତି
ବଡ଼ ଦେଉଳରେ ନରେ ଦର୍ଶନ ପାଆନ୍ତି ।
ତୋହର ଯେ ଆଦିଅନ୍ତ ନ ପାରିବ କହି
ସଦାଶିବ ନ ପାରନ୍ତି ତୋ ପାଦକୁ ଧାୟି ।
ତୁ ଆଦି ପୁରୁଷ ସର୍ବଭୂତେ କରୁ ବାସ
ଜ୍ଞାନ ଅଜ୍ଞାନରେ ହେଉ ଦୃଶ୍ୟ ବା ଅଦୃଶ୍ୟ ।
ନାଭି କମଳରୁ ଜାତ କରିଲୁ ତୁ ବ୍ରହ୍ମା
ସେତ ନ ଜାଣି ପାରିଲା ତୋହର ମହିମା
ଚଉଦ ବ୍ରହ୍ମାଣ୍ଡ ନାଥ ଶରଣ ସୋଦର
ମୁହିଁ ଅକିଞ୍ଚନ ନର ବାରେ ଦୟାକର ।
ପଚିଶ ପ୍ରକୃତି ମୋତେ କଲେଣି ଆକୁଳ
ତେଣୁ ସଂସାର ସାଗରେ ନ ମିଳଇ କୂଳ ।
ତୋ ନାମ ରସନା ରଟୁ ନ ହୋଇ ବିମନ
ମୋହର ଅରାତି ଚକ୍ରେ କର ତୁ ଛେଦନ ।
ଏ ଶୂଦ୍ରମୁନି ଶାରଳା ଦାସର ବିନତି
ଅନ୍ତିମ କାଳରେ ପୁଣି ପାଇବି ମୁକତି ।

## ଦ୍ରୋଣ ସେନାପତି ହୋଇ ଚକ୍ରବ୍ୟୂହ ନିର୍ମାଣ ଏବଂ ମ୍ଳେଚ୍ଛ ରାଜାର ବଂଶାନୁଚରିତ

ପଚାରିଲେ ବୈବସ୍ୱତ ମନୁ ନୃପବର
ହେ ଅଗସ୍ତି ମୁନି କୁହ ମୋ ପୁଚ୍ଛିବା ଗିର ।
ଦୁର୍ଯ୍ୟୋଧନ ମ୍ଳେଚ୍ଛରାଜା ନିକଟରୁ ଆସି
ପୁଣି କେଉଁ କୃତ୍ୟ କଲେ କହନ୍ତୁ ପ୍ରକାଶି ।
ସେହି କଥା ଶୁଣିବାକୁ ମୋହର ମାନସ
କହନ୍ତି ଅଗସ୍ତି ମୁନି ଶୁଣ ହେ ନରେଶ ।
ପ୍ରବେଶିଲା କୁରୁପତି ଦ୍ରୋଣଙ୍କ ସନ୍ନିଧେ
ତାଙ୍କୁ ସେନାପତି କଲା ସେ ଦ୍ୱିତୀୟ ଯୁଦ୍ଧେ ।
ସୁବର୍ଣ୍ଣ ରଥେ ଶାର୍ଦ୍ଦୂଳ ଚର୍ମ ଯତ୍ନେ ଛାଇ
ତା ଉପରେ ଅଷ୍ଟରତ୍ନ ଦେଲାକ ମଣ୍ଡାଇ ।
ଆଲଟ ଚାମର ପଡ଼େ ଉଡ଼ଇ ଯେ ନେତ
ଗଗନକୁ ଗତିକରି ଦିଶେ ସୁଶୋଭିତ ।
ପାଞ୍ଚଲକ୍ଷ ରଥ ପୁଣି ତ୍ରିଂଶଲକ୍ଷ ହସ୍ତୀ
କୋଡ଼ିଏ କ୍ଷଉଣି ଆଣି ସାଜିଲେ ପଦାତି ।
ବୀର କାହାଳି ମର୍ଦ୍ଦଳ ଲକ୍ଷେ ବାଜା ଢୋଲ
ଯମରାଜା ଚମକିଲା ଶବଦ ଗହଳ ।
ଆଲମ୍ୱ ଯେ ଲକ୍ଷେ ଲକ୍ଷେ ଉଦଣ୍ଡ ଯେ ଲକ୍ଷେ
ମୟୂର ପୁଚ୍ଛହିଁ ଲକ୍ଷେ ଚାମରହିଁ ଲକ୍ଷେ ।
ଦ୍ରୋଣଙ୍କର ତୁଲେ ଦେଇ ଅସଂଖ୍ୟ ସଇନି
ମୁକୁଟ ବାନ୍ଧିଲା ରାଜା କରେ ଅର୍ଘ୍ୟ ଘେନି ।
କର୍ଣ୍ଣ ଅଶ୍ୱତ୍ଥାମା ଭୂରିଶ୍ରବା ସୋମଦତ୍ତ
ଶଲ୍ୟ ଶକୁନି ଯେ ମହାମଲ୍ଲ ଜୟଦ୍ରଥ ।
ଯୋଦ୍ଧା ମହାଯୋଦ୍ଧା ସଙ୍ଗେ ଦେଇ କୁରୁପତି
ମୁକୁଟ ବାନ୍ଧିଲା ଦ୍ରୋଣେ କରି ସେନାପତି ।
ଅନେକ ସାନନ୍ଦ ହୋଇ ସାଜନ୍ତି ସଇନି
ଦ୍ରୋଣ ସେନାପତି ବୋଲି ଶୁଭିଲାକ ଧ୍ୱନି ।
ସେନାପତି ହୋଇ ଚଳିଗଲେ ଗୁରୁ ଦ୍ରୋଣ
ସଜ ହୋଇଣ ଆସନ୍ତି ସର୍ବ ଯୋଦ୍ଧାମାନ ।
ବାଜେ ମଙ୍ଗଳ ମହୁରି କରି ମିଷ୍ଟଧ୍ୱନି
ଅମର ବୃନ୍ଦ ଘେନି କି ବିଜେ ସସ୍ତ୍ରଯୋନି ।
ମକର ଶୁକଳପକ୍ଷ ଏକାଦଶୀ ତିଥି
ସେ ଆରଦ୍ରା ନକ୍ଷତ୍ରରେ ଅଟନ୍ତି ପାହାନ୍ତି ।
ସେହିଦିନ ସେନାପତି ଭରଦ୍ୱାଜ ଶିଷ୍ୟ
କୁରୁକ୍ଷେତ୍ର ମଣ୍ଡଳରେ ହୋଇଲେ ପ୍ରବେଶ ।
ଉପାୟ କରିଣ ଗୁରୁବ୍ୟୂହକେ ରଚିଲା
ଚକ୍ରବ୍ୟୂହ ବୋଲି ଯାହା ବିଖ୍ୟାତ ହୋଇଲା

ବଡ଼ ଦୁରାପଦ ବ୍ୟୂହ ଅଟଇ ପ୍ରଚଣ୍ଡ
ନାଗବନ୍ଧରୁ ବତ୍ରିଶ ଅଟେ ଅରଦଣ୍ଡ ।
ନବଲକ୍ଷ ରଥୀ ପୁଣି ନବଲକ୍ଷ ହସ୍ତୀ
ଚାରିସହସ୍ର ଅଶ୍ୱ ନ କ୍ଷଉଣୀ ପଦାତି ।
ଏତେକ ସୈନ୍ୟମାନଙ୍କୁ ଘେନି ଗୁରୁ ଦ୍ରୋଣ
ବ୍ୟୂହ ଦ୍ୱାରକୁ ଆବୋରି ରହିଲେ ଆପଣ ।
ତିନିଲକ୍ଷ ଅଶ୍ୱ ହସ୍ତୀ ଚୌଦଲକ୍ଷ ରଥ
ଦ୍ୱିତୀୟ ଦ୍ୱାରରେ ଘେନି ରହେ ଜୟଦ୍ରଥ ।
ବେନିଲକ୍ଷ ରଥୀ ହସ୍ତୀ ଚୌଦଲକ୍ଷ ହୟ
ତୃତୀୟ ଦ୍ୱାରେ ରହିଲେ କର୍ଣ୍ଣ ମହାରାୟ ।
ତିନିଲକ୍ଷ ହସ୍ତୀ ପାଞ୍ଚଲକ୍ଷ ରଥ ରଥୀ
ଏହା ତଳେ ତିନିକ୍ଷୌଣୀ ଆବର ପଦାତି ।
ଏତେକ ସୈନ୍ୟ ଘେନିଣ ବୀର ଶଲ୍ୟ ରାୟ
ଚତୁର୍ଥ ଦ୍ୱାରେ ରହିଲେ ହୋଇଣ ନିର୍ଦ୍ଧୟ ।
ଲକ୍ଷେକ ରଥ ଆବର ଦୁଇଲକ୍ଷ ହସ୍ତୀ
ତିନିଲକ୍ଷ ଅଶ୍ୱ ଚାରିକ୍ଷଉଣୀ ପଦାତି ।
ଘେନି ପଞ୍ଚମ ଦ୍ୱାରରେ ସ୍ଥିର ଭୂରିଶ୍ରବା
ସୋମବଂଶୀ କ୍ଷତ୍ରୀ ହୁଏ ସମରେ ମଘବା ।
ନବଲକ୍ଷ ରଥ ଆଉ ନବଲକ୍ଷ ହସ୍ତୀ
ଏକାଦଶ ଲକ୍ଷ ଅଶ୍ୱ ନ କ୍ଷୌଣୀ ପଦାତି ।
ଷଷ୍ଠଦ୍ୱାରେ ରହିଲେ ଯେ ଘେନି କୃପାଚାର୍ଯ୍ୟ
ସଙ୍ଗେ ଅଛନ୍ତି ତାଙ୍କର ତିନିସସ୍ର ଗଜ ।
ଲକ୍ଷ୍ମଣକୁମର ପୁଣି ମନ୍ତ୍ରୀ ଯେ ଶକୁନି
ସପ୍ତମେ ଜଗିଲେ ଦଶସସ୍ର ସୈନ୍ୟ ଘେନି ।
ଅଷ୍ଟମ ଦ୍ୱାରେ ସତର ସହସ୍ର ନୃପତି
ସୈନ୍ୟ ଘେନିଣ ରହିଲା ମାନଚକ୍ରବର୍ତ୍ତୀ ।
ଅତି ଅଗୋଚର କଥା ନବମ ଦୁଆରେ
ପିମ୍ପୁଡ଼ି ଯିବାକୁ ବାଟ ନ ମିଳେ ସେଠାରେ ।
ଦଶମ ଦ୍ୱାରେ ରହିଲା ଦ୍ରୋଣ ପୁଣ ଦ୍ରୋଣି
ହସ୍ତୀ ଅଶ୍ୱ ପଦାତିକ କେ ପାରିବ ଗଣି ।
ଏଥୁ ଅନନ୍ତରେ ଯେଉଁ ଦ୍ୱାର ଏକାଦଶ
ଦୁଃଶାସନ ତୁଲେ ରହେ ଦୈତ୍ୟ ଅଲମ୍ଭୁଷ ।
ପଚିଶ ଲକ୍ଷ ଚାଳିଶ ସସ୍ର ମତ୍ତକରୀ
ଅଶ୍ୱପଦାତିକ ସଂଖ୍ୟା କହି ତ ନ ପାରି ।
ଅସମ୍ଭବ ସୈନ୍ୟ ଘେନି କୁରୁକୁଳ ସାଇଁ
ଚକ୍ରବ୍ୟୂହ ମଧ୍ୟରେ ସେ ରହିଲେକ ଯାଇଁ ।
ଚକ୍ରବ୍ୟୂହ ଦେଖିଣ ସେ ଆନନ୍ଦ ନରେନ୍ଦ୍ର
ଦ୍ରୋଣକୁ କହଇ ଶିରେ ଦେଇ କର ଦ୍ୱନ୍ଦ୍ୱ ।
ବିପାକ କର୍ମ ମୋହର ଯେତେ ଦିନ ଥିଲା
ମେଳାଯୁଦ୍ଧେ ଭୀଷ୍ମ ତେଣୁ ଶରଶଯ୍ୟା କଲା ।

ଏସନକ ବୁଦ୍ଧି ଯେବେ ଥିଲା ଦ୍ରୋଣଗୁରୁ
ଆଗୁ ଏହା ନ କରିଲୁ କେଉଁ ସକାଶରୁ ।
ମୁହିଁ ଆଶ୍ଚର୍ଯ୍ୟ ହୋଇଲି ଚକ୍ରବ୍ୟୂହ ଚାହିଁ
ଦେବଦାନବ ଭେଦନ୍ତା ଯାକୁ କେହି ନାହିଁ ।
ସାଧୁଦ୍ରୋଣ ମହାରଥୀ ଏ ତୋହର ବୁଦ୍ଧି
କୁରୁବଳ ରକ୍ଷଣେ ତୋ ଅଭୟ ବାରିଧି ।
ଏହା ଶୁଣି ପୁଚ୍ଛାକଲା ବୈବସ୍ୱତ ମନୁ
ଏବେ ସଂକ୍ଷେପି କହିବା ଘଟରଷି ସୂନୁ ।
ସେ ଜଳଧର ବ୍ୟୂହକୁ କଲେ ଯେଉଁମାନେ
ସେମାନେ କେ ଅଟନ୍ତି ଯେ କହ ବିଦ୍ୟମାନେ
କି ଅବା ପାଣ୍ଡବ ଶତ୍ରୁଥିଲେ ତାଙ୍କ ପାଶେ
କିମ୍ପା ଜଳଧର ବ୍ୟୂହ ପାତିଲେ ସେ ରୋଷେ
ଶୁଣ ଆହେ ମହାରାଜା ବିଲଙ୍କ ନୃପତି
କହୁଅଛି ସେହି କଥା ଶୁଣ ଦେଇ ମତି ।
କଣୟବିନ୍ଦୁ ନାମକ ସତ୍ୟଯୁଗ ରାୟେ
ପ୍ରୟାଗତୀର୍ଥେ ଗଙ୍ଗାକୁ ଧ୍ୟାନରେ ଲଗାଏ ।
ଦଶସହସ୍ର ବରଷ ପରିଯନ୍ତେ ସେବି
ତାହାଙ୍କୁ ପ୍ରସନ୍ନ ତହୁଁ ହୋଇଲେ ଜାହ୍ନବୀ ।
ଧବଳ ଶୁଦ୍ଧସ୍ଫଟିକ ପ୍ରାୟ ତାଙ୍କ କାୟେ
ତ୍ରିଅମ୍ବକଙ୍କ ମଉଳି ଭୂଷିତ ସେ ମାୟେ ।
ପବିତ୍ରକାରିଣୀ ସେହୁ ଅଟନ୍ତି ମହୀରେ
ଅର୍ଦ୍ଧକାୟେ ବିଜେକଲେ କଣୟ ଆଗରେ ।
ପ୍ରସନ୍ନ ହୋଇଣ ଆଜ୍ଞା ଦେଲେକ କପାଳୀ
ବରମାଗ କଣୟରେ ପ୍ରସନ୍ନ ମୁଁ ହେଲି ।
ଶୁଣି ପ୍ରତିବାକ୍ୟ କହେ ଅନଙ୍ଗର ନାତି
ପ୍ରସନ୍ନ ହେଲୁ କି ମୋତେ ଅଭୟା ପାର୍ବତୀ ।
ଗଙ୍ଗା ବୋଇଲେ ତୋହର ଯାହା ମନଇଚ୍ଛା
ମାଗରେ କଣୟବିନ୍ଦୁ ପୂରାଇବି ବାଞ୍ଛା ।
ମାତ ଐଶାନ୍ୟ କୋଣର ଭ୍ରତଖଣ୍ଡ ଦେଶେ
ମୋହର ରାଜ୍ୟ ଅଟଇ ତହିଁର ପାରୁଶେ ।
ମାଗୋ ଧନରେ ମୋହର ନଥାଏ ତୃପତି
ସଦା ତୋର ଧର୍ମେ ମୋର ନାରାୟଣ ଭକ୍ତି ।
ମାଗୋ ମାଗିବି ବର ମୁଁ ଆଗୋ ଦୟାମୟୀ
ତୋହର ପ୍ରସନ୍ନେ ନର ସର୍ବସିଦ୍ଧି ପାଇ ।
ମାଗୋ ପ୍ରୟାଗ ତୀର୍ଥରୁ ମୋ ନଗର ଯାଏ
ବେନିତାଳ ଗଭୀରରେ ହେବ ନଦୀଟିଏ ।
ଗଙ୍ଗା ବୋଇଲେକ ତୁରେ କଟିଯାଅ ରେଖା
ମୁହିଁ ତୋର ସଙ୍ଗେ ସଙ୍ଗେ ଯାଉଥିବି ଏକା ।
ତହୁଁ ରେଖା କାଟି କାଟି ଚଳେ ନୃପମଣି
ପଛେ ପଛେ ଗୋଡ଼ାଇଲେ ଦେବୀ ସୁରଧୂନୀ

ଚାରିଯୁଗରେ ରଖିଲା ସେ ରାଜାର ଧର୍ମ
ସେ ନଦୀ କଣୟରେଖା ବୋଲି ହେଲା ନାମ
ସେହି ନଦୀର ଉତ୍ତର ଭାଗ ଦିଗ ଗଲେ
ଅରବିନ୍ଦ ନାମେ ଗିରି ସପ୍ତଶାଖା ତଳେ ।
ମ୍ଳେଛନଗର ବୋଲିଣ ନଗ୍ରେକ ଅଛଇ
ତା ଆୟତନ ପଞ୍ଚାଶ ଯୋଜନ ଅଟଇ ।
ତିନିଶତ କ୍ରୋଶ ତହିଁ ଅଟେ ଦିବ୍ୟସ୍ଥାନ
ସେ ସ୍ଥାନେ ବାସ କରନ୍ତି ସାଧୁ ଯେ ସୁଜନ ।
ଚାରିସହସ୍ର ମାତଙ୍ଗ ଥାଆନ୍ତି ତାହାର
ଅଶୀ ସସ୍ର ରଥ ଅଠାଅଶୀ ସସ୍ର ବୀର ।
ପଞ୍ଚଷଠି ଅର୍ବୁଦ ଯେ ତୁରଙ୍ଗମ ଥାନ୍ତି
ନବଲକ୍ଷ ସୈନ୍ୟ କଣୟକୁ ଖଟିଥାନ୍ତି ।
ମହାକୋଟୀଶ୍ୱର ସେହୁ କଣୟ ନୃପତି
ସୁବୁଦ୍ଧି ସାଧୁ ଉପାୟେ ଅଟେ ଚକ୍ରବର୍ତ୍ତୀ ।
କଣୟରୁ ବାହାରିଛି ସେ କଣୟ ନଦୀ
ତେଣୁ ଦେଶଲୋକ ଧନ ବଳରେ ପ୍ରସିଦ୍ଧି ।
ସେ ନଦୀତୀରରେ ଅଛି ଯେତେ ଯେତେ ଦେଶ
ସବୁଙ୍କରି ରହିଅଛି ତହିଁ ରତ୍ନକୋଷ ।
କଣୟବିନ୍ଦୁ ନନ୍ଦନ ଭୂପାଳ ନୃପତି
ଭୂପାଳ ସୁତ ଅରୁଣ ରାଜା ଚକ୍ରବର୍ତ୍ତୀ ।
ଅରୁଣ ନନ୍ଦନ ନାମ ଅଟେ ବୈଲୋଚନ
ବିତ୍ତପାଳ ବୋଲି ଅଟେ ତାହାର ନନ୍ଦନ ।
ବିତ୍ତପାଳର ନନ୍ଦନ ବୀରପାଳ ନାମ
ବୀରପାଳର ନନ୍ଦନ ନଈର୍ରୀତ ସେନ ।
ଶରତଚନ୍ଦ୍ର ବୋଲି ତା ସୁତ ଚକ୍ରବର୍ତ୍ତୀ
ତାହାର ନନ୍ଦନ ନାମ ମଦନେଶ ଯତି ।
ତାହାର ନନ୍ଦନ ନାମ ନୈର୍ଋତ ନୃପତି
ରାହୁର ନନ୍ଦିନୀକି ସେ ବଳେ କଲା ରତି ।
ରାହୁ ନନ୍ଦିନୀ ଭେବଳା ଅଟେ ରୂପବତୀ
ତାଠାରୁ ହୋଇଲେ ପାଞ୍ଚପୁତ୍ର ଉତପତ୍ତି ।
ହୃତକେଶୀ ମଦନେଶ ନରାକୁଳ ନାମ
ନିରାକୁମ୍ଭ କରଞ୍ଚକ ହୋଇଲେ ଜନମ ।
ଯଦୁବଂଶେ ସେହିମାନେ ହୋଇଲେ ବିବାଦୀ
ରାକ୍ଷସୀଠାରୁ ସେ ଜାତ ମହା ଅପରାଧୀ ।
ଏହାଙ୍କ ବଂଶରେ ଜନ୍ମି ମାୟାସୁର ବୀର
ସମସ୍ତ ଜିଣିଲା ହନ୍ତକାରୁ ସେ ଅସୁର ।
ମାୟାସୁର ସୁତ ମେରୁଶୂଳ ରାଜା ହେଲେ
ଯଦୁବଂଶ ବାଦେ ତାକୁ ପାଣ୍ଡବେ ମାଇଲେ ।
ମେରୁଶୂଳ ସୁତ ଯେ କାର୍ତ୍ତିକେଶ୍ୱର ବୀର
ମେଦିନୀ ସହି ନ ପାରେ ତାହାର ଯେ ଭାର ।
ପାଣ୍ଡବେ ବନବାସକୁ ଗଲେ ଯେତେବେଳେ
ରହିଲେ ହିଡ଼ିମ୍ବ ବନେ ବିରୁବଟ ତଳେ ।
ସେହି ବନରେ ଦ୍ରୌପଦୀ ପାକାସ୍ପର୍ଶ ହୁଏ
ଗୁପତେ ରହିଲେ ତହିଁ ସପ୍ତଦିନ ଯାଏ ।
ସପ୍ତଦିନେ ବାହାରିଲେ ଶୁଦ୍ଧସ୍ନାନ ପାଇଁ
ଗୁପତରେ ପ୍ରବେଶିଲେ ନଦୀତୀରେ ଯାଇ ।
ସ୍ନାନକରି ଦେବୀ ଫେରି ଆସିବାର କାଳେ
କାର୍ତ୍ତିକେଶ୍ୱର ଦଇତ ଧରିଲାକ ବଳେ ।
ସେ ଦେବୀଙ୍କୁ ଟାଣି ଟାଣି ନେଉ ଘୋରବନ
ପାରିଧିକୁ ଯାଇଥିଲେ ଦେଖିଲେ ଅର୍ଜ୍ଜୁନ ।
ଦ୍ରୌପଦୀଙ୍କ ହସ୍ତ ଧରି ନେଉଛି ଅସୁର
ଦକ୍ଷିଣ ହସ୍ତରେ କର୍ଣ୍ଣକର୍ଣ୍ଣାରି ତାହାର ।
ଉଚ୍ଚସ୍ୱରରେ ରୋଦନ କରଇ ପାଞ୍ଚାଳୀ
ଯାଆନ୍ତେ ଅର୍ଜ୍ଜୁନ ତାକୁ ଧଇଲେ ଓଗାଳି ।
ଅସୁର ତୁଲେ ଅନେକ ହୋଇଲା ସମର
ଅର୍ଜ୍ଜୁନ ତାହାକୁ ପ୍ରାଣେ କରିଲେ ସଂହାର ।
କାର୍ତ୍ତିକର ପୁତ୍ର ପୁଣି ସମୟେ ଅସୁର
ପଞ୍ଚବଟୀରେ ମାଇଲେ ତାକୁ ବୃକୋଦର ।
ବଂଶର ନିଧନ ଯହୁଁ ଦେଖିଲେକ ମୟେ
ତେଣୁ ପାଣ୍ଡବ ବିବାଦୀ ସେହିଦିନୁ ହୁଏ ।
ବୋଇଲେ ପାଣ୍ଡବେ ମୋର ହରିଲେକ ଆଧି
ସେ ନିମନ୍ତେ ଜିଣିବାକୁ ପାଞ୍ଚିଲେ ଏ ବୁଦ୍ଧି ।
ତେଣୁ ଦୁର୍ଯ୍ୟୋଧନେ ସାହା ହୋଇ ନିଶାଚରେ
ଜଳଧର ବ୍ୟୂହ କଲା ଗହନ ଆକାରେ ।
ପାଣ୍ଡବଙ୍କୁ ପୂରାଇଣ ପାଡ଼ିବ କବାଟ
ଏମନ୍ତ ପାଞ୍ଚି ମନରେ କଲାକ ମୁରାଟ ।
ଅଗସ୍ତି ବୋଇଲେ ଏବେ ଶୁଣ ମହୀପାଳ
ସେ ମ୍ଳେଛରାଜାର ସୈନ୍ୟ ଅତ୍ୟନ୍ତ ପ୍ରବଳ ।
ତୁ ପୁଚ୍ଛିଲୁ ମେଛରାଜା ପାଣ୍ଡବେ ଅପ୍ରୀତି
ପୂର୍ବେ ତା ଉପର ବଂଶେ ଘଟିଛି ଏ ରୀତି ।
ଶୁଣି ସାନନ୍ଦ ହୋଇଲେ ବିଲଙ୍କ ରାଜନ
ବୋଇଲେ ଫିଟିଲା ଥିଲା ଯେ ସନ୍ଦେହମାନ ।
ଜଳଧର ବ୍ୟୂହ ପୁଣି ଦୈତ୍ୟ କାମରୂପୀ
କ୍ଷଣକେ ଅଦୃଶ୍ୟ ହୋନ୍ତି କ୍ଷଣେ ଦିଗବ୍ୟାପୀ ।
ମହେଶ୍ୱରଙ୍କର ବରରେ ସେମାନେ ଅମର
କୃଷ୍ଣ ଚକ୍ରେକୂଟେ ସର୍ବେ ହୋଇଲେ ସଂହାର ।
ଏହିପରି ଅଟେ ଜଳଧର ବ୍ୟୂହ କଥା
ତା ବିସ୍ତାରି କହିବାକୁ ମୁଁ କି ସାମରଥା ।
ବନ୍ଦଇ ତ୍ରିଶୂଳଧର ଦେବ ପଞ୍ଚମୁଖ
କିଞ୍ଚିତ ଲୋକନେ ଯାର ନ ରହଇ ଦୁଃଖ ।

ମାତଙ୍ଗ ଚର୍ମ ବସନ ସଦାକାଳେ ତୋର
ପିନାକ ଧାରଣ କରିଥାଅ ନିରନ୍ତର ।
ଅପୂର୍ବ ସୁନ୍ଦର ଦିଶେ ଜଟାଜୂଟ ଭାର
ଶୂଳ ଶକତିରେ ଶୋଭା ପାଉଥାଏ କର ।
ପ୍ରେମେ ଗାଅ ଯେ ତାଣ୍ଡବ ନୃତ୍ୟରସ କଳା
ମଧୁର ଧ୍ୱନିରେ ସଦା ହୋଇଥାଅ ଭୋଳା ।
ଗଳେ ହାଡ଼ମାଳ ତୋର ଲଲାଟରେ ଚିତା
ଦୟାସାଗର ଅଭୟ ବରର ଯେ ଦାତା ।
ମହୀଧର ନାଶଗଲା ଗାୟତ୍ରୀ ବିବାଦେ
ପୁଣ ସେହୁ ଅଙ୍କୁରିଲା ତୋର ପରସାଦେ ।
ଆନନ୍ଦରେ ଯୋଗଲୟେ କରିଥାଅ ସଦା
ବିଶାଶତେ ଆସନ ତୋ ଚଉଷଠି ମୁଦ୍ରା ।
ଅକର୍ମା କର୍ମଦାୟକ ଅଟ ପଞ୍ଚମାଥ
ଭକତ ହିତରେ ସଦା ହୋଇଥାଅ ରତ ।
ପରଂବ୍ରହ୍ମ ନାଥ ନିରାକାର ଯେ ନିର୍ମଳ
ଶରଣରକ୍ଷଣ ନାଥ ଅଭୟ ପୟର ।
ଧନପତି କୁବେର ଯେ ସଦା ଥାଏ ଖଟି
ଭବଜଳୁଁ ତରନ୍ତି ଯେ ଭଜି ତୋ ନାମଟି ।
କାର୍ତ୍ତିକ ବିବାଦେ ତୋଳି ଧଇଲ ଯେ ମେରୁ
ହସ୍ତେ ଧଇଲ ନୋହିଲା କିଛି ସେହି ଗରୁ ।
ଉପୁଡ଼ି ଥିଲେ ସେ ହନ୍ତା ରସାତଳ ମହୀ
ଅଙ୍ଗୁଷ୍ଠିରେ ସପ୍ତଦ୍ୱୀପେ ଥିଲା ତୋର ରହି ।
ସ୍ୱାମୀ ପୂର୍ବକାଳେ ତୁହି ହୋଇ କୁତୂହଳ
ସପତ ସମୁଦ୍ର ରଖିଥିଲୁ କରତଳ ।
ମର୍ଦ୍ଦଳ କଂସାଳ ଆଦି ଯେତେ ମହାଶବ୍ଦ
ସମସ୍ତଙ୍କୁ ବଳେ ତୋର ଡମ୍ବରୁର ନାଦ ।
ସେହି ଦେବ ଦେବ ପାଦପଦ୍ମେ ସଦା ସେବି
କହଇ ଶ୍ରୀ ଶୂଦ୍ରମୁନି ଶାରଳା ଯେ କବି
ବନ୍ଦଇ ଶ୍ରୀ ଗଣନାଥ ଗଜବର ମୁଖ
ବିଚିତ୍ର ନୟନ ତୋର ସୁଢ଼ଳ ସୁରେଖ ।
ଅଭୟ ଦେବ ସ୍ୱାମୀ ତୋ ତାଣ୍ଡବରେ ଭୋଳା
ତାଳଲୟ ବିଶାରଦ ଶିରେ ରଙ୍ଗମାଳା ।
ଗଜର ମସ୍ତକ ପ୍ରଭୁ ମନୁଷ୍ୟର କାୟେ
ମୁହିଁ ଅକିଞ୍ଚନ ବାରେ ହୋଇବା ସଦୟେ ।
ନିରକାର ପୁରୁଷ ତୋ ମହିମା ଅପାର
କୋଟି ଭଣ୍ଡାରରେ ସୁଦ୍ଧା ଖଟଇ କୁବେର ।
ଭାବୁଅଛି ଦିବାରାତ୍ରି ତୋ ଚରଣ ଗୋଟି
ସଦୟ ହୁଅସି ନାଥ ନାହିଁ ମୋ ଆନଟି
କାର୍ତ୍ତିକ ବିବାଦେ ତୁହି ତୋଳିଲୁ ଯେ ମେରୁ
ଥୋର ହସ୍ତରେ ଧଇଲୁ ନ ହୋଇଲା ଗରୁ ।

ଏକକାଳେ ରସାଗତ ହୋଇଲାକ ମହୀ
କିଞ୍ଚିତରେ ବାମକରେ ତୋଳିଦେଲେ ନେଇ
ଧାରଣ ପୁରୁଷ ତୁହି ମହୀ କଲୁ ରକ୍ଷା
ଭକତବତ୍ସଳ ମୋର ପୂରା ମନୋବାଞ୍ଛା ।
ସ୍ୱାମୀ କୁମାର ବୟସେ ଖେଳ କୁତୂହଳେ
ଥୋରହସ୍ତେ ବାରାନିଧି ଶୋଷିଲୁ ତୁ ହେଳେ
କୁତୂହଳ ପୁରୁଷ ତୁ ସଦା ରଙ୍ଗେ ଭୋଳା
ଭାରହର ପୁରୁଷ ପଞ୍ଚମେ ତାଳ ମେଳା ।
କ୍ଷଣକେ ମର୍ଦ୍ଦଳ କ୍ଷଣେ କଂସାଳ ଶବଦ
ଯଥାଭାବେ ଜାଣୁ ସ୍ୱାମୀ ସବୁଙ୍କରି ସ୍ୱାଦ ।
ସ୍ୱାମୀ ତୋର କଉତୁକ ଖେଳଘର ଦେଖି
ଆନନ୍ଦରେ ଶିବ ହେଲେ ପଞ୍ଚଦଶ ଆଖି ।
ଶିବଗଣ ନାୟକ ତୁ ଯମ ଦର୍ପଭଞ୍ଜା
ସର୍ବ ଦେବାଦେବୀ ଅଗ୍ରେ ହୁଏ ତୋର ପୂଜା ।
କାଶୀପୁରକୁ ଦମନ କଲୁ ତୁହି କୂଟେ
ମୁହିଁ ତୋତେ ଭେଟିଲଇଁ ନୀଳ କଚ୍ଛବଟେ ।
କିଞ୍ଚିତ ପ୍ରସନ୍ନେ ମୁହିଁ ମାଗିଲଇଁ ଗତି
ଆଜ୍ଞା ପାଇଲି ପବିତ୍ର ସିଦ୍ଧ ଏହୁ ପୋଥି ।
ବିଘ୍ନରାଜାଙ୍କ ଚରଣେ ସେବା ନିରନ୍ତର
ଶୂଦ୍ରମୁନି ଶାରଳାକୁ କରିବ ଉଦ୍ଧାର ।
ଜୟ ଶାରଳା ଝଙ୍କଡ଼ପୁର ଗ୍ରାମବାସୀ
ଯାହାକୁ ପାଳିଲେ କୃପାଜଳ ମହାଋଷି ।
ସତ୍ୟ ତ୍ରେତୟା ଦ୍ୱାପର ଆବର ଯେ କଳି
ଚାରିଯୁଗ ବହିଗଲା କନ୍ୟାରୂପେ ଖେଳି ।
ଦିନେ ପଚାରିଲେ ତୋତେ କୃପାଜଳ ଋଷି
କହ କେତେକାଳେ ଥିବୁ ଏହି ଭାବେ ବସି ।
ସତ୍ୟ ଯେ ସତରଲକ୍ଷ ଅଠେଶ ସହସ୍ର
ତ୍ରେତାଯୁଗ ବାରଲକ୍ଷ ଛୟାଣୋଇ ବର୍ଷ ।
ଆଠଲକ୍ଷ ଚଉଷଠିସସ୍ର ଯେ ଦ୍ୱାପର
କଳି ଚାରିଲକ୍ଷ କଳି ଚଳିଲା ଏଥିର ।
ପ୍ରାଣତ୍ୟାଗ କଲେ ଜନ୍ମି କେତେ କେତେ ତପୀ
ବାଳିକାରୂପେ ରହିଲୁ ଏତେକାଳ ବ୍ୟାପି ।
ମୁଁ ବ୍ରହ୍ମସାଧକ ଯୋଗୀ ଚିନ୍ତେ ପରମାତ୍ମା
ମୋତେ ଅଗୋଚର ହେଲା ତୋହର ମହିମା
ଆଠ ବରଷ ପ୍ରାୟକ ତୋହର ଶରୀର
ରକେଭେଦ ନାହିଁ କାହିଁ କରିବି ମୁଁ ବର ।
କେବଣ ମହାତ୍ମାଣୀ ଗୋ କହ କିନା ମାୟେ
ଏହିରୂପେ ଘେନିଥିବୁ କେତେକାଳ ଯାଏ ।
ବୋଇଲେ କୁମାରୀ ମୁହିଁ ଅନାଦି ଅପର୍ଣ୍ଣା
ପଞ୍ଚଦଶ ବ୍ରହ୍ମା ଜାଣ ମୋର ଶିଷ୍ୟ ସିନା ।

ମୋର ଇଚ୍ଛାହେଲେ ସିନା କରିବି ମୁଁ ପତି
ଆବର ଅନେକ କାଳ ଥିବି ଏହି ମତି ।
ଯାହାଙ୍କର ପରମାୟୁ ନ ଜାଣିଲେ ବ୍ରହ୍ମା
ମୁଁ କାହୁଁ ବର୍ଣ୍ଣି ପାରିବି ତାଙ୍କ ଗୁଣସୀମା ।
ନର୍ମଦା ସରସ୍ୱତୀ ତୋ ପ୍ରଥମାବତାର
ଯହିଁ ଯୋଗୀମାନେ ସୁଖେ କରନ୍ତି ବିହାର ।
ଦ୍ୱିତୀୟ ଅବତାରରେ ଭୈରବୀ ମୂରତି
ତୃତୀୟରେ ଶୈଳରାଜା ଗୃହରେ ଉତ୍ପତ୍ତି ।
ରୁଧିରେ ଦର୍ଶନ ତୋର ତୃପତି ନିମନ୍ତେ
ବାଳକ୍ରୀଡ଼ା କଲୁ ପର୍ଶୁରାମର ସହିତେ ।
ଦ୍ୱାପରରେ ଅବତାର ସ୍ୱୟଂ ବନମାଳୀ
ନନ୍ଦଘରେ ଜନମିଲ ହୋଇଣ ବିଜୁଳି ।
କଂସ କଚାଡ଼ନ୍ତେ ତୋତେ କଲୁ ଶୂନ୍ୟଗତି
କଳିରେ ପାଳେ କିରାତ ନାମେ ଅଜପତି ।
ଅନେକ କାଳ ରହିଲୁ ପର୍ଶୁରାମ ତୁଳେ
କେବଳ ତୃପତ ହେଉ ରୁଧିର ଦେଖିଲେ ।
ସର୍ବମଙ୍ଗଳା ଶାରଳା ଚଣ୍ଡୀଙ୍କର ନାମ
ଲୟ କରିଅଛି ମୁହିଁ ମନେ ଅବିରାମ ।
ଯାହାର ଦର୍ଶନେ ଧର୍ମ ମୋକ୍ଷ କାମ ଅର୍ଥ
ସେ ପାଦେ ଶାରଳା ଦାସ କରେ ଦଣ୍ଡବତ ।
ଏହା ମୋତେ ଆଜ୍ଞାକର ଆଗୋ ଶାକମ୍ଭରୀ
ଏକାଦଶ ଦିନ ଯୁଦ୍ଧ ଲେଖଇ ଯେପରି ।
ତୁହି ମହାମାୟୀ ମୋତେ ହୁଅସି ସଦୟ
ଜନ୍ମେ ଜନ୍ମେ ମିଳୁଥାଇ ତୋର ପଦାଶ୍ରୟ ।



## ଜଳଧର ବ୍ୟୂହଭେଦ ନିମନ୍ତେ କୃଷ୍ଣ ଅର୍ଜୁନଙ୍କର ଗମନ ଓ ବ୍ୟୂହ ମଧ୍ୟରେ ବନ୍ଦୀ

ଅଗସ୍ତି ମୁନିଙ୍କୁ ମନୁ ରାଜା ପୁଚ୍ଛାକଲା
ଏଥୁଅନ୍ତେ ପୁଣି ତହିଁ କେଉଁ କଥା ହେଲା ।
କହନ୍ତି ଅଗସ୍ତି ମୁନି ଶୁଣ ହେ ରାଜନ
ଦ୍ରୋଣପର୍ବ କଥା ଅଟେ ଅତ୍ୟନ୍ତ ଗହନ ।
ଦ୍ରୋଣ ସେନାପତି ହେଲେ ଯେ ପ୍ରଥମ ଯୁଦ୍ଧେ
ଚକ୍ରାକାରେ ବ୍ୟୂହଭିଆଇଲେ ରଣମଧ୍ୟେ ।
ତହୁଁ ଚାର ଜଣାଇଲା ପାଣ୍ଡବଙ୍କ କତି
ଚକ୍ରବ୍ୟୂହ କରି ଦ୍ରୋଣହେଲା ସେନାପତି ।
ଅତିଭୟଙ୍କର ଅଟେ ଚକ୍ରବ୍ୟୂହ କଥା
ଦେବଦାନବ ଭେଦିବ ନାହିଁ ସାମରଥା ।
ଏହିପରି ଚକ୍ରବ୍ୟୂହ ବାରତାକୁ ଶୁଣି
ସହଦେବଙ୍କୁ ଏକାନ୍ତେ ଘେନି ଚକ୍ରପାଣି ।
ବୋଇଲେ ହେ ସହଦେବ ନିଶିଅର୍ଦ୍ଧକାଳେ
ବିବସନେ ସ୍ୱପନେକ ଦେଖିଲି ମୁଁ ଡୋଳେ ।
ଏକ କ୍ଷତ୍ରିୟକୁମର ବୀରବେଶ ହୋଇ
ବିଷ୍ଣୁ ଚକ୍ରେ ମାରିବାକୁ ମୋତେ ଆକର୍ଷଇ ।
ଦେଖିଲି ସେ ବିଷ୍ଣୁ ଚକ୍ର ଆସି ଅନ୍ତରୀକ୍ଷେ
ବାହୁମୂଳ ଭେଦ କରି ପଶିଲାକ ବକ୍ଷେ ।
ପୁଣି ତକ୍ଷଣେ ସେ ଚକ୍ର ମୋ ପାଶରୁ ଗଲା
ରାମଙ୍କର ହୃଦୟରେ ଯାଇ ବିଦ୍ଧହେଲା ।
ଏହିବାକ୍ୟ ଶୁଣି କହେ ମନ୍ତ୍ରୀ ଚୂଡ଼ାମଣି
ଅଦ୍ଭୁତ ପ୍ରକାର ଏହା ଭବିଷ୍ୟତ ବାଣୀ ।
ଶୁଭ ହେଉ କି ଅଶୁଭ ହେଉ ଏହି କଥା
ବିବସନ ହେତୁ ଯେ ନ ଘଟିବ ସର୍ବଥା ।
ଯାହା ପଚାରିଲ ଆସ କହିବି ଗୋପନେ
ସେ ସକଳ ବିଷୟ ମୁଁ ଆଗରୁଟି ଜାଣେ ।
ଏସନକ ସ୍ୱପନ ଯେ ଦଇବ ନିର୍ମାଣ
ସେ ସକଳ କଥା ଏବେ ମନ ଦେଇ ଶୁଣ ।
ତୁ ଦେବ ଅଟୁ ସକଳ ଭୂତେ ଅଧିକାରୀ
କେଉଁ କଥା ତୋତେ ଅଗୋଚର ଅଧିକାରୀ ।
ସ୍ୱାମୀ ଅର୍ଜୁନ ରଥର ସାରଥି ନିମନ୍ତେ
ଆଦିକି ଅଣାଇଲ ଯେ ସଦ୍ୟ ରକ୍ଷାଅର୍ଥେ ।
ଆଦି ଆପଣ ଆବର ଦ୍ରୌପଦୀ ବିଜୁଳି
ଚାରିହେଁ ଯେ ଉଶ୍ୱାସିଲେ ଭାର ମହୀସ୍ଥଳି ।
ତୋ ଶତ୍ରୁ ଭଣ୍ଡି ବିଜୁଳି ସ୍ୱର୍ଗପୁରେ ଗଲା
କେଶିନୀ ଦ୍ରୌପଦୀ ହୋଇ ଏଠାରେ ରହିଲା
ସ୍ୱାମୀ ଆଣିଛୁ ଆଦିକି ଚଉଦ ବର୍ଷକୁ
ତା ସଂକଳ୍ପ ପୂରିଲା ଯିବ ସେ ସ୍ୱର୍ଗକୁ ।
ଯଦି ଅଭିମନ୍ୟୁ ଆମ୍ଭ ଘରେ ହେଲା ଜନ୍ମ
କାଲିକି ଚଉଦ ବର୍ଷ ହେବ ତାର ପୂର୍ଣ୍ଣ ।
କାଲି ସ୍ୱର୍ଗକୁ ଯଦ୍ୟପି ନ ଦେବୁ ଅଚ୍ୟୁତ
ହରି ଅର୍ଜୁନ କି ଆଉ ରହିବେ ଜୀବିତ ।
ତୁମ୍ଭ ଦୁହିଁଙ୍କୁ ମାରିଣ ଯିବ ସେହୁ ସ୍ୱର୍ଗେ
ତାକୁ ବଞ୍ଚାଇବ ସ୍ୱାମୀ କେବଣ ସରାଗେ ।
ଗୋବିନ୍ଦ ବୋଇଲେ ପୁଣି ଅର୍ଜୁନ ଥାଆନ୍ତେ
ସେ କାହୁଁ ମରିବ ତାକୁ ମାରିବା କେମନ୍ତେ ।
ସହଦେବ ବୋଲେ ସ୍ୱାମୀ ଅଛଇ ଉପାୟେ
ଆଜି କୁମାରକୁ ଛାଡ଼ି ଯିବ ଧନଞ୍ଜୟେ ।
ମ୍ଲେଚ୍ଛରାଜା ନିର୍ମାଣିଛି ଜଳଧର ବ୍ୟୂହ
ଶୁଣିଣ ଅର୍ଜୁନ ତହିଁ ଚଳିବ ନିଶ୍ଚୟ ।
ତୁ ଦେବ ଯିବୁ ତହିଁକି ଅର୍ଜୁନକୁ ଘେନି
ଜଳଧର ବ୍ୟୂହରେ ଯେ ଥିବ ଫାଲଗୁନି ।

ଆମ୍ଭେମାନେ ଚଳିଯିବୁ ସେ ଚକ୍ରବ୍ୟୂହକୁ
ସମରେ ଆଗ କରିବୁ ନେଇ ବାଳକକୁ ।
ଆମ୍ଭ ଦୁହିଁଙ୍କୁ ଜଗିବ ଜୟଦ୍ରଥ ତହିଁ
ହରଙ୍କ ବର ପ୍ରସାଦେ ମାରିବାର ପାଇଁ ।
ଅଭିମନ୍ୟୁ ସଙ୍ଗତରେ ଗୋଳଯୁଦ୍ଧ କରି
ଅନ୍ୟାୟ ପୂର୍ବକ ତାକୁ ପକାଇବେ ମାରି ।
ସହଦେବର ମୁଖରୁ ଏହିବାକ୍ୟ ଶୁଣି
ଆନନ୍ଦରେ ମଧୁରିପୁ କଲେ ଶଙ୍ଖଧ୍ୱନି ।
ଅଭିମନ୍ୟୁର ନିଧନେ ଦ୍ରୌପଦୀ ଝିଙ୍ଗାସେ
କଉରବେ ନାଶଯିବେ ଏହି ବେନି ଦୋଷେ ।
ନିଃସନ୍ଦେହ ବାର୍ତ୍ତା ଯହୁଁ କହେ ସହଦେବ
ଶୁଣି ମନୁ ଭ୍ରାନ୍ତି ତେଜ୍ୟାକଲେ ବାସୁଦେବ ।
ଏମନ୍ତ ବିଚାର କରୁ ପାହିଲା ରଜନୀ
ଦଣ୍ଡ ସାଜ ଦଣ୍ଡ ସାଜ ଶୁଭିଲାକ ଧ୍ୱନି ।
କୃଷ୍ଣ ଅର୍ଜୁନ କହିଲେ ଯୁଧିଷ୍ଠିଙ୍କ କତି
ଚକ୍ରବ୍ୟୂହ କଲେ ଦେବ ଦ୍ରୋଣ ସେନାପତି ।
ପ୍ରଥମରେ ଦ୍ରୋଣ ଦ୍ୱିତୀୟରେ ଜୟଦ୍ରଥ
ତୃତୀୟ କର୍ଣ୍ଣ ଚତୁର୍ଥେ ଶଲ୍ୟ ମହାରଥ ।
ପଞ୍ଚମରେ କୃପାଚାର୍ଯ୍ୟ ଷଷ୍ଠେ ଭୂରିଶ୍ରବା
ସପ୍ତମରେ ଅଶ୍ୱତ୍ଥାମା ଯେତେକ କୌରବା ।
ଏ ଚକ୍ରବ୍ୟୂହକୁ ଦେବ ଅର୍ଜୁନ ନ ଯିବ
କିଏ କେଉଁଦ୍ୱାରେ ଦେବ ସମର କରିବ ।
ପ୍ରଥମରେ ଧୃଷ୍ଟଦ୍ୟୁମ୍ନ ବଚନ ବୋଇଲା
ଦ୍ରୋଣ ଯେଉଁଦ୍ୱାରେ ଅଛି ମୋହର ହୋଇଲା ।
ଦ୍ୱିତୀୟ ଦ୍ୱାରକୁ ଜଗିଅଛି ଜୟଦ୍ରଥ
ଶିଖଣ୍ଡୀ ବୋଲେ ମାରିବି ତା ସୈନ୍ୟ ସହିତ ।
ତୃତୀୟ ଦ୍ୱାରେ ଜଗିଛି ସୂର୍ଯ୍ୟଙ୍କର ସୂନୁ
ସେ ଦ୍ୱାରକୁ ଆବୋରିଲେ ବୀର ଅଭିମନ୍ୟୁ ।
ଚତୁର୍ଥଦ୍ୱାରେ ଅଛଇ ମହାରଥୀ ଶଲ୍ୟ
ଉତ୍ତର ବୋଲେ ମୋ ଭାଗେ ରହୁ ହେବ ଭଲ ।
ପଞ୍ଚମଦ୍ୱାରେ ରହିଛି କୃପାଚାର୍ଯ୍ୟ ଦ୍ୱିଜ
ତାଙ୍କୁ ଆବୋରି ପାଞ୍ଚାଳ ଦେଶ ମହାରାଜ ।
ଷଷ୍ଠଦ୍ୱାରକୁ ଜଗିଛି ବୀର ଭୂରିଶ୍ରବା
ସାତ୍ୟକି ବୋଲେ ସେ ଦ୍ୱାର ମୋତେ ସମର୍ପିବା
ଏହିରୂପେ ଆବୋରିଲେ ଯେ ଯାହାର ଦ୍ୱାର
ବ୍ୟୂହ ଛେଦିବେ ଅର୍ଜୁନ ଯାଇଣ ଭିତର ।
ଅନ୍ୟପାଣ୍ଡବେ ଚଳିବେ ତାଙ୍କ ସମକକ୍ଷେ
ଆଜି ସମରେ କୌରବମାନଙ୍କୁ କେ ରଖେ ।
ସାଜିଲେକ ସୈନ୍ୟ ରଥ ମଣ୍ଡନ୍ତି ଯେ ହସ୍ତୀ
ଉଡ଼େ ଚିରାଳ ପତାକା ହୋଇ ପନ୍ତି ପନ୍ତି ।
ବାହାର ହେଲେ ପାଣ୍ଡବେ କରି ଶଙ୍ଖଧ୍ୱନି
ରେରେକାର ଶବଦରେ କମ୍ପଇ ମେଦିନୀ ।
ବାରୁଣାବନ୍ତ ପୂର୍ବରେ ଦିଶିଲାକ ଥାଟ
ଦେଶାଉର ଜଣାଇଲା ଆସିଣ ନିକଟ ।
ଯୁଧିଷ୍ଠିଙ୍କ ପାଦପଦ୍ମେ ସହସ୍ର ପ୍ରଣମି
ବୋଇଲା ହେ ଶୁଣିବାକୁ ଆଜ୍ଞାକର ସ୍ୱାମୀ ।
ମାୟା ଅସୁର ବୋଲିଣ ମ୍ଳେଚ୍ଛଦେଶ ରାଜା
ମାନଗୋବିନ୍ଦ ନୃପତି ତାକୁ କଲା ପୂଜା ।
ସରସ୍ୱତୀ ତୀରେ ଜଳଧର ବ୍ୟୂହ ରଚି
ପଞ୍ଚସାଗର ଯୋଦ୍ଧାଙ୍କୁ ଘେନି ରହିଅଛି ।
ଯେବେ ଯିବ ଚକ୍ରବ୍ୟୂହ ସମର ଆଡ଼କୁ
ତେବେ ସେ ମ୍ଳେଚ୍ଛ ବାହିବ ଜୟନ୍ତା ଗଡ଼କୁ ।
ଭାଙ୍ଗିଦେବ ଗ୍ରାମଦେଶ ନେବେ ପରବଧୂ
କଟକ ଧ୍ୱଂସିଲେ ହେବ ଆପଣ ଅସାଧୁ ।
ଏମନ୍ତ ବାରତା ଯହୁଁ ଚାର ଦେଲା ଯାଇଁ
ବିଚାରିଲେ ବ୍ୟୂହ ଭେଦି ନ ଜାଣନ୍ତି କେହି ।
ଶ୍ରୀକୃଷ୍ଣ ଚରଣତଳେ ପଡ଼ି ଫାଲଗୁନି
ବୋଲେ ଜଳଧରବ୍ୟୂହ ଚାଲ ମୋତେ ଘେନି
ଗୋବିନ୍ଦ ବୋଇଲେ ତୁମ୍ଭେ ଶୁଣ ଧର୍ମରାୟେ
କପଟ ଯୁଦ୍ଧ ବୋଲିଣ ପାଇଲି ବାର୍ତ୍ତାଏ ।
ଅର୍ଜୁନଙ୍କୁ ସଙ୍ଗେ ଘେନି ଯିବି ଜଳଧରେ
ମ୍ଳେଚ୍ଛ ରାଜାଙ୍କୁ ମାରିବୁ ଯୁଝି ତା ସଙ୍ଗରେ ।
ମୁହିଁ ଯୁଦ୍ଧ କରିବି ସେ ଅସୁର ସଙ୍ଗର
ଜଳଧର ବ୍ୟୂହର ଯେ ଯୁଦ୍ଧ ଅଗୋଚର ।
ସ୍ୱାମୀ ଆଜି ଦିବା ଦଶଦଣ୍ଡକର ମଧ୍ୟେ
ସେ ନିଶାଚର ବଳଙ୍କୁ ବିନାଶିବୁ ଯୁଦ୍ଧେ ।
ଚକ୍ରବ୍ୟୂହ ଦ୍ୱାରେ ସର୍ବେ ଜଗିଥିବ ରହି
ତୁମ୍ଭ ମଧ୍ୟେ ବ୍ୟୂହ ଭେଦି ନ ଜାଣନ୍ତି କେହି ।
ଆମ୍ଭେ ମ୍ଳେଚ୍ଛବ୍ୟୂହ ଭେଦି ଆସିଲେ ଲେଉଟି
ଅର୍ଜୁନ ଭେଦିବେ ପୁଣି ଚକ୍ରବ୍ୟୂହ ଗୋଟି ।
ଯଦି ବା ବିଳମ୍ବ ହେବ ଆମ୍ଭ ଫେରିବାରେ
ତଥାଚ ଚକ୍ରବ୍ୟୂହକୁ ଭେଦିବା ରାତିରେ ।
ସହଦେବ ବୋଲେ ସ୍ୱାମୀ ସର୍ବ ତୁହି ଜାଣୁ
ପାଣ୍ଡବମାନଙ୍କ ଆଶ୍ରା ନାହିଁ ତୋର ବିନୁ ।
ଶ୍ରୀକୃଷ୍ଣ ବୋଇଲେ ଶୁଣ ମୋହର ବଚନ
ଯୁଦ୍ଧ କରୁଥିବ ସର୍ବେ ହୋଇ ସାବଧାନ ।
ଛିଦ୍ରଟାକି ରହିଥିବ ନ ଭେଦିବ ବ୍ୟୂହ
ଆମ୍ଭର ଆସିବା ଯାଏ ବାହାରରେ ଥାଅ ।
ଭୀମ ଦ୍ରୁପଦ ବିରାଟ ସବୁନ୍ତି ତିଆରି
ଜଳଧର ବ୍ୟୂହେ ଗଲେ ଅର୍ଜୁନଙ୍କୁ ଧରି ।

ସରସ୍ୱତୀ ନଦୀ ଯହିଁ ଉତ୍ତରବାହିନୀ
ବାରୁଣାବନ୍ତେ ଭେଟିଲେ କୃଷ୍ଣ ଫାଲଗୁନି ।
ଦେଖିଲେ ସେ ବ୍ୟୂହ ଅଟେ ବିଷମ ପ୍ରମାଦ
ଅସଂଖ୍ୟ ମହିମା ତାର ନ ମିଳଇ ଭେଦ ।
ବ୍ୟୂହ ବିସ୍ତାର ବିଂଶତି ଯୋଜନ ପର୍ଯ୍ୟନ୍ତେ
ଭେଦିବାକୁ ନାହିଁ ବାଟ ନେତ୍ରରେ ଦେଖନ୍ତେ ।
କରାଳବଦନ ବୀରେ ଗଗନେ କ୍ଷେପନ୍ତି
ତର୍ଜନ୍ତି ଗର୍ଜନ୍ତି ଆନ ଆନ ଯେ ମୂରତି ।
ବଡ଼ଆଖି ଉଚ୍ଚଦେହ ଯେସନେ ମନ୍ଦର
କେ ଗଣିପାରିବ ସୈନ୍ୟ ସଂଖ୍ୟା କରି ତାର
କୁଠାର ଖଡ଼ଗ କୁନ୍ତ ଅସିପତ୍ର କାତି
କୋଦାଳ ମୂଷଳ ପର୍ଶୁ କାହାର ଶକତି ।
କେହୁ ଧନୁଶର ଧରି ରହିଛି ଆଡ଼ିଣ
କୁନ୍ତ ଲାଙ୍ଗିଆ କା କରେ କାର ବଜ୍ରବାଣ ।
ଦେଖିକରି ମହାଭୟ ଦାନବ ସଇନି
କୃଷ୍ଣ ବୋଇଲେ କେମନ୍ତେ ଦେଖୁ ଫାଲ୍‌ଗୁନି ।
ଅର୍ଜୁନ ବୋଇଲେ ଏହା ଜିଣିବି କିଞ୍ଚିତେ
ହୃଦେ ବିଚାରେ ନିର୍ଦ୍ଦୋଷୀ ମାରିବି କେମନ୍ତେ
ନୁହନ୍ତି ବଇରୀ କିବା ନ ଲାଗନ୍ତି କେହି
ଅଦୋଷୀ ପ୍ରାଣୀ ମାଇଲେ ହତ୍ୟାଦୋଷ ପାଇ
ବାହା ସ୍ୱାମୀ ତୁରଙ୍ଗମ ବ୍ୟୂହର ଦୁଆର
ଦେଖିବା ଅଟଇ ତାହା କେବଣ ଆକାର ।
ଶ୍ରବଣରେ ଶୁଣିନାହିଁ ଦେଖିନାହିଁ ନେତ୍ର
ଗୁରୁ କହିନାହିଁ ପୁରି ଭେଦିବାର ପଥ ।
ଶୀଘ୍ରେ ନନ୍ଦିଘୋଷ ବାହା ଆହେ ଦେବ ହରି
ଅସ୍ତ୍ର ପ୍ରହାର କରି ମୁଁ ଯାଉଥିବି ମାରି ।
ଗୋବିନ୍ଦ ବୋଇଲେ ଏହି ବ୍ୟୂହ ଅଟେ ପାର୍ଥ
ସଦର୍ପେ ଅଶ୍ୱଙ୍କୁ ଚାଳି ବାହୁଛି ମୁଁ ରଥ ।
ଏତେ କହି କୃଷ୍ଣ ନନ୍ଦିଘୋଷ ରଥ ନେଇ
ଜଳଧର ବ୍ୟୂହଦ୍ୱାରେ ଦେଲେକ ଲଗାଇ ।
ବୀରବର ବୋଲିଣ ଯେ ଦୈତ୍ୟ ସେନାପତି
ତିନିଅର୍ବୁଦ ସେନାଙ୍କ ଆଗରେ ରହିଛି ।
ଅସି ଖଡ଼ଗ କୁଠାର କୋଦାଳ ଆୟୁଧ
ଘେନି ରହିଛନ୍ତି ଯୋଦ୍ଧା କରି ଦ୍ୱାରରୁଦ୍ଧ ।
ସୂଚିମୂନ ଗଳିବାକୁ ତହିଁ ନାହିଁ ବାଟ
ସାଗର ସମ ଦିଶନ୍ତି ମ୍ଲେଚ୍ଛ ରାଜା ଥାଟ ।
ସମୁଦ୍ର ପ୍ରାୟ ଦିଶଇ ଅସୁରଙ୍କ ଥାଟ
ସିନ୍ଧୁ ଗର୍ଜନୁ ଅଧିକ ଶୁଭଇ ମୁରାଟ ।
ବାହିନେଲେ ତୁରଙ୍ଗମ ଦେବ ଜଗନ୍ନାଥ
ପ୍ରଥମ ଦ୍ୱାରରେ ଯାଇଁ ପ୍ରବେଶିଲା ରଥ ।

ଦେଖି ମହାକୋପକରି ସେ କୌଣପ ବଳ
ଏକମୁଖ ହୋଇ ଅସ୍ତ୍ର ବିନ୍ଧିଲେ ସକଳ ।
ଦଶସହସ୍ର ଅଧିକ ଦୈତ୍ୟ ହୋଇମେଳି
ନନ୍ଦିଘୋଷେ ପ୍ରହାରିଲେ ମୂଷଳକୁ ତୋଳି ।
ତାହାଦେଖି ଅରଜୁନ ହୋଇ କୋପଭର
ସୂଚୀକ୍ଷଣ ନାରାଚ ସବୁ କରିଲେ ପ୍ରହାର ।
ପ୍ରତିଜ୍ଞା ଯେ କରୁଥିଲେ ଦୈତ୍ୟ ଅପ୍ରତ୍ୟକ୍ଷେ
ଅସ୍ତ୍ର ବାଜନ୍ତେ ରହିଲେ ଯାଇଁ ଅନ୍ତରୀକ୍ଷେ ।
ମାୟାସମର ଦେଖିଣ ବୀର ଅରଜୁନ
ଶରଘାତରେ ଅର୍ଜୁନ ହେଲେ ଅନ୍ତର୍ଦ୍ଧାନ ।
ଜ୍ୱାଳାବଳି ଅସ୍ତ୍ରଘାତେ ନ ଭେଦିଲା ସେହ୍ନା
ତାହା ଦେଖି ଧନଞ୍ଜୟ କରଇ ଭାବନା ।
ନାରାଚ ଗୁଣେ ବସାଇ ପୁଣି ପଞ୍ଚଷଠି
ଆକର୍ଷି ବିନ୍ଧନ୍ତେ ଶର ଭେଦିଲା କିରୀଟୀ ।
ଆହେ ଚଇତନ ଶୁଣ ଯାହା ଶରାଘାତେ
ଗିରି କମ୍ପମାନ ହୋଇ ପଡ଼େ ଭୂମିଗତେ ।
ସେ ପୁଣି ନିର୍ଘାତଭାବେ କଲା ଶରବୃଷ୍ଟି
ପଞ୍ଚଷଠି ଦୈତ୍ୟ ମାତ୍ର ମଲେ ମହୀଲୋଟି ।
ପଡ଼ନ୍ତେ ଅସୁରବଳ ରଣୁ ଗଲେ ଭାଜି
ପୁଣିହିଁ ଆସିଲେ ଯୋଦ୍ଧା ହୋଇ ଗଳଗାଜି ।
ତ୍ରୈଲୋକ୍ୟବିଜୟୀ ବୋଲି ଅଟେ ଯାର ନାମ
ବିନ୍ଧୁଛନ୍ତି ସେହି ପାର୍ଥ ହୋଇ ଅବିରାମ ।
ଯୋଦ୍ଧାମାନେ ଅସି କୁନ୍ତ ବୁଲାଇଣ ଯାଠି
ରେରେକାର କରି ସର୍ବେ ସମରରେ ଉଠି ।
ବାସବ ନନ୍ଦନ ଅଟେ ରଣେ ଜଗଜ୍ଜିତା
ସପ୍ତଦ୍ୱୀପ ଭେଦିବାକୁ ଯେହୁ ସାମରଥା ।
ତ୍ରିଅମ୍ବିକର ପ୍ରସାଦେ ଅତ୍ୟନ୍ତ ସମର୍ଥ
ବୈଶ୍ୱାନର ପ୍ରାୟେ ତେଜ ଜଗତେ ବିଖ୍ୟାତ ।
ଗହଳ ସମର ତହୁଁ ଦେଖେ ଧନଞ୍ଜୟ
ରାଗରେ ଗର୍ଜନ କରେ କାଳସର୍ପ ପ୍ରାୟ ।
ସୈନ୍ୟହତ ଦେଖି ସେନାପତି ବୀରବର
ହସ୍ତୀ ଆରୋହି ଆସିଲା ଛାମୁକୁ ତାଙ୍କର ।
ତିନି ଅରବୁଦ ସୈନ୍ୟ ଦକ୍ଷିଣ ବାମରେ
ରଖି କୋଟି କୋଟି ଶର ପ୍ରହାର ସେ କରେ ।
ଚତୁର୍ଦ୍ଦିଗରେ ବେଢ଼ିଣ ବିନ୍ଧିଲେ ସେ ଶର
ନନ୍ଦିଘୋଷ କାହିଁ ଅଛି ନୋହିଲା ଗୋଚର ।
ତାହା ଦେଖି ହନୁମାନ ବିସ୍ତାରିଲା ତୁଣ୍ଡ
ସବୁ ଅସ୍ତ୍ର ପଡ଼େ ଯାଇ ତାର ଗର୍ଭ ଖଣ୍ଡ ।
ବିଜେ କର୍ଣ୍ଣ କଟାରିକି ଯମ ଦେଇଥିଲା
ବୀରବର ସେନାପତି କୃଷ୍ଣଙ୍କୁ ମାଇଲା ।

ଯେଉଁପରି ଆକାଶରୁ ପଡ଼ିଲେ ନିର୍ଘାତ
ସେ ଅସ୍ତ୍ର ଆସନ୍ତେ ଶୁଭେ ଶବ୍ଦ ତଦବତ ।
କୃଷ୍ଣଙ୍କୁ ବିରୋଧି ଶର ଦେଖି ସବ୍ୟସାଚୀ
ତୂଣୀର ମଧ୍ୟୁଁ କାଢ଼ିଲା ଏକ ଶର ବାଛି ।
ଏକଘ୍ନୀ ବୋଲିଣ ଅଟେ ତାର ନାମ ଗୋଟି
କୁମ୍ଭକକୁ ମାରିଥିଲେ ସେ ଅସ୍ତ୍ରେ ଧୂର୍ଜ୍ଜଟୀ
ସେହି ଅସ୍ତ୍ର ଗୋଟାକୁ ଯେ ଧରିଣ ଅର୍ଜ୍ଜୁନ
ବ୍ୟୂହର ପ୍ରଥମ ଦ୍ୱାର କଲା ଛିନ୍ନ ଭିନ୍ନ ।
ଦୈତ୍ୟ ଶର ନିବାରି ସେ ସତ୍ୱରେ ଗମିଲା
ବୀରସେନ ସେନାପତି ହୃଦରେ ପଡ଼ିଲା ।
ଉତ୍ତାନଶାୟୀ ହୋଇଣ ପଡ଼ି ମଲା ବୀର
ପୃଥ୍ୱୀକମ୍ପମାନ ହେଲା ଆଘାତେ ତାହାର ।
ଦୁରନ୍ତକ ଦୈତ୍ୟ ପଡ଼ିଲାକ ଅଷ୍ଟାଙ୍ଗତେ
ଦେଖିଣ ମହାବିରସ ରହିଥିଲେ ଯେତେ ।
ଅର୍ଜ୍ଜୁନ ନାରାଚମାନ ବିନ୍ଧେ ଗଳଗାଜି
କେତେ ସୈନ୍ୟମଲେ କେତେ ତହିଁଗଲେ ଭାଜି
ପ୍ରଥମ ଦ୍ୱାରେ ପଡ଼ିଲେ ତିନିକୋଟି ସେନା
ପଦାତି ସୈନ୍ୟର ଅବା କେ କରେ ଗଣନା ।
ରଣ ଆନ୍ଦୋଳ ଲଗାଇ ବୀର ଧନଞ୍ଜୟ
ପ୍ରଥମ ଦ୍ୱାରେ ଦୈତ୍ୟଙ୍କୁ ମାରି କଲେ ଜୟ ।
କେହି ନ ଥିବାର ଦେଖି ପାର୍ଥ ଜଗନ୍ନାଥ
ବ୍ୟୂହ ଭେଦିଣ ଭିତରେ ଘେନି ଗଲେ ରଥ ।
ଦ୍ୱିତୀୟ ଦ୍ୱାରେ ପ୍ରବେଶ ବାସବ ସନ୍ତତି
ଅଛଇ ମରୁତ ନାମେ ତହିଁ ସେନାପତି ।
ମୟୂରକଣ୍ଠ ପରାୟେ ତାର କଣ୍ଠଦେଶ
ଯମ ଦେବତା ତାହାକୁ କରୁଥାଏ ତ୍ରାସ ।
ତ୍ରିବଦନ ଷଡ଼ବାହୁ ସବୁଙ୍କରି କାୟ
ରଣରଙ୍ଗା ସେ ଦାନବେ ତେଜ ରାହୁ ପ୍ରାୟ ।
ବିଶେଷେ ଅସୁରବଳ ଅତ୍ୟନ୍ତ ବିକଟ
ଲମ୍ବ ଲମ୍ବ ଓଷ୍ଠ ପୁଣି ଡଙ୍ଗା ପ୍ରାୟ ପେଟ ।
ଲମ୍ବ ଲମ୍ବ ପାଦ ପୁଣି ବିସ୍ତାରିତ ପାଟି
ତୁଣ୍ଡ ବିସ୍ତାରନ୍ତେ ଦିଶେ ମଧ ଭୁବନଟି ।
ମହା ମହା ଭୟଙ୍କର ଦୈତ୍ୟବଳ ଦେଖି
ଭୟେ ଦେବତା ଚଳିଲେ ଗଗନ ଉପେକ୍ଷି ।
ଗୋବିନ୍ଦ ବୋଇଲେ ତୁହି ଶୁଣ ଧନଞ୍ଜୟ
ଏ ବ୍ୟୂହ୍ୟକୁ ଦେଖି ମୋତେ ମାଡୁଅଛି ଭୟ ।
ପାର୍ଥ ବୋଲେ ଭେଦିବାକୁ ନ ମିଳଇ ବାଟ
ଗୋଚର ନୁହଇ ଦେବ ଅକଳନା ଥାଟ ।
ଏ ବ୍ୟୂହକୁ ଭେଦିବାର ନ ଜାଣଇ ମୁହିଁ
ତୁହି ଯେବେ ଜାଣୁ ମୋତେ କହ ଭାବଗ୍ରାହୀ

ଗୋବିନ୍ଦ ବୋଇଲେ ଶୂନ୍ୟ କାହିଁ ଯିବ ରଥ
ତରତରେ ରହି ବାଣ ବିନ୍ଧୁଥାଅ ପାର୍ଥ ।
ଅଧର୍ମ ଯୁଦ୍ଧକୁ ଆଜ ଆଚରିବା ଜାଣି
ମେଘମାଳେ ପଶି ତୁହି ବାଣ ବିନ୍ଧ ଟାଣି ।
ଅତି ଦୁର୍ଦ୍ଧନ୍ତ ଅଟନ୍ତି ଏ ଅସୁରବଳ
ଏମାନେ ନ ମଲେ ସ୍ଥିର ନୁହେଁ ଭୂମଣ୍ଡଳ ।
ତୁମ୍ଭଙ୍କୁ ମାରିବା ପାଇଁ କରୁଛନ୍ତି ଯୁଦ୍ଧ
କୂଟ କପଟେ ହରିବେ ତୁମ୍ଭର ସମୃଦ୍ଧ ।
ଅନେକ ପ୍ରକାରେ ଦୋଷୀ ଅଟଇ ଯେ ଜନ
ତାକୁ ଧର୍ମ ଆଚରିବା ନୁହେଁ ପ୍ରୟୋଜନ ।
ଏତେ କହି କୃଷ୍ଣ ବ୍ୟୂହ ପାଶେ ରଖି ରଥ
ବୋଇଲେ ଶର ବିନ୍ଧିଣ ସର୍ବ କର ହତ ।
ଯେଉଁ ମାୟାଧରଙ୍କ ଚକ୍ରକୂଟ ବୁଦ୍ଧି
କଥାକଥାକେ ଅର୍ଜ୍ଜୁନ ଦେଲେ ସେ ପ୍ରବୋଧି ।
ବାସୁଦେବଙ୍କ ବଚନେ ଚିତ୍ତ କରି ତୁଷ୍ଟି
ଶୁଣିଣ ସମସ୍ୟା ଆଉ ନ ଦେଲା କିରୀଟୀ ।
ଧାଡିକାରେ ମଧୁରିପୁ ବାହି ଅଶ୍ୱବର
ରଥ ରୁହାଇଲେ ଶୂନ୍ୟଭୁବନ ଭିତର ।
ଗଗନରେ ଥାଇ ଦେବ ତହିଁ କଲେ ବୃଷ୍ଟି
ଜଳଧର ବ୍ୟୂହ ଭେଦ କରିଲା କିରୀଟୀ ।
ପୁଣିହିଁ ଦ୍ୱିତୀୟ ବାର ଅର୍ଜ୍ଜୁନ ଦେଖିଲା
ଜ୍ୱାଳାବଳି ଶର ନେଇ ବେଗେ ପ୍ରହାରିଲା ।
ଆକାଶ ଯେ କମ୍ପିଗଲା ନାରାଚ ଗତିରେ
ଆସି ପଡ଼ିଲା ଅସୁରମାନଙ୍କର ଶିରେ ।
ମସ୍ତକରେ ପଡ଼ି ଶର ଯାଏ ପାଦେ ଗଳି
ଅସାକ୍ଷମ ହୋଇ ଦୈତ୍ୟ ପଡ଼ିଲେକ ଢଳି ।
କେହି ପ୍ରାଣେ ହତ କେହି ହେଲା ମୋହଗତ
ଲୋମ ଲୋମକେ ନାରାଚ ବୃଷ୍ଟି କଲେ ପାର୍ଥ
ଶରବୃଷ୍ଟି ଦେଖି ଦୈତ୍ୟ ଉର୍ଦ୍ଧ୍ୱେ ଦେଲେଦୃଷ୍ଟି
ଆଖିରେ ପଡ଼ିଣ ଶର ତାହା ଯାଏ ଫୁଟି ।
କେବଣ ନାରାଚ ପଡ଼େ କାଳ ବକ୍ଷସ୍ଥଳ
ଭୂମିରେ ପଡ଼ଇ ଯାଇ କା ଶିରକମଳ ।
ରକତେ କର୍ଦ୍ଦମ ହେଲା ସେହି ରଣସ୍ଥଳ
କବନ୍ଧ ନୃତ୍ୟ କରନ୍ତି ହୋଇ ମେଳ ମେଳ ।
କେଉଁ ଦୁର୍ଦ୍ଧାନ୍ତ ଅସୁର ଧାମେ ରୋଷ ହୋଇ
କେଉଁ ଅସୁର ନାରାଚ ଆକାଶେ କ୍ଷେପଇ ।
ଗଦା ମୁଦଗର ଢେଳ ପୁଣି ଚକ୍ର କାତି
କେ ଅସୁର ଧରି ଦୃଷ୍ଟି ଦେଇ ଶୂନ୍ୟ ପ୍ରତି ।
ଅସୁରମାନଙ୍କ ପ୍ରତି ହୋଇ କୋପାନଳ
ଆକାଶୁ ମାରଇ ଶର ଆଖଣ୍ଡଳବାଳ ।

ଗଗନର ଯୁଦ୍ଧ ଦେଖି ବୀର ରୁଦ୍ରମୁଖ
ଶତ୍ରୁକୁ ନ ଦେଖି ରଣେ ହୁଅଇ ବିମୁଖ ।
କୃତାନ୍ତକ ମନ୍ତ୍ରୀ ପୁଣି ବଚନ ପ୍ରକାଶି
ପାଣ୍ଡବ ସମର କରେ ମେଘମାଳେ ପଶି ।
ମୁଖା ଦୁର୍ମୁଖା ନାମକ ଦୁଇଟା ଅସୁର
କ୍ରୋଧଭରେ ଆକାଶକୁ ପ୍ରହାରିଲେ ଶର ।
ଦୈତ୍ୟ ଶର ଆସିବାର ଦେଖିଣ କିରୀଟୀ
କିଞ୍ଚିତ ପ୍ରକାରେ ପକାଇଲେ ତାହା କାଟି ।
ଅର୍ଜ୍ଜୁନର ଶର ବାଜି ଦୈତ୍ୟଙ୍କର ଅଙ୍ଗେ
ମନ ବିଚଳିତ ହୋଇ ନାଚନ୍ତି ସେ ରଙ୍ଗେ ।
କଡ଼ା ବିଜିଘୋଷ ବାଇ ଘୁମୁରା ଦାଉଣ୍ଡି
ମଦଭୋଳେ ନାଚନ୍ତି ଖେମଟା ନାଚଖଣ୍ଡି ।
ବହୁତ ନାରାଚ ଯହୁଁ ବିନ୍ଧେ ଫାଲଗୁନି
ଦ୍ୱିଗୁଣ ମତୁଆଳରେ ହୁଏ ମୁଖଧ୍ୱନି ।
ଗୋବିନ୍ଦ ବୋଇଲେ ଶୁଣ ବୀର ଧନଞ୍ଜୟ
ତୋର ଶରକୁ ଅସୁରେ ନ କରନ୍ତି ଭୟ ।
ଏହିପରି ବଚନକୁ ଶୁଣି ଫାଲଗୁନି
ତୁଣୀରୁ କାଢ଼ିଲା ବାଛି ନାରାଚ ବହ୍ନି ।
ପେଷନ୍ତେ ସେ ଶରଗୋଟି ଗର୍ଜ୍ଜନ ନାଦରେ
ଅନଳ ବୃଷ୍ଟି କରିଲା ଦୈତ୍ୟଙ୍କ ଉପରେ ।
ବହୁତ ସୈନ୍ୟ ପୋଡ଼ିଣ ହୋଇଗଲେ ହତ
ଭୟ ପାଇ କେତେ ସୈନ୍ୟ ହେଲେ ଛିନ୍ନଛତ୍ର ।
ଅର୍ଜ୍ଜୁନ ବୋଇଲେ ବାହ୍ୟେ ବାହା ମୋର ରଥ
ଶତ୍ରୁ ମୁଖ ନ ଦେଖିଲେ ସମର ବିଅର୍ଥ ।
ଶତ୍ରୁ ଆଗମେ ଯଦ୍ୟପି ହେବି ଅଧୋମୁଖ
ରଣ କରିବାରେ ତେବେ ଅଛି ମୋର ସୁଖ ।
ସମର ସମ୍ବର୍ବେ ମୁହିଁ ନୁହଇ ନିସତ
କାତର ଯୋଦ୍ଧାଙ୍କୁ ଶର ନ କରେ ଆଘାତ ।
ଉର୍ଦ୍ଧ୍ୱେ ଥାଇ ଶର ମୁହିଁ କରିଛି କ୍ଷେପଣ
ତେଣୁ ଶତ୍ରୁମାନେ ମୋର ଲଭନ୍ତି କଷଣ ।
ଅର୍ଜ୍ଜୁନ ବଚନ ଶୁଣି ଯାଦବ ଈଶ୍ୱର
ରଥ ଉଭା କଲେ ନେଇ ସେ ବ୍ୟୂହର ଦ୍ୱାର ।
ଅସୁର ସଇନି ଛନ୍ତି ବିଂଶଯୂଣ ଘୋଟି
ଧାଡିକାରେ ନନ୍ଦିଘୋଷେ ଦିଶିଲା କିରୀଟୀ ।
ଅଦଭୂତ ରଥ ଦେଖି ଅସୁର ସୁବାହୁ
ନନ୍ଦିଘୋଷକୁ ବେଢ଼ିଲା ଯେସନେକ ରାହୁ ।
ପୂରାଇ ସେ ବଜ୍ରାବଳୀ ବାଣ ପାଞ୍ଚଦୈତ୍ୟ
ଅର୍ଜ୍ଜୁନକୁ ବୋଲନ୍ତି ସେ ହୋଇ କୋପାନ୍ୱିତ
ଆଜ ତୋର ପ୍ରାଣ ନାଶ କରିବୁ କିରୀଟୀ
ରଣରଙ୍ଗେ ଆମ୍ଭ ଆଗେ ଅଛୁ ଆଜ ଭେଟି ।
ମେଘମାଳେ ପଶି ଯୁଝୁଥିଲା ଅରଜୁନ
ଶିର ଲୋଟାଇଣ ଆଜ ଘେନିବୁ ତୋ ପ୍ରାଣ ।
କେବଳ ପଡ଼ଇ ଜଣା କ୍ଷତ୍ରୀ ସାଧୁପଣ
ସମ୍ମୁଖ ସମରେ ଯେବେ କରୁଥାଏ ରଣ ।
ସ୍ଥିରକରି ବୁଝ ଏବେ ପ୍ରତିଜ୍ଞା ଆମ୍ଭର
ଜିଣା ହରା ଜଣାଯିବ କଲେ ସେ ସମର ।
ଦୁଃସହ ପ୍ରତିଜ୍ଞା କରି କହଇ ସୁବାହୁ
କ୍ରୋଧେ ଓଷ୍ଠ କମ୍ପେ କହି ନ ପାରଇ ଆଉ ।
ଗୁଣେ ଥୋଇଥିବା ପାଞ୍ଚଗୋଟି ଦିବ୍ୟଶର
କୋପେ ପେଷିଲା ତାହାକୁ ଅର୍ଜ୍ଜୁନ ଉପର ।
ଦେବକୀନନ୍ଦନ କାଣ୍ଡ ପଡ଼ିବାର ଦେଖି
କୌମୋଦକୀ ଗଦା ଆଉ ବଞ୍ଚାଇଲେ ମୁଷ୍ଟି ।
ପୁଣି ନାରାଚେ ପୂରାଇ ଶର ପଞ୍ଚଷଠି
ଅର୍ଜ୍ଜୁନର ଉପରକୁ କ୍ରୋଧେ କଲା ବୃଷ୍ଟି
ସେ ନାରାଚ ପଡ଼ିବାର ଦେଖି ବାୟୁବଳା
ଲାଙ୍ଗୁଳରେ ବାନ୍ଧି ସବୁ ଚୂର କରିଦେଲା ।
ପୁଣି ନାରାଚେ ପୂରାଇ ଶର ବିଶାଶତେ
ଘୋର ଅନ୍ଧାର କରିଣ ବିନ୍ଧିଲା ତ୍ୱରିତେ ।
ଏମନ୍ତ ଦେଖିଣ ମନେ ହୋଇ କୁତୂହଳୀ
ଅର୍ଜ୍ଜୁନ ପେଷିଲା ତହୁଁ ଶର ଆର୍ଦ୍ରାବଳୀ ।
ତତକ୍ଷଣେ ପୃଥିବୀ ଯେ ହେଲା ଜ୍ୟୋତିର୍ମୟ
ଦୁଷ୍ଟ ଦାନବ ରହିଲେ ହୋଇଣ ନିର୍ଭୟ ।
ଯେଉଁ କାଳଚକ୍ର ଶର ଯମ ଦେଇଥିଲା
ଆକର୍ଷି ସୁବାହୁ ତାକୁ ଅର୍ଜ୍ଜୁନେ ମାଇଲା ।
ସେ କାଳଚକ୍ର ଆସନ୍ତେ ବୀର ଫାଲଗୁନି
ବଇଷ୍ଣବ ଚକ୍ରେ ପ୍ରତିଶର କଲେ ଘେନି ।
ବେନିଚକ୍ର ପରିତାଳେ ଉଠିଲା ବହ୍ନି
ପ୍ରଳୟକାଳେ ଯେସନେ ଦିଶଇ ଅବନୀ ।
ଆକାଶକୁ ଅଗ୍ନିତ୍ରାସ ହୁଅନ୍ତେ ପ୍ରକାଶ
ଦେବଗଣ ତ୍ରାସେ ସ୍ତୁତି କରିଲେ ବିଶେଷ ।
ଦେବତାଙ୍କ ସ୍ତୁତିବାକ୍ୟେ ହୋଇ ପରସନ୍ନ
ବେନିଚକ୍ରେ ଚଳିଗଲେ ନିଜ ନିଜ ସ୍ଥାନ ।
ଅର୍ଜ୍ଜୁନ ଶରେ ବହୁତ ଦୈତ୍ୟ ହେଲେ ହତ
ତଥାଚ ଯୁଦ୍ଧ କରନ୍ତି ନ ହୋଇ ନିର୍ବୃତ୍ତ ।
ପୁନଃ ପୁନଃ ବିନ୍ଧେ ଦୈତ୍ୟ ଶର ସୂଚିମୁଖ
ଅବିଶ୍ରାନ୍ତ ବିନ୍ଧେ ବାଣ ନୋହିଣ ବିମୁଖ ।
ବୀରବାହୁ ମନେ ପାଞ୍ଚି କଲା ଏକ ବୁଦ୍ଧି
ହନୁ ଅର୍ଜ୍ଜୁନ କୃଷ୍ଣଙ୍କୁ ଶର ବିନ୍ଧେ ସନ୍ଧି ।
ତିନିପଦ୍ମ ସୈନ୍ୟଙ୍କୁ ସେ କରି ଏକମୁଖ
ଧର୍ମ ଉପେକ୍ଷିଣ ଶର ବିନ୍ଧଇ ଦୁର୍ମୁଖ ।

ତାହା ଦେଖିଣ ଆଶ୍ଚର୍ଯ୍ୟ ହେଲା ଫାଲ୍‌ଗୁନି
ଯୁଗାନ୍ତେ ଆଦିତ୍ୟ ଯେହ୍ନେ ଉଦେ ତେଜ ଘେନି
ସିନ୍ଧୁ ଉଚ୍ଛୁଳିଲେ ଶୁଭେ ଯେହ୍ନେ ଘୋରନାଦ
ଖଣ୍ଡ ଶଇଳ ପଡ଼ନ୍ତେ ଯେପରି ଶବଦ ।
ଚମକ ପଡ଼ିଲା ଶତେ ଯୋଜନ ପର୍ଯ୍ୟନ୍ତେ
ଶରେ ଶରେ ଅନ୍ଧକାର ଘୋଟିଲା ଜଗତେ ।
ଅର୍ଜ୍ଜୁନକୁ ନ ଦିଶଇ ଶ୍ରୀକୃଷ୍ଣ ସାରଥି
ଶ୍ରୀକୃଷ୍ଣଙ୍କୁ ଚାରିଅଶ୍ୱ ପୁଣି ନ ଦିଶନ୍ତି ।
ଆବରହିଁ ନ ଦିଶଇ ସେ କପିକେତନ
ଶ୍ରୀକୃଷ୍ଣ ଦିଅନ୍ତି ଡାକ ଅଛୁ କି ଅର୍ଜ୍ଜୁନ ।
ଉଚ୍ଚେ ବହୁତ ଡାକିଲେ ଦେବ ଚକ୍ରପାଣି
ଅର୍ଜ୍ଜୁନଙ୍କୁ ନ ଶୁଭିଲା ଶ୍ରୀକୃଷ୍ଣଙ୍କ ବାଣୀ ।
ରଥ ଉପରେ ଥାଇଣ ଦେବ ଶିରୀପତି
ଥିବା ନ ଥିବା ଅଶ୍ୱଙ୍କୁ ଖୋଜି ଆଉଁଷନ୍ତି ।
ଶ୍ରୀକୃଷ୍ଣ ଚତୁର୍ଭୁଜ ଲାଗି ତାଙ୍କ ପିଠି
ଧାତିକାରେ ଅଶ୍ୱ ଗଲେ ଗଗନକୁ ଉଠି ।
ବହୁଦୂର ଗମି ରହିଲେକ ଅନ୍ତରୀକ୍ଷେ
ଲାଗିଅଛି ସଙ୍ଗେ ସଙ୍ଗେ ଦୂରାନ୍ତକ ରକ୍ଷେ ।
ଅର୍ଜ୍ଜୁନକୁ ମାର ବୋଲି ଶୁଭେ ମୁଖଧ୍ୱନି
ଆକାଶେ ଥାଇଣ ତାହା ଶୁଣେ ଫାଲଗୁନି ।
ଶ୍ରୀକୃଷ୍ଣ ଚରଣ ତଳେ ହୋଇ ପ୍ରଣିପାତ
ବୋଇଲେ ସମର ମୁଖେ ନିଅ ମୋର ରଥ ।
ଗୋବିନ୍ଦ ବୋଇଲେ ଦେଖ ଆନନ୍ଦ ମନରେ
ଆପେ ଆପେ ହଣାମରା ହେଉନ୍ତୁ ଅସୁରେ ।
ଆଦିତ୍ୟ ଉହାଡ଼େ ଯହୁଁ ଘୋଟିଲା ରଜନୀ
ନିଜ ପର ବୋଲି ଦୈତ୍ୟ ନ ପାରିଲେ ଚିହ୍ନି ।
କାହାର ଅସ୍ତ୍ରକୁ କିଏ ନିଅଇ ଛଡ଼ାଇ
ଏକ ପ୍ରହାରରେ ଦଶବିଂଶ କେ ମାରଇ ।
ପଳାଇଗଲା କ୍ଷତ୍ରୀକୁ ଗୋଡ଼ାଇ ମାରନ୍ତି
ଆପଣେ ଆପଣେ ତହିଁ ହଣାହଣି ହୋନ୍ତି ।
ଏକ ଶିରରେ ଆରେକ ଅସ୍ତ୍ର ନେଇ ପିଟି
ଅସାଷ୍ଟମେ ଦୈତ୍ୟବଳ ମଲେ ମହୀଲୋଟି ।
ଅର୍ଜ୍ଜୁନ ବୋଇଲେ ଶୁଣ ଦେବ ରମାନାଥ
ଜଳଧର ବ୍ୟୂହକୁ ଯେ ବାହା ମୋର ରଥ ।
ଅକାରଣେ ରଥ କିମ୍ପା କରୁ ଅନ୍ତର୍ଦ୍ଧାନ
କ୍ଷତ୍ରିୟ କୁଳକୁ ହେବ ବଡ଼ ଅପମାନ ।
ସମର କରିଣ ଯେବେ ଜିଣିବା ଯୁଝକତେ
ତେବେ ଆମ୍ଭର ସୁଖ୍ୟାତି ହେବ ତ୍ରିଜଗତେ ।
ସମ୍ମୁଖ ସମରେ ଥାଇ ମଲେ ରଣଭୂଇଁ
ବଇକୁଣ୍ଠରେ ବସିବ ଶୁଣ ହେ ଗୋସାଇଁ ।

ଅର୍ଜ୍ଜୁନ ବଚନ ଶୁଣି ବୋଲନ୍ତି ଶ୍ରୀଧର
ବିଷମ ସମର ଏହୁ ମୋତେ ଅଗୋଚର ।
ମରାମରି ହୋଇ ଦୈତ୍ୟ ମରନ୍ତେ ବହୁତ
ପରେ ଦେଖିଲେ ନାହାନ୍ତି ପାର୍ଥ ଜଗନ୍ନାଥ ।
ଆକାଶରୁ ଯହୁଁ ରଥ ଆଣିଲେ ଶ୍ରୀଧର
ପଡ଼ିଲା ପରା ଦେଖନ୍ତି ଥିଲେ ଯେ ଅସୁର ।
କେ ବୋଲଇ କୃଷ୍ଣାର୍ଜ୍ଜୁନ ମରିଲେ ସମରେ
କେ ବୋଲଇ ନନ୍ଦିଘୋଷ ନାହିଁ ତ ଏଠାରେ ।
ମୃତପିଣ୍ଡ ଲେଉଟାଇ ଅସୁରେ ଦେଖନ୍ତି
କିଏ କୃଷ୍ଣ ଅରଜୁନ ବୋଲିଣ ଚିହ୍ନନ୍ତି ।
ଚିହ୍ନ ବର୍ଣ୍ଣ ଲୋଡ଼ି ଯହୁଁ ନ ପାଇଲେ ରଣେ
ବୋଇଲେ କୃଷ୍ଣ ଅର୍ଜ୍ଜୁନ ପଳାଇଲେ କେଣେ ।
ଏମନ୍ତ ବିଚାରୁଛନ୍ତି ଅସୁର ସଇନି
ନନ୍ଦିଘୋଷ ଘେନି ବିଜେ କୃଷ୍ଣ ଫାଲ୍‌ଗୁନି ।
ପାଞ୍ଚଜନ୍ୟ ଶଙ୍ଖନାଦ କଲେ ଦଇତ୍ୟାରି
ଦେବଦତ୍ତ ଶଙ୍ଖ ପାର୍ଥ ଫୁଙ୍କିଲେ ଓଟାରି ।
ରଥଧ୍ୱଜେ ହନୁମନ୍ତ ବସିବାର ଦେଖି
ପଳାନ୍ତି ଅସୁର ସୈନ୍ୟ ସମର ଉପେକ୍ଷି ।
ଗାଣ୍ଡିବ ଧନୁର ଯହୁଁ ଶୁଭେ ଗୁଣଘୋଷ
ଲେଉଟି ଧାଇଁଲେ ତହୁଁ ସେ ସବୁ ରାକ୍ଷସ ।
ସମରେ ରାକ୍ଷସମାନେ ଅଟନ୍ତି ବିଭ୍ରାନ୍ତି
ନାରାଚ ଧରି ବେଢ଼ିଲେ ରଥ ଚଉକତି ।
ଯଥା ରକ୍ତବୀର୍ଯ୍ୟ ରଣ କଲା ସତ୍ୟଯୁଗେ
ମୁଖରାବ କରି ହେଲେ ଶ୍ରୀକୃଷ୍ଣଙ୍କ ଆଗେ ।
ଦଶବିଂଶ ପଚାଶ ଯେ ପୂରାଇଣ ଶର
ତିନିଲକ୍ଷ ଯୋଦ୍ଧାମିଶି କରନ୍ତି ସମର ।
ଶ୍ରୀକୃଷ୍ଣ ବୋଇଲେ ତୁହି ଶୁଣ ଧନଞ୍ଜୟ
ଲାଘବ ଯୁଦ୍ଧେ ଅସୁର ନ ହୋଇବେ କ୍ଷୟ ।
ଧ୍ୟାନେ ସୁମରଣା କଲେ ହେବ ବନମାଳି
ପାତାଳୁ ଆସିଲେ ଶର କଙ୍କାଳି ବେତାଳି ।
ଲହ ଲହ ଜିହ୍ୱା କେଶ ଅଟଇ ଖାଙ୍କର
ଧରିଥାନ୍ତି ହସ୍ତେ ସେହୁ କାତି ଯେ ଖର୍ପର ।
ପର୍ଶୁ ଆବର କୁଠାର ବେନିଙ୍କର ହସ୍ତେ
ପୃଥିବୀରେ ପାଦ ଶିର ଗଗନର ପଥେ ।
ଶ୍ରୀକୃଷ୍ଣ ବୋଇଲେ ଦେଖି ପୁଣି ଧନଞ୍ଜୟ
ଏ ବେନି ଅସ୍ତ୍ରକୁ ଘେନି ଶତ୍ରୁ କର କ୍ଷୟ ।
ଅର୍ଜ୍ଜୁନ ବୋଇଲେ ଏତ ଅଟଇ ଭୈରବୀ
ମୋହର ନୁହଇ ଅସ୍ତ୍ର କେମନ୍ତେ ପେଷିବି ।
ଅପରିଚିତ ଶର ସେ କିପରି ପେଷଇ
ଧର୍ମ ନାଶଯାଇ ପୁଣି ଦୂଷିତ ହୁଅଇ ।

ଗୋବିନ୍ଦ ବୋଇଲେ ଯେତେ ଅସ୍ତ୍ର ଅରଜିଲୁ
ପ୍ରସ୍ତାବ ପ୍ରତିଗ୍ରହରେ ସମସ୍ତ ପାଇଲୁ ।
ଖାଣ୍ଡବ ଦହନ କାଳେ ଅଗ୍ନି ଦେବତାଏ
ସର୍ବଦେବତାଙ୍କ ଅସ୍ତ୍ର ତୋତେ ଆଣିଦିଏ ।
ରାଜସୂୟ ଯାଗକାଳେ ତୁ ଗଲୁ ପାତାଳେ
ଅଷ୍ଟକୁଳନାଗ ଶର ଦେଲା କନ୍ୟାତୁଲେ ।
ଗୋପନରେ ବୁଲୁଥିଲୁ ହର ଉଦ୍ୟାନରେ
ରୁଦ୍ରଦେବତା ତୋଷିଲୁ କିରାତ ରୂପରେ ।
ପାଶୁପତ ଶର ଆଉ ଅମୋଘ ଶକତି
ଭୋଳା ହୋଇକରି ଦେଲେ ତୋତେ ପଶୁପତି
ସଦାଶିବଙ୍କ ବଚନେ ତୃପତ ଗଉରୀ
ଦେଲେ ସେ ଅକ୍ଷୟ ତୂଣ ତୋତେ ଆଣିକରି ।
ପାତାଳ ଶରକୁ ଯେବେ ଏତେ ତୁହି ବାଛୁ
ତେବେ ଏ ଅସ୍ତ୍ର ସକଳ କିପାଇଁ ରଖିଛୁ ।
ମାୟାଧର ପୁରୁଷ ସେ ଦେବ ନରହରି
ଅର୍ଜ୍ଜୁନକୁ ପ୍ରବୋଧନ କଲେ ଏହିପରି ।
କଙ୍କାଳି ବେତାଳି ଦୁଇ ଦେବଶସ୍ତ୍ରଘେନି
ଦୈତ୍ୟଙ୍କପ୍ରତି ପେଷିଲେ ବେଗେ ଫାଲ୍‌ଗୁନି ।
ବେନି ଅସ୍ତ୍ରକୁ ବହୁତ ପ୍ରଣିପାତ ହୋଇ
ବୋଇଲେ ଅସୁର ବଳ ବେଗେ ଖାଅ ଯାଇ ।
ଫାଲଗୁନିର ବଚନେ ଦେବ ଅସ୍ତ୍ର ବେନି
ପଶିଲେ ସମରେ ହୋଇ ପ୍ରଳୟ ବହନି ।
ସଂଗ୍ରାମେ ଯେତେକ ଅସ୍ତ୍ର ପେଷଇ ଅର୍ଜ୍ଜୁନ
ଅସୁରମାନଙ୍କ ଶିର କରଇ ଛେଦନ ।
ପୃଥିବୀ ମଧ୍ୟରେ ଯହୁଁ ହୁଏ ରକ୍ତବୃଷ୍ଟି
ମୃତପିଣ୍ଡ ଚେତାପାଇ ବହନରେ ଉଠି ।
ମୁଖା ଦୁର୍ମୁଖା ନାମରେ ଦୁଇ ଦୈତ୍ୟବୀର
ମେଦିନୀ ନ ସହଇ ଯେ ଦୁହିଁଙ୍କର ଭାର ।
ବିଜେ କର୍ଣ୍ଣ କଟାରୀ ସେ ଦୁହିଁଙ୍କର ହାତେ
ଶୀଘ୍ରରେ ପିଟିଲେ ନେଇ ନନ୍ଦିଘୋଷ ରଥେ
ସେ କୁଠାର ପଡ଼ିବାର ଦେଖି ଫାଲଗୁନି
କୋପଭରେ ପ୍ରହାରିଲା ପାଶୁପତ ଘେନି ।
ମହାଯୋଗେଶ୍ୱରଙ୍କର ଅଟଇ ସେ ବାଣ
ସତ୍ୟଯୁଗେ ଅନ୍ଧକର ଘେନିଥିଲା ପ୍ରାଣ ।
ନାରାଚ ପଡ଼ନ୍ତେ ଉଲ୍‌କାପାତ ହେଲା ମହୀ
ସେ ମହାଅଗ୍ନିର ତାପ କେ ପାରିବ ସହି ।
ମୁଖା ଦୁମୁର୍ଖା ଅସୁର ଥିଲେ ଅସ୍ତ୍ର ଘେନି
ପାଶୁପତାସ୍ତ୍ରେ ଛିଡ଼ିଲା ଦୁହିଁଙ୍କ ମୂର୍ଦ୍ଧନି ।
ଶର ଛାଡ଼ିବାରୁ ତହିଁ ଅସମ୍ଭବ ହେଲା
ଖେଚର ଭୂଚର ହୋଇ କବନ୍ଧ ନାଚିଲା ।
ହୁଁ ହୁଁ କାର ଶବଦରେ କଲେ ଘୋରବାଣୀ
ଗର୍ଭରୁ ମୁଣ୍ଡେକ ଆସି କନ୍ଧେ ଲାଗେ ପୁଣି ।
ଗୋବିନ୍ଦ ବୋଇଲେ ତୁହି ଦେଖରେ ଅର୍ଜ୍ଜୁନ
କନ୍ଧରୁ ଶିରେକ ପୁଣି ହେଲା ଉତପନ୍ନ ।
ପୁଣି ରୁଦ୍ରଶର ପାର୍ଥ ବିନ୍ଧିଲେକ ଟାଣି
ସେହିକ୍ଷଣି ବେନି ମୁଣ୍ଡ ପକାଇଲେ ହାଣି ।
ପୁଣି କବନ୍ଧ ନାଚଇ କରି ରଣରଙ୍ଗ
ମୁଣ୍ଡ ଛିଡ଼ିଲାଣି ତାର ନ ଲୋଟଇ ଅଙ୍ଗ ।
ପୁନଃ ପୁନଃ ସେ ନାରାଚ ବିନ୍ଧେ ଫାଲଗୁନି
ଉତପତ୍ତି ମୁଣ୍ଡମାନ ପକାଏ ସେ ହାଣି ।
ମୁଖା ଦୁର୍ମୁଖା ସମରେ ନୁହନ୍ତି ନିଧନ
ବିମୁଖ ହୋଇଲା ରଣ କରିଣ ଅର୍ଜ୍ଜୁନ ।
ଅର୍ଜ୍ଜୁନ ବୋଇଲା ଦେବ ବଡ଼ ଅସମ୍ଭବ
କାଟିଲା ମୁଣ୍ଡ କଅଁଳେ କିଏ ଅଛି ଗର୍ଭ ।
ଗୋବିନ୍ଦ ବୋଇଲେ ଏହି କଥା ଅଛି ପୂର୍ବେ
ତ୍ରେତା ଯୁଗର ଚରିତ କହିବାକ ଏବେ ।
ରାବଣ ଯେ ହରିନେଲା ଶ୍ରୀରାମ ବନିତା
ସେହି ରାବଣର ପୁତ୍ର ଅଟେ ଇନ୍ଦ୍ରଜିତା ।
ଲକ୍ଷ୍ମଣ ସଙ୍ଗେ ସମର କଲା ଅପ୍ରମିତ
ସମରେ ଶିର ଛେଦିଲେ ସୁମିତ୍ରାର ସୁତ ।
ନାରାଚ ପଡ଼ନ୍ତେ ଛିଡ଼ି ପଡ଼ଇ ତା ଶିର
ଖେଚର ଭୂଚର ହୋଇ କରଇ ହୁଂକାର ।
ପୁଣି ଶିର ଉତପତ୍ତି ଗର୍ଭରୁ ହୁଅଇ
ଦେଖି ଚକିତ ହୋଇଲେ ସେହି ବେନିଭାଇ ।
ରାବଣ କନିଷ୍ଠ ଭାଇ ନାମ ବିଭୀଷଣ
ସେହି କହିଲା ତାହାର ମୃତ୍ୟୁଭେଦ ମାନ ।
ଗର୍ଭରେ ଅଛି ଅମୃତମୟ ଲିଙ୍ଗ ଖଣ୍ଡ
ତେଣୁ ବାହାର ହୁଅଇ ପୁଣି ତାର ମୁଣ୍ଡ ।
ନାଭିକି ନାରାଚ ତୁହି ବିନ୍ଧ ହୋ ଲକ୍ଷ୍ମଣ
ତେବେ ଯାଇ ସେ ଅସୁର ହାରିବ ପରାଣ ।
ଏହାର ଗର୍ଭରେ ଅଛି ଅମୃତର ଲିଙ୍ଗ
ତାକୁ ମାଇଲେ ଭୂମିରେ ପଡ଼ିବ ତା ଅଙ୍ଗ ।
ଶ୍ରୀକୃଷ୍ଣ ବଚନ ଶୁଣି ବୀର ଧନଞ୍ଜୟ
ବୋଲେ ତା ଗର୍ଭରେ ଲିଙ୍ଗ ଅଛଇ ନିଶ୍ଚୟ ।
ଅର୍ଜ୍ଜୁନ ସମର କଲା ତାହା ମନେ ରଖି
ପ୍ରାଣତ୍ୟାଗର ନାରାଚ ବିନ୍ଧିଲା ନାଭିକି ।
ନିର୍ଘାତ ନାରାଚ ପଡ଼େ ଦନୁଜଙ୍କ ଗର୍ଭେ
ଉତ୍ତାନ ହୋଇ ପଡ଼ିଲେ ଦୁହେଁ ଏକଠାବେ ।
ଧାଇଁଆସି ଆକର୍ଷିଲେ କଙ୍କାଳି ବେତାଳି
ଘୋଟିଯାଇ ହୁଁ ହୁଁକାରେ ଦେଲେ ହୁଳହୁଳି ।

ରକତ ମାଂସ ଭକ୍ଷଣ କରି ବକ୍ରତୁଣ୍ଡୀ
ଆକାଶେ କ୍ଷେପନ୍ତି ଯାଇ ରଣ ରଙ୍ଗେ ମଣ୍ଡି ।
ଘୋଟିଲେ ସମରେ ସେହୁ ଆକାଶେ କ୍ଷେପିଣ
କୁଠାର ଅସ୍ତ୍ର ବୁଲାଇ ପିଟନ୍ତି ସେ ପୁଣ ।
ଦୈତ୍ୟଙ୍କ ମସ୍ତକ ଛିଡ଼ି ପଡ଼ିଯାଏ ତଳ
କବନ୍ଧ ନାଚନ୍ତି ରଣେ ହୋଇ କୁତୂହଳ
ମୃତପିଣ୍ଡକୁ ଆବୋରି ଭକ୍ଷନ୍ତି ସେ ବେନି
ଅନ୍ତରାଳରେ ଧାମନ୍ତି କୁଠାରକୁ ଘେନି ।
ଅସୁର ମର୍ଦ୍ଦିନୀ ରଟମଟ କରି ପାଟି
ପିଙ୍ଗଳବରନା ଶୂନ୍ୟମାର୍ଗେ ଗଲେ ଘୋଟି ।
ବିଷମ ସମର ହେଲା ବ୍ୟୂହ ଜଳଧରେ
ଅସଂଖ୍ୟ ଅସୁର ମଲେ କିଏ ଜାଣିପାରେ ।
ଦୁଃସହ ଅଗୋଚର ଏ ଜଳଧର ବ୍ୟୂହ
ମାୟା ଉପାୟେ ରହିଛି ଅସୁର ଯେ ମୟ ।
ସେ ବ୍ୟୂହ ଭିତରେ ଯହୁଁ କୃଟ ଯୁଦ୍ଧକଲେ
ବ୍ୟୂହକୁ ଘେନି ଅସୁର ଅନ୍ତର୍ଦ୍ଧାନ ହେଲେ ।
ନାରାଚ ପୂରାଇ ପାର୍ଥ ଚଉଦିଗ ଚାହିଁ
ଅସୁର ବଳମଧରେ ଜଣେ କେହି ନାହିଁ ।
ଖୋଜନ୍ତି ବିପିନ ଆଦି ଚାରିଶିଖେ ଉଠି
ଚିହ୍ନ ବର୍ଣ୍ଣ ନ ପାଇଲେ କାହାରି କେଉଁଠି ।
ଗୋବିନ୍ଦ ବୋଇଲେ ଶୁଣ ଆହୋ ଅରଜୁନ
କେଣେ ସେ ଚାଣ୍ଡାଳବଳ ହେଲେ ଅନ୍ତର୍ଦ୍ଧାନ ।
ନ ପୁଣ ଜୟନ୍ତୀପୁରେ ନ ଦିଅନ୍ତି ଧାଡ଼ି
ଦେଶ ଉଜାଡ଼ି ନଗର ନ ଦିଅନ୍ତି ପୋଡ଼ି ।
ସଂଗ୍ରାମରୁ କେଣେ ଗଲେ ସେ ଦୁଷ୍ଟ ପାପିଷ୍ଠୀ
ନ ପୁଣ କଟକ ବେଢ଼ି ଧରନ୍ତି ଯୁଧିଷ୍ଠି ।
ଏମନ୍ତ ବିଚାରି ତହୁଁ ଦେବକୀର ବାଳ
ରଥୁ ଓହ୍ଲାଇ ଦେଖନ୍ତି ତହିଁ ନଦୀକୂଳ ।
ତହୁଁ ଅଶ୍ୱଙ୍କୁ ରଥରୁ ଫେଇ ଚକ୍ରପାଣି
ସରସ୍ୱତୀ ନଦୀରେ ଯେ ପିଆଇଲେ ପାଣି ।
ଆକାଶରେ ଦେଖୁଥିଲା ମୟ ଦୈତ୍ୟେଶ୍ୱର
ଶ୍ରୀକୃଷ୍ଣ ରଥ ଛାଡ଼ନ୍ତେ ମାୟା କଲା ବୀର ।
ଶ୍ରୀକୃଷ୍ଣ ଗମନ୍ତେ ରଥୁ ଓହ୍ଲାଇ ଅର୍ଜ୍ଜୁନ
ପର୍ବତ ଶିଖକୁ ଉଠି କଲେ ଶଙ୍ଖସ୍ୱନ ।
କୃଷ୍ଣାର୍ଜ୍ଜୁନ ଛଡ଼ା ଛଡ଼ି ହେଲେ ଯେତେବେଳେ
ଶୂନ୍ୟଭେଦି ଧାତିକାରେ ଅଇଲେ ଚାଣ୍ଡାଳେ
ଯମ ଦେଇଥିଲା ତାକୁ ଯେଉଁ କାଳଫାଶି
ତାହା ଘେନି ଅର୍ଜ୍ଜୁନକୁ ବାନ୍ଧିଲାକ ଆସି ।
ସଙ୍ଗରେ କୌଣପ ସୈନ୍ୟ ଅଛଇ ତାହାରି
ପାର୍ଥ କରେ ଅଛି ବିଜେକର୍ଣ୍ଣ ଯେ କଟାରି ।

ତାରା ସହସ୍ରେକ ଜିଣି ବିରାଜଇ ଜ୍ୟୋତି
ଦେଖିଣ ଦାନବେ କେହି ନ ଯାଆନ୍ତି କତି ।
ଧନଞ୍ଜୟ ହସ୍ତରେ ଯେ ଧନୁତୂଣ ନାହିଁ
ନଦୀକି ସେ ଆସିଅଛି ଗାଧୋଇବା ପାଇଁ ।
ଭେଦି ନ ପାରି ବନ୍ଧନେ ପଡ଼ିଲା ପାଣ୍ଡବ
ଅଶ୍ୱଙ୍କୁ ପାଣି ପିଆଇ ଆଣିଲେ ମାଧବ ।
ଅଶ୍ୱମାନେ ସୁସ୍ଥହେଉଁ ଦେବ ଦଇତ୍ୟାରି
ନନ୍ଦିଘୋଷରେ ଯୋଚିଲେ ନେଇ ଅଶ୍ୱଚାରି ।
କରେ ବାଗଡ଼ୋର ଧରି ରଥେ ଯାଇ ଉଠି
ଦେଖିଲେ ରହିଛି ଧନୁ ନାହିଁ ଯେ କିରୀଟୀ ।
ଶ୍ରୀହରି ଉଠିଲେ ଯାଇ ରଥଧ୍ୱଜ ପରେ
ଅର୍ଜ୍ଜୁନ ଅର୍ଜ୍ଜୁନ ବୋଲି ଡାକିଲେ ଉଚ୍ଚରେ ।
ଅର୍ଜ୍ଜୁନ ଶୁଣିଲି କୃଷ୍ଣ ଉଚ୍ଚ ଡାକ ବାଣୀ
ଅତି ଉଚ୍ଚରେ ବୋଇଲା ରଖ ଚକ୍ରପାଣି ।
ରଥଧ୍ୱଜରେ ଥାଇଣ ବୋଲେ ହନୁମନ୍ତ
ଜଳଧର ବ୍ୟୂହେ ବନ୍ଦିହେଲା ତୋର ପାର୍ଥ ।
ହନୁ ମୁଖରୁ ବାରତା ଶୁଣି ଜଗନ୍ନାଥ
ଶ୍ରୀଭୁଜେ ଚକ୍ର ଧରିଣ ଧାଇଁଲେ ତୁରିତ ।
ଗୋବିନ୍ଦ ବିଜୟ ଯହୁଁ ଦେଖିଲେ ଦୁରନ୍ତ
ଜଳଧର ଘେନିଯାଇ ହେଲେ ରସାଗତ ।
ଅନ୍ଧାର ଭୁବନେ ଗଲେ ଅର୍ଜ୍ଜୁନକୁ ଘେନି
ଦେବଦତ୍ତ ଶଙ୍ଖଧ୍ୱନି କରେ ଫାଲଗୁନି ।
କୃଷ୍ଣଙ୍କୁ ଶୁଭଇ ସେହି ଦେବଦତ୍ତ ନାଦ
ସେ ଶବଦ ବାରି ପଛେ ଗୋଡ଼ାନ୍ତି ଗୋବିନ୍ଦ
ପବନହୁଁ ବେଗେ ଧାଇଁଛନ୍ତି ଚକ୍ରଧର
ଦେଖିଲେ ସେ ବ୍ୟୂହ ଅଟେ ଅତ୍ୟନ୍ତ ଅନ୍ଧାର ।
ତହୁଁ ଦେବ କୌମୋଦକୀ ଗଦାକରେ ଘେନି
ଗୋଡ଼ାଇ ପିଟନ୍ତି ପଛେ ଅସୁର ସଇନି ।
ଜପାସୁର ଧିପାସୁର ବୋଲି ବେନିବୀରେ
ବହୁ ସେନା ଘେନି ଭେଟି କୃଷ୍ଣଙ୍କ ଛାମୁରେ ।
କରେ ପର୍ବତ ସମାନ ବେନି ଗଦା ଘେନି
ଶ୍ରୀକୃଷ୍ଣ ଉପରେ ତାହା ପ୍ରହାରିଲେ ବେନି ।
କରେ କୌମୋଦକୀ ଗଦାଦେବ ଘେନି ପିଟି
ଜପାସୁର ଧିପାସୁର ମଲେ ମହୀଲୋଟି ।
ଶ୍ରୀକୃଷ୍ଣଙ୍କ ପାଶେ ଥିଲେ କଙ୍କାଳି ବେତାଳି
ଧାଇଁଯାଇଁ ଅସୁରଙ୍କୁ ପକାଇଲେ ଗିଳି ।
ଜପାସୁର ଧପାସୁର ମରିବାରୁ ରଣେ
ପାଞ୍ଚଜନ୍ୟ ଶଙ୍ଖଧ୍ୱନି କଲେ ନାରାୟଣେ ।
ପାଞ୍ଚଜନ୍ୟ ଶଙ୍ଖ ଯହୁଁ କରିଲାକ ଧ୍ୱନି
ତାହା ଶୁଣିଣ ହରଷ ହେଲେ ଫାଲ୍‌ଗୁନି ।

ଜଟାସୁର ବୋଲି ପୁଣ ଏକଇ ଅସୁର
କୃଷ୍ଣ ସହିତରେ ଆସି କଲାକ ସମର ।
କୌମୋଦକୀ ଗଦା କୃଷ୍ଣ ପିଟିଲେକ ତୋଳି
ସେ ଅସୁର ହାଡ଼ ମାଂସ ହୋଇଲାକ ଧୂଳି ।
ମାୟା ରଚିତ ବ୍ୟୂହକୁ କେହି ଭେଦିପାରି
ଅକ୍ଳେଶେ ଭେଦିଲେ ତାକୁ ଦେବ ଦଇତ୍ୟାରି
ସେ ଘୋର ଅନ୍ଧାରେ ବ୍ୟୂହ ଦେବେ ଅଗୋଚର
ଆପଣେ ମାରନ୍ତି ଦେବ ଦୂରନ୍ତ ଅସୁର ।
ଯହୁଁ ଶୁଭିଲାକ ତହିଁ ଗଦା ଯୁଦ୍ଧ ଧ୍ୱନି
ଗୋବିନ୍ଦ ଉଦ୍ଧାର ବୋଲି ଡାକେ ଫାଲଗୁନି ।
ଡାକ ଶୁଭଇ ଯିବାକୁ ତହିଁ ନାହିଁ ବାଟ
ଭୟଙ୍କର ବ୍ୟୂହ ଏହୁ ସମସ୍ତ କପଟ ।
ଅଗସ୍ତିଙ୍କୁ ପଚାରିଲେ ମନୁ ନୃପବର
ପାର୍ଥେ ବନ୍ଦିକରି କିମ୍ପା ନ କାଟିଲା ଶିର ।
ପାଣ୍ଡବ ମାରିବା ପାଇଁ ଅସୁରଙ୍କ କକ୍ଷା
ନ ମାରି ତାହାକୁ କିମ୍ପା କରିଛନ୍ତି ରକ୍ଷା ।
ଅଗସ୍ତି କହନ୍ତି ଶୁଣ ଆହେ ଯୋଗେଶ୍ୱର
ଅଗ୍ନି ଦେଇଥିଲେ ତାକୁ ଗୋଟିଏ କୁଠାର ।
ସେହି କୁଠାରକୁ ପାର୍ଥ ଧରିଅଛି କରେ
ଅଗ୍ନି ତେଜରୁ ପ୍ରଖର ତେଜ ସେ ବାହାରେ ।
ତାହା ଦେଖିଣ ଦାନବେ ମନେ ପାଇ ଭୀତି
କେହି ପଶି ନ ପାରନ୍ତି ଭରସି ତା କତି ।
ନିଜ ଜୀବନକୁ ଅବା କାର ଭୟ ନାହିଁ
କାଣ୍ଡ ମାଇଲେ ହେଁ ତେଜେ ଯାଏ ଭସ୍ମ ହୋଇ
ତେଣୁଟି ରକ୍ଷା ପାଇଲା ବୀର ଧନଞ୍ଜୟେ
ରକ୍ଷକୁଳ କୃଷ୍ଣଙ୍କୁ ସେ ବେଢ଼ିଲେ ନିର୍ଭୟେ ।
କଙ୍କାଳୀ ବେତାଳୀ ତହିଁ ବହୁ ସୈନ୍ୟ ମାରି
ଗର୍ତ୍ତକୁ କ୍ଷେପି ଦିଅନ୍ତି ଅତି ଯତ୍ନକରି ।
କର୍ଣ୍ଣକଟାରୀକୁ ମାରି ପାତିଣ ଖପର
ପିଅନ୍ତି ରକ୍ତକୁ ପିଣ୍ଡ କରନ୍ତି ଆହାର ।
ଯେତେ ମାଇଲେ ଦନୁଜ କେଭେ ନ ମରନ୍ତି
ଦ୍ୱିଗୁଣ ତେଜରେ ପୁଣି ସମର କରନ୍ତି ।
ଶ୍ରୀନାରାୟଣ ବିମୁଖ ହୋଇକରି ରଣେ
ସୁଦର୍ଶନ ଚକ୍ର ତହୁଁ ଧଇଲେ ଆପଣେ ।
ଶ୍ରୀନାରାୟଣଙ୍କ କରେ ସୁଦର୍ଶନ ଦେଖି
ପଳାନ୍ତି ଅସୁରବଳ ସମର ଉପେକ୍ଷି ।
ବ୍ୟୂହକୁ ବାଟ ନ ପାଇ ଦେବ ନାରାୟଣ
ବୁଲନ୍ତି ଯେ ଏଣେ ତେଣେ ଅଥୟ ହୋଇଣ ।
ଅନେକ କୌଣପବଳ ମାରି ଦାମୋଦର
ଜଟାସୁରର କେଶକୁ ଧଇଲେ ସତ୍ୱର ।
ବୋଇଲା ଯେ କଉଣପ ଶୁଣ ହେ ଗୋବିନ୍ଦ
ମୋତେ ନ ମାଇଲେ କହିଦେବି ବ୍ୟୂହଭେଦ
ତାହା କଲେ ଦୈତ୍ୟବଳ ହୋଇବେ ନିଧନ
ମୋତେ ତୁ ନ ମାର ଦେବ ଯଦୁକୁଳ ନାନ ।
ଅସୁର ବଚନେ ଦେବ ଛାଡ଼ିଲେ ତା ବାଳ
ବୋଇଲେ ଯଥାର୍ଥ କହରେ ଦୈତ୍ୟଚଣ୍ଡାଳ ।
କହ କେଉଁଠାରେ ତେବେ ଅଛି ଅରଜୁନ
ତାକୁ ନ ଭେଟିଲେ ତୋତେ କରିବି ନିଧନ ।
ଜଟାସୁର ବୋଲେ ଦେବ ସତ୍ୟ ମୋର ବାଣୀ
ଅର୍ଜ୍ଜୁନକୁ ଭେଟାଇବି ତୋତେ ଏହିକ୍ଷଣି ।
ତହୁଁ ବହୁ ଅଳଙ୍କାର ଘେନି ଦେବରାଜା
ଆଶ୍ୱାସନା କରି ଦାନବକୁ କଲେ ପୂଜା ।
ତହୁଁ ଦୈତ୍ୟ ବାଟ କଢ଼ାଇଲା ବ୍ୟୂହଭେଦି
ପଛେ ପଛେ ଦୈତ୍ୟନାଶି ଯାନ୍ତି ଦୟାନିଧି ।
କପଟେ ନେଇଣ ଜୀର୍ଣ୍ଣକୂପ ଭେଟାଇଲା
ଏଥି ଭିତରେ ଅର୍ଜ୍ଜୁନ ଅଛିଟି ବୋଇଲା ।
ରାଗେଣ ଜୀର୍ଣ୍ଣକୂପରେ ପଡ଼ିଲେକ ଡେଇଁ
ଦେଖିଲେ ତହିଁ ଭିତରେ ଧନଞ୍ଜୟ ନାହିଁ ।
କପଟେ କହି ପଳାଏ ଦୈତ୍ୟ ଜଟାସୁର
ଗୋବିନ୍ଦ ରହିଲେ ଯାଇ ସେ କୂପ ଭିତର ।
ଅର୍ଜ୍ଜୁନ ବନ୍ଦି ହୋଇଛି ଅନ୍ଧାର ଭୁବନ -
ବିଅର୍ଥ ହୋଇଲେ ଏବେ କୃଷ୍ଣ ଅରଜୁନ ।
ମହା ବିଶ୍ୱରୂପ ହେଲେ କଙ୍କାଳୀ ବେତାଳୀ
ମାରିଣ ଅସୁରବଳ ତହିଁ କଲେ କେଳି ।
କଙ୍କାଳୀ ଓଗାଳି ରହେ ଜୀର୍ଣ୍ଣକୂପ ଦ୍ୱାରେ
ବେତାଳୀ ରହିଲା ଯାଇ ଅର୍ଜ୍ଜୁନ ପାଖରେ ।
ବିକଟାଳ ରୂପ ଦେଖି ଭାଜିଲେ କୌଣପ
ସଂହାର କଲା ବେତାଳୀ ଅସୁରଙ୍କ ଦର୍ପ ।
କଙ୍କାଳୀ ଜୀର୍ଣ୍ଣକୂପକୁ ଆବୋରିଣ ଅଛି
ଅର୍ଜ୍ଜୁନର କାଳପାଶ ଫେଡ଼ିଲା କାମାକ୍ଷୀ ।
ବିଜେ କର୍ଣ୍ଣ କଟାରୀକି ଦେଇଥିଲେ ବହ୍ନି
ତେଣୁ ସେ ଅନେକ ବଳ ନାଶେ ଫାଲଗୁନି ।
ଧନଞ୍ଜୟକୁ ବିରଥ ଦେଖି ମଘବାନ
ମାତଳିକି ବୋଲେ ନିଅ ପୁଷ୍ପକ ବିମାନ ।
ତହିଁ ଅଛି ଅଜଗବ ଧନୁ ଆଉ ତୂଣ
ଜଳଧର ବ୍ୟୂହକୁ ତୁ କରରେ ପ୍ରୟାଣ ।
ଶୁଣି ମାତିଳି ସ୍ୱର୍ଗରୁ ଅଇଲା ବହନ
ଉପସ୍ଥିତ ହେଲେ ଯହିଁ ଥିଲେ ଅରଜୁନ ।
ବୋଇଲା ଏ ଯାନେ ବସି ଆର୍ଦ୍ରାବଳୀଧର
ସମର କରି ଦୈତ୍ୟଙ୍କୁ ପେଷ ଯମପୁର ।

ଶୁଣି ପୁଷ୍ପକବିମାନେ ବସି ଧନଞ୍ଜୟ
ଅନେକ କୌଣପ ସୈନ୍ୟ କରିଲେ ସେ କ୍ଷୟ
ଇନ୍ଦ୍ର ଦେଇଥିଲେ ଯେଉଁ ଧନୁ ଆର୍ଦ୍ରାବଳୀ
ତହିଁରେ ଅସୁର ସୈନ୍ୟ ହୋଇଗଲେ ଦଳି ।
ତେଣୁ ଅର୍ଜୁନ ହୋଇଲା ସମରେ ଅଜେୟ
ଅନେକ ବିନ୍ଧିଲା ଶର ନାହିଁ ପରିଚୟ ।
ରଣରଙ୍ଗେ ପ୍ରହାରନ୍ତେ ଅନେକ ସଇନି
ପଳାଇଲେ ଜଳଧର ବ୍ୟୂହ ଦୈତ୍ୟ ଘେନି ।
ସେ ଜୀର୍ଣ୍ଣ କୂପ ଉପରେ ଥିଲାକ କଙ୍କାଳୀ
ବିଶ୍ୱରୂପରେ କୃଷ୍ଣଙ୍କୁ ଆଣିଲା ସେ ଟୋଳି ।
କୃଷ୍ଣ ଅର୍ଜୁନ ଆବର ମାତଳୀ ସାରଥି
ଜଳଧର ବ୍ୟୂହରୁ ଯେ ବାହାର ହୁଅନ୍ତି ।
ଜଳଧର ବ୍ୟୂହେ ଥାଇ ସେ ସମର କଲେ
ତିନି ଅରବୁଦ ଯୋଦ୍ଧା ସମରେ ପଡ଼ିଲେ ।
ବିଷମ ପ୍ରହାର ପାଇ ପଳାଇଲେ ଥାଟ
ବ୍ୟୂହଭେଦି ବାହାରିଲେ ସରସ୍ୱତୀ ତଟ ।
କୃଷ୍ଣ ଅର୍ଜୁନ ମାତଳି ପୁଷ୍ପକ ଆରୋହି
ଭେଟିଲେ ସେ ନନ୍ଦିଘୋଷ ରଥ ଥିଲା ଯହିଁ ।
ନନ୍ଦିଘୋଷ ରଥ ଘେନି ହନୁ ଅଛି ରହି
ଅର୍ଜୁନକୁ ଘେନିକରି ପ୍ରବେଶିଲେ ଯାଇଁ ।
ଜଳଧର ବ୍ୟୂହ ଯୁଦ୍ଧ ଅସମ୍ଭବ କଥା
ଏହା କହିବାକୁ ମୋର କାହିଁ ବା ଯୋଗ୍ୟତା ।
ଅଭୟ ମାତଙ୍ଗ ମାଗୋ ନମସ୍ତେ ଶାରଳା
ବାଳିକା ରୂପକୁ ଧରି ତୁହି କରୁ ଖେଳା ।
ମଳୟ ବସନ୍ତ ମାତଃ ଅଟୁ ତୁ ମୋହିନୀ
ଶରଣ ରକ୍ଷଣ ମାତ ଜଗତଜନନୀ ।
ଅବଶ୍ୟ ହୁଅଇ ସିଦ୍ଧ ଯାହାର ବଚନେ
ଅନୁଗ୍ରହ ସାଧବୀକି ଭାବି ପଞ୍ଚମନେ ।
ପଣ୍ଡିତ ଧୀରଜନଙ୍କ ଚରଣେ ଆରାଧି
ସର୍ବମଙ୍ଗଳା ଦେବୀଙ୍କୁ ବିନୟେ ପ୍ରବୋଧି ।
ଅଦୃଷ୍ଟିକି ଦୃଷ୍ଟି ମୁହିଁ କରାଇଲି ଆଣି
ପ୍ରତ୍ୟକ୍ଷ କହିଲେ ମୋତେ ଝଙ୍କଡ଼ ବାସିନୀ
କୃପାଜଳ ନନ୍ଦିନୀ ଗୋ ସେବା ତୋର ପାଦେ
ଶୂଦ୍ରମୁନି ପଦ କହେ ଶାରଳା ପ୍ରସାଦେ ।
ଦ୍ରୋଣପର୍ବ ଲେଖିବାକୁ ପାରନ୍ତି କି ଭାବି
ଯାହା ଆଜ୍ଞାକଲେ ମୋତେ ସେ ଶାରଳାଦେବୀ
ଜନ୍ମରୁ ମୂରୁଖ ମୁହିଁ ପଢ଼ିନାହିଁ ବିଦ୍ୟା
ନ ଜାଣଇ ଜପ ମନ୍ତ୍ର ନୁହଇ ମୁଁ ସିଦ୍ଧା ।
ପରମ ସାଧବୀ ସେହୁ ପରଦୁଃଖେ ଦୁଃଖୀ
କାମିନୀଙ୍କ କାମସେଣା ପ୍ରତ୍ୟକ୍ଷେ କାମାକ୍ଷୀ
ସେ ମହାମାୟୀ ପ୍ରସାଦେ ମନେ ଯା ସ୍ଫୁରଇ
ନୀଳକଳ୍ପବଟ ତଳେ ବସି ତା ଲେଖଇ ।
ବିଷ୍ଣୁ ପୁରାଣ ଗରୁଡ଼ ମାର୍କଣ୍ଡ ପୁରାଣ
ଶିବପୁରାଣ ନାରଦ ପୁରାଣ ଯେ ପୁଣ ।
ବାମନ ବରାହ ଆଦି କୂରୁମ ପୁରାଣ
ନୃସିଂହ ମତ୍ସ୍ୟ ବଉଦ୍ଧ କଳକୀ ସେ ପୁଣ ।
ଏହି ଆଦି ଅଷ୍ଟାଦଶ ପୁରାଣରେ ସାର
ଅଷ୍ଟାଦଶ ପର୍ବ ମହାଭାରତ ପ୍ରଚାର ।
ଏତେକକୁ ଆଜ୍ଞାକଲେ ଦେବୀ ନିରଞ୍ଜନୀ
ତେଣୁ ବୋଲଇ ଶାରଳାଦାସ ଶୂଦ୍ରମୁନି ।



## ଅଭିମନ୍ୟୁ ଗର୍ଭ ମଧ୍ୟରେ ଥାଇ ଚକ୍ରବ୍ୟୂହ ଭେଦ ଶ୍ରବଣ ଓ ସେନାପତି ହୋଇ ପ୍ରଥମ ଦ୍ୱିତୀୟ ଦ୍ୱାର ଜୟ ଏବଂ ଜୟଦ୍ରଥର ଶିବଙ୍କଠାରୁ ବରପ୍ରାପ୍ତି

ଅଗସ୍ତିଙ୍କୁ ପୁଚ୍ଛାକଲେ ମନୁ ନରରାଣ
କଳଧର ବ୍ୟୂହ କଥା କଲ ହେ ବର୍ଣ୍ଣନ ।
କୂଟେ ଯୁଦ୍ଧକଲେ ଦ୍ରୋଣ ଚକ୍ରବ୍ୟୂହ କରି
ପାର୍ଥ ବିନା ଯୁଧିଷ୍ଠିରଙ୍କୁ ଧରିନେବ ବୋଲି ।
ଚକ୍ରବ୍ୟୂହ କଥା ମୋତେ କହିବା ବିଶେଷ
କୋଟିକଳ୍ପ ପାପ ତେଜି ଶୁଣି ହେବି ତୋଷ ।
ବଦନ୍ତି ଅଗସ୍ତି ମୁନି ଶୁଣ ମହାରାଜ
ଶ୍ରୀମହାଭାରତ ଶୁଣି ପାପ ତାପ ତେଜ ।
ଏକମନ ହୋଇ ଶୁଣ ଶ୍ରୀ ମହାଭାରତ
ଦେଶାଉର କହେ ଯାଇ ପାଣ୍ଡବ ଅଗ୍ରତ ।
ଚକ୍ରବ୍ୟୂହ ଗୋଟି ଯେ ରଚିଲେ ଗୁରୁ ଦ୍ରୋଣ
ଭେଦନ୍ତା ନାହିଁ ତାହାକୁ ଏ ତିନିଭୁବନ ।
ଡଗର ମୁଖୁଁ ଏସନ ବାରତାକୁ ଶୁଣି
ଯୁଧିଷ୍ଠିଦେବ ଆଶ୍ଚର୍ଯ୍ୟ ହୋଇଲେକ ପୁଣି ।
ବୋଇଲେ ବାବୁରେ ଶୁଣ ବୀର ବୃକୋଦର
ଚକ୍ରବ୍ୟୂହ ବୋଲି ତୁହି ଜାଣୁ କି ପ୍ରକାର ।
ସେ ଚକ୍ରବ୍ୟୂହ ଭେଦନ୍ତା ମହୀରେ କେ ନାହିଁ
ଆମ୍ଭ ମଧ୍ୟେ କିଏ ତହିଁ ସମର୍ଥ ଅଟଇ ।
ପ୍ରଥମ ଦ୍ୱାରେ ଅଛନ୍ତି ଦ୍ରୋଣ ସେନାପତି
କାଳଦଣ୍ଡ ପ୍ରାୟେ ଅଟେ ତାଙ୍କ ଶରଶକ୍ତି ।
ସମ୍ମୁଖେ ପଡ଼ିଲେ ତାଙ୍କୁ କିଏ ବଳିଯିବ
ଏହା ଚିନ୍ତି ମନରେ ଭାଳନ୍ତି ଧର୍ମଦେବ ।
ଭୀମସେନ ବୋଲେ ତୁମ୍ଭେ ଶୁଣ ଦେବରାୟ
ତା ଭେଦିବାକୁ ସମର୍ଥ କୃଷ୍ଣ ଧନଞ୍ଜୟ ।

ଦେବ ଦାନବେ ଅଜଣା ନର କେଉଁଛାର
ଚକ୍ରବ୍ୟୂହ ଶୁଣିନାହିଁ ଦୁଇକର୍ଣ୍ଣ ମୋର ।
ଶୁଣିଣ ଧର୍ମ ରାଜନ ହୋଇଣ ଚିନ୍ତିତ
ନକୁଳେ ପୁଛିଲେ ତୁ କି ଜାଣୁରେ ବୃତ୍ତାନ୍ତ ।
ନକୁଳ ବୋଲଇ ଦେଖିନାହିଁ ମୁଁ ନୟନେ
ପାଇନାହିଁ ଏହିବିଦ୍ୟା ଶୁଣିନାହିଁ କାନେ ।
ଏହିରୂପେ କଥାବାର୍ତ୍ତା ହେଉ ଚାରିଭାଇ
ଶଙ୍ଖ ଶବ୍ଦ ଯୁଧିଷ୍ଠିଙ୍କ କର୍ଣ୍ଣରେ ସମ୍ଭାଇ ।
ପାର୍ଥ ଶଙ୍ଖଧ୍ୱନି ପ୍ରାୟ ଶୁଭିଲା ତୁରିତ
ତହୁଁ ଧର୍ମ ଦେବଙ୍କର ଫିଟିଲା ଆରତ ।
ଯୁଧିଷ୍ଠି ଭୀମ ନକୁଳ ପୁଣି ସହଦେବ
ନିକଟରେ ଅଭିମନ୍ୟୁ ମିଳିଲାକ ଯବ ।
ପାଦପଦ୍ମେ ଶତ ଶତ ହୋଇ ପରଣାମି
ପଚାରିଲା କିସପାଇଁ ବିଷାଦିତ ସ୍ୱାମୀ ।
ଯୁଧିଷ୍ଠିର କୋଳେ ନେଇ ଧଇଲେ ନନ୍ଦନ
ବୋଇଲେ ଶୁଣରେ ସୁତ ଯୁଦ୍ଧର ଆଖ୍ୟାନ ।
ଚକ୍ରବ୍ୟୂହ ବୋଲି ବ୍ୟୁହ ପାତିଅଛି ଦ୍ରୋଣ
ତାକୁ ଭେଦିବାକୁ ଶକ୍ୟ କାର ନାହିଁ ଜାଣ
ଅଭିମନ୍ୟୁ ବୋଲେ ଏବେ ଶୁଣ ଦେବସ୍ୱାମୀ
ମୋ ଶିରେ ମୁକୁଟବାନ୍ଧ ହେବି ବ୍ୟୂହଗାମୀ ।
ମୁହିଁ ଚକ୍ରବ୍ୟୂହ ଆଜି ଭେଦିବଇଁ ରାୟେ
ମୋର ସଙ୍ଗେ ରହିଥିବ ତୁମ୍ଭେ ଯେ ଚାରିହେଁ ।
କୁମର ବଚନ ଶୁଣି ହସିଲେ ରାଜନ
ଚଉଦ ବର୍ଷର ମାତ୍ର ଅଟୁତୁ ନନ୍ଦନ ।
ଆମ୍ଭେ ସେନାପତି ତୋତେ କରିବା କେମନ୍ତେ
କାହୁଁ ଜାଣିବୁ ତୁ ବ୍ୟୂହଭେଦ କଥା ଯେତେ ।
ଯୁଧିଷ୍ଠି ଦେବଙ୍କଠାରୁ ଏହି କଥା ଶୁଣି
ବୋଲଇ ଶୁଣିମା ହେଉ ନୃପ ଚୂଡ଼ାମଣି ।
ଗର୍ଭେ ଥିଲି ମୁଁ ମକର ଶୁକ୍ଳ ତ୍ରୟୋଦଶୀ
ଅର୍କବାର ପୁନର୍ବସୁ ମିଥୁନ ଯେ ରାଶି ।
ତୈତିଳ ନାମେ କରଣ ଆୟୁ ନାମେ ଯୋଗ
ପିତାମାତା ହେଉଥିଲେ ନାନାଦି ପ୍ରସଙ୍ଗ ।
ମାତା ଗର୍ଭେ ହୋଇଥିଲା ମୋତେ ସାତମାସ
ପିତାଙ୍କୁ ପୁଚ୍ଛିଲେ ମାତା ହୋଇ ହସ ହସ ।
କୌଣସି ଗୋଟିଏ କଥା କହ ମୋର ଆଗ
ତାହା ଶୁଣିବାକୁ ମୋର ହେଉଛି ସରାଗ ।
ମାତାର ବଚନେ ପିତା ଅତି ତୋଷ ହୋଇ
ବୋଇଲେ କହିବି ଯାହା ଅଛି ମୁଁ ନିର୍ଭାଇ ।
ସୁଭଦ୍ରା ବୋଇଲେ ସ୍ୱାମୀ ଶୁଣ ମୋର ତଥ୍ୟ
ଅନ୍ୟ କଥାରେ ମୋହର ନାହିଁ ଅଭିମତ ।
ମହାଭାରତ ବୋଲିଣ ହୋଇବ ସମର
ଏଥିର ଚରିତ ଦେବ କୁହ ମୋ ଆଗର ।
କହନ୍ତି ପିଅର ଯାହା ଶୁଣନ୍ତି ଜନନୀ
ଅଷ୍ଟାଦଶ ଦିବସର ବ୍ୟୂହପର୍ବ ତିନି ।
ଶକଟ ଯେ ଜଳଧର ଶର ଆର୍ଦ୍ରାବଳୀ
ଘୋର ଅନ୍ଧାର ଆବର ଶୂନ୍ୟର ତ୍ରିବଳି ।
ଉଲୁକ ସାଗର ବ୍ୟୂହ ଗମନାଗମନ
ଯାହାର ଯେମନ୍ତ ଭେଦ କହିଲେ ସେମାନ ।
ସମସ୍ତ କହିଲେ ପିତା ମାତାଙ୍କ ସମ୍ମୁଖେ
ଚକ୍ରବ୍ୟୂହ କଥାଟିକି କହିଲେ ସେ ପଛେ ।
ପ୍ରବେଶିବା କଥାଟିକି ପିତା ଥିଲେ କହି
ସକଳ ଶୁଣିଲି ମୁହିଁ ଗର୍ଭ ମଧ୍ୟେ ରହି ।
ତୃତୀୟ ପ୍ରହର ଯେବେ ହୋଇଥିଲା ରାତି
ମାତା ମୋର ନିଦ୍ରାଗଲେ ସେ ନିଶା ପାହାନ୍ତି
ମାତାଙ୍କ ନିଦ୍ରାରେ ମୁହିଁ ନିଦ୍ରାଗଲି ପୁଣି
ବାହାରିବା କଥା ତେଣୁ ନ ପାରିଲି ଶୁଣି ।
ରଣେ ଚକ୍ରବ୍ୟୂହ ମାତ୍ର ପାରଇ ମୁଁ ଭେଦି
କିପରିମୁଁ ବାହୁଡ଼ିବି କହ ମୋତେ ବୁଦ୍ଧି ।
ଅଭିମନ୍ୟୁର ମୁଖରୁ ଏ ବଚନ ଶୁଣି
ବୃକୋଦର ଧାତିକାରେ ଉଠେ ଶିରଝୁଣି ।
ବୋଇଲା ଯେ ଆରେ ବାବୁ ନଭାବ ତୁ ତାହା
ତେର ଅକ୍ଷୌହିଣୀ ବଳ ଘେନି ହେବି ସାହା ।
ବ୍ୟୂହ ଭାଜିଲେ ଜିଣିବୁ ଛାର ଦ୍ରୋଣ କର୍ଣ୍ଣ
ଶଲ୍ୟ ଦୁର୍ଯ୍ୟୋଧନ ଆଦି ନ ହୁଅନ୍ତି ଗଣ୍ୟ ।
ଚାରିଭାଇ ମିଳି ତହିଁ କରୁଥିବୁ ରଣ
ବାହୁଡ଼ା ବେଳକୁ ପ୍ରବେଶିବେ ଅରଜୁନ ।
ଏତେ ବୋଲି ଭୀମସେନ କୋପେ ପରଜ୍ୱଳି
ଆକାଶକୁ ଫିଙ୍ଗି ଗଦା ଧଇଲା ସେ ତୋଳି ।
ବୃକୋଦର ମୂରତି ଯେ ଦେବେ ଅଗୋଚର
ଶୁଣି ଶଙ୍ଖଧ୍ୱନି କଲେ ସହଦେବ ବୀର ।
ଚକ୍ରବ୍ୟୂହ ଭେଦିବାକୁ ତୁ ଯେତେ ସମର୍ଥ
ବାହୁଡ଼ା ବେଳକୁ ପ୍ରବେଶିବେ କୃଷ୍ଣପାର୍ଥ ।
ସହଦେବ ମୁଖୁ ଯହୁଁ ଏମନ୍ତ ଶୁଣିଲେ
ଏକାଦଶ ଅକ୍ଷୌହିଣୀ ବଳ ସଜ କଲେ ।
ତିନିକୋଟି ରଥ ପଞ୍ଚକୋଟି ଦନ୍ତା ହସ୍ତୀ
ନବକୋଟି ଅଶ୍ୱ ତେରକୋଟି ଯେ ପଦାତି ।
ଯୁଧିଷ୍ଠି ଭୀମ ନକୁଳ ପୁଣି ସହଦେବ
ଏକାନ୍ତ ଘେନିଣ ସଜ ହୋଇଲେକ ସର୍ବ ।
ସଜ ହୋଇଣ ସରବେ ବାହାର ତଡ଼ତି
ସତ୍ୟ ଯୁଗର ଅଟଇ କେତନ ସାରଥି ।

ତାହାଙ୍କୁ ଚାହିଁଣ ଅଭିମନ୍ୟୁ ବୀର କହି
ଧବଳ ରଥ ମୋ ସାଜିଆଣ ବେଗେ ଯାଇ
ଅଭିମନ୍ୟୁ କଥା ଶୁଣି ସାରଥି ଚଳିଲା
ସମର ରଥ ମଣ୍ଡନ କରଣେ ଲାଗିଲା ।
ଯୁଧିଷ୍ଠି ଭୀମ ନକୁଳ ବୀର ସହଦେବ
ଏହାଙ୍କୁ ବୁଝାଇ ଚଳେ ଅର୍ଜ୍ଜୁନ ସମ୍ଭବ ।
ଆଜ୍ଞା ପରମାଣେ ବିଶ୍ୱାବସୁ ସୁତ ଯାଇଁ
ଅଷ୍ଟରତ୍ନେ ଅଭିମନ୍ୟୁ ରଥକୁ ମଣ୍ଡାଇ
ଶୁଦ୍ଧ ସ୍ଫଟିକରେ ଅଟେ ତାର ଚାରିସ୍ତମ୍ଭ ।
ଅଷ୍ଟରତ୍ନରେ ମଣ୍ଡଣି କରିଲା ଆରମ୍ଭ ।
ହୀରା ନବଲକ୍ଷ ତହିଁ ହୋଇଛି ମଣ୍ଡଣି
ତେଜ ବିକାଶଇ ଯେହ୍ନେ ନବ ଦିନମଣି ।
ପାଟଛତ୍ର ରହିଅଛି ତହିଁ ଅପ୍ରମିତା
ତଥି ଉପରେ ଅଛଇ ଗଜର ମୁକୁତା ।
ସ୍ଫଟିକର କଳସ ଯେ ଦିଶେ ଅତି ତ୍ୱରା
ଝଲକଇ ଚଉକତି ମାଣିକ୍ୟର ଝରା ।
ତାହାର ଉପରେ ଶତ ଚାମର ମଣ୍ଡଣି
ତା ସନ୍ନିଧେ ଲମ୍ୱାଇଲେ ନେତର ପତନୀ ।
ଧବଳ ଶଙ୍ଖ ପରାୟେ ଯେଉଁ ଚାରିହୟ
ଦିଶନ୍ତି ମିଥୁନ ମାସେ ବକପକ୍ଷୀ ପ୍ରାୟ ।
ସେହି ଅଶ୍ୱକୁ ଘେନିଣ କରି ସୁଯତନ
ଯୋଚିଲା ରହୁବରରେ ସାରଥି କେତନ ।
ଅଶ୍ୱହିଁ ଧବଳ ତାର ଚାମର ଶୁକଳ
ତେଣୁ ସେ ରଥର ନାମ ଅଟଇ ଧବଳ ।
ଆଦିତ୍ୟ ଉଦୟ କିବା ହେଲା ସୋମବଂଶେ
ଆଦିନାମେ ଅଭିମନ୍ୟୁ ସେହିପରି ଦିଶେ ।
ସତ୍ୟଯୁଗର ସାରଥି ନାମ ତା କେତନ
ସେ ରଥ ମଣ୍ଡନକରି କରଇ ଗମନ ।
ଦାରୁକ ମାତଳି ଚନ୍ଦ୍ରଧ୍ୱଜ ନାରାୟଣ
ସୁମନ୍ତ କେତନ ପୁଣି ଅଟେ ଯେ ଅରୁଣ ।
ଏ ସପ୍ତ ସାରଥି ଯେବେ ରଥକୁ ବାହିବେ
ତ୍ରିଭୁବନ କିଞ୍ଚିତରେ ବୁଲିଣ ଆସିବେ ।
ଏହି ରଥ ଧ୍ୱଂସ ନୁହେଁ କାଳ ଅବସାନେ
ସେହିପରି ତ୍ରିଜୀବୀ ଯେ ଏ ସାରଥିମାନେ ।
ରଥ ହୟ ସାରଥି ଏ ତିନିହେଁ ଅକ୍ଷୟ
ରଥୀମାରି ପୁନଃ ଜନ୍ମ ହୁଅଇ ଉଦୟ ।
ସୂର୍ଯ୍ୟସାରଥି ଅରୁଣ ଇନ୍ଦ୍ରର ମାତଳି
କାମଦେବର ସାରଥି ଚନ୍ଦ୍ରଧ୍ୱଜ ବଳୀ ।
ଦଶରଥର ସାରଥି ସୁମନ୍ତ ବୋଲାଇ
ଅଭିମନ୍ୟୁର ସାରଥି କେତନ ଅଟଇ ।
ଧନଞ୍ଜୟର ସାରଥି ଦେବ ନାରାୟଣ
ବାସୁଦେବର ସାରଥି ଦାରୁକ ଯେ ଜାଣ ।
କିସ କହିବି ସାରଥିମାନଙ୍କ ମହିମା
ଲେଖନ୍ତେ ଅନ୍ତ ନ ମିଳେ ଏହାଙ୍କର ସୀମା ।
ଧବଳ ରଥକୁ ଘେନି ବିଶ୍ୱାବସୁ ସୂନୁ
ଛାମୁରେ କରନ୍ତେ ଉଭା ଦେଖେ ଅଭିମନ୍ୟୁ ।
ଲକ୍ଷେ ବ୍ରାହ୍ମଣ କରନ୍ତେ ତହିଁ ବେଦଧ୍ୱନି
ସଜ ହୋଇଲା କୁମର ଶୁଭବେଳ ଘେନି ।
ତାରକା ଯୁଦ୍ଧେ କାର୍ତ୍ତିକ ଯେଉଁ ରୂପେ ଦିଶି
ତେସନେକ ଅଭିମନ୍ୟୁ ତେଜ ପରକାଶି ।
ଦିବ୍ୟ ଅଳଙ୍କାରେ ବେଶ ସୁଭଦ୍ରାର ବଳା
କାମନୁହେଁ ପଟାନ୍ତର ବର୍ଣ୍ଣ ଅଟେ ଧଳା ।
ଶ୍ରୀକୃଷ୍ଣଙ୍କର ଭଗ୍ନିଜ ସୁଗୁଣରେ ସିନ୍ଧୁ
ପାଣ୍ଡବକୁଳ ରକ୍ଷଣେ ମହିମା ତା ସାଧୁ ।
ରଣବେଶ ହୋଇ ବୀର ବସେ ଯାଇ ରଥେ
ଉଠିଲା ରଥ ତକ୍ଷଣେ ଗଗନର ପଥେ ।
ନଉସସ୍ର ଧନୁବଳ ଜିଣେ ଆର୍ଦ୍ରାବଳୀ
ହୀରାନୀଳା ପଦ୍ମରାଗ ଶୋଭଇ ଦୋହଲି ।
ପିତା ସମର୍ପିଣ ଥିଲେ ଧନୁଶର ଆଦି
ଭାରାନାଶେ ଯାହା ଦେଇଥିଲେ ଜମ୍ଭଭେଦୀ
ପ୍ରଳୟ କାଳେ ଦିଶନ୍ତି ଯେହ୍ନେ ନିରଞ୍ଜନ
ଅଭିମନ୍ୟୁ ସେହିପରି ଦିଶଇ ଶୋଭନ ।
ଦିବ୍ୟ ଅବତାର ହୋଇ ବସେ ଯାଇ ରଥେ
ବାଗ ଧରିଣ କେତନ ବସିଲା ସଙ୍ଗତେ ।
ବାମଦିଗେ ବୃକୋଦର ଦକ୍ଷିଣେ ନକୁଳ
ପଛେ ରହିଛନ୍ତି ସହଦେବ ମନ୍ତ୍ରୀବର ।
ଅନ୍ୟ ବୀର ଯୋଦ୍ଧା ପୁଣି ଯେତେ ମହୀପାଳେ
ବୀରବେଶେ ଗମନ୍ତି ସେ ଯୁଧିଷ୍ଠିଙ୍କମେଳେ ।
ଆଗୁଆଣି ହୋଇଛନ୍ତି ଦ୍ରୁପଦ ବିରାଟ
ପାଞ୍ଚଲକ୍ଷ ଯୋଦ୍ଧା ଘେନି ହୋଇ ମହାରୁଷ୍ଟ ।
ବାଜଇ ବିବିଧ ରଙ୍ଗେ ଟମକ ନିଶାଣ
ଥାଟ ଚଳିବାର ଯହୁଁ ଦେଖେ ଗୁରୁଦ୍ରୋଣ ।
ତିନିସାଗର ଯୋଦ୍ଧାଙ୍କୁ ରଖିଲା ଆଗରୁ
ଦ୍ରୁପଦ ବିରାଟ ତାହା ଦେଖିଲେକ ଦୂରୁ ।
ଜମ୍ଭଦୈତ୍ୟ ନିବାରଣେ ଯେହ୍ନେ ମଘବାନ
ତେସନେ ଶୋଭନ୍ତି ଭରଦ୍ୱାଜଙ୍କ ନନ୍ଦନ ।
କାନ୍ତି ଦିଶଇ ଯେସନେ କାଳାନଳ ବହ୍ନି
ତହିଁକି ଯୁଦ୍ଧେ ନାହାନ୍ତି କୃଷ୍ଣ ଫାଲ୍‌ଗୁନି ।
ଦ୍ରୋଣେ ଦେଖି ସାରଥିକୁ ପୁଚ୍ଛେ ଅଭିମନ୍ୟୁ
କେତନ ବୋଇଲା ଏହି ଭରଦ୍ୱାଜ ସୂନୁ ।

ପର୍ଶୁରାମଠାରୁ ବିଦ୍ୟା ପାଇଛନ୍ତି ସାଧି
ଚକ୍ରବ୍ୟୂହ ରଚିବା ଯେ ଏହାଙ୍କର ବୁଦ୍ଧି ।
ଅଭିମନ୍ୟୁ ବୋଲେ ଆଗେ ଜିଣିବା ଏହାଙ୍କୁ
ଆହେ କେତନ ମୋ ରଥ ନିଅ ତା ଆଗକୁ ।
ଗୋକ୍ଷୀର ଯେ ଶଙ୍ଖ ପଦ୍ମ ଶ୍ୱେତହୟ ଚାରି
ଯାଅ ବୋଲନ୍ତେ ଚଳନ୍ତି ସ୍ୱର୍ଗ ମର୍ତ୍ତ୍ୟପୁରୀ ।
ଯାଅ ବୋଲି ଆଜ୍ଞା ଯହୁଁ ଦେଲାକ ସାରଥି
ପ୍ରଥମ ଦ୍ୱାରେ ଭେଟିଲା ଦ୍ରୋଣଙ୍କର କତି ।
ଯେଉଁରୂପେ କ୍ଷୁଦ୍ର ତାରା ଆକାଶୁଁ ଖସଇ
ତେମନ୍ତ ଦ୍ରୋଣଗୁରୁଙ୍କୁ ସେ ରଥ ଭେଟଇ ।
ଅଦଭୁତ ରଥ ଦେଖି ପଚାରନ୍ତି ଦ୍ରୋଣ
କିରୀଟୀ ସମରମୁଖେ କଲାକ ପ୍ରୟାଣ ।
ଦ୍ରୋଣଙ୍କ ଛାମୁରେ ତହୁଁ ସାରଥି ବୋଲଇ
ପାର୍ଥସୁତ ଅଭିମନ୍ୟୁ ଏହିଟି ଅଟଇ ।
ଅର୍ଜ୍ଜୁନଠାରୁ ଅଧିକ ଦେଖି ତେଜୋବନ୍ତ
ପ୍ରଶଂସା କରିଲେ ତାକୁ ଭରଦ୍ୱାଜସୁତ ।
ତାହାଶୁଣି ଅଭିମନ୍ୟୁ ପେଷି ଚାରିଶର
ଶରଯାଇ ଦ୍ରୋଣପାଦେ କଲା ନମସ୍କାର ।
ତାହା ଦେଖି ଦ୍ରୋଣଗୁରୁ ହୋଇ ତୋଷ ଚିତ୍ତ
ଅଭିମନ୍ୟୁକୁ କଲ୍ୟାଣ କରିଲେ ବହୁତ ।
ସେହି ଚାରିବାଣେ ଗୁରୁ ମତିଭ୍ରମ ହୋଇ
ବୋଲଇ ଯାକୁ ଜିଣିବା କଠିନ ଅଟଇ ।
ଏହି ରୂପରେ ବିଚାର କରୁଛନ୍ତି ଗୁରୁ
ନିଉପ୍ରୋଧେ ବାଣ ପେଷେ କୁମର ଦୂରରୁ ।
ଯେମନ୍ତେ ନିର୍ଘାତ ଆସି ପଡ଼ଇ ଗଗନୁ
ସେବାଣେ ବ୍ୟୂହ ମନ୍ଥନ କଲା ଅଭିମନ୍ୟୁ ।
ଅଭିମନ୍ୟୁଙ୍କର ବାଣ ଆଘାତରେ ଡରି
ଦ୍ରୋଣଙ୍କର ଚାରି ଅଶ୍ୱ ଗଲେ ଅପସରି ।
ଦ୍ରୋଣଦ୍ୱାର ଛାଡ଼ିଦ୍ୟନ୍ତେ ଧାଇଁଲା ପାବନି
ବହୁଯୋଦ୍ଧାଙ୍କୁ ପ୍ରହାର କଲେ ଗଦାଘେନି ।
ପାଞ୍ଚରଥୀ ପଡୁ ଦ୍ରୋଣ ବଳ ଗଲା ଭାଜି
ବିହରନ୍ତି ପାଣ୍ଡବେ ଯେ କ୍ରୋଧେ ଗଳଗାଜି ।
ସମରରେ ଡାକଦେଲା ସୋମଦତ୍ତ ରଥୀ
ବ୍ୟୂହଭେଦ କରାଇଲୁରେ ଦ୍ରୋଣଦୁର୍ମତି ।
ଶୁଣିକରି ମହାକ୍ରୋଧ ହୋଇ ଦ୍ରୋଣଗୁରୁ
ବୋଇଲେ ବାଳକ ବୋଲି ହେଳାଯୁଦ୍ଧ କରୁ ।
ବସିଲାକ ମହାରୋଷେ ଦଣ୍ଡ ଭଗ୍ନ ଦେଖି
ନାରାଚ ବିନ୍ଧିଲେ ଗୁରୁ ଉପ୍ରୋଧ ନ ରଖି ।
ବଜ୍ର ସମାନ ବିନ୍ଧିଲେ ପାଞ୍ଚଦଶ ବାଣ
କୋପେ ମହାମୂର୍ତ୍ତି ଧରି ଉଭାହେଲେ ଦ୍ରୋଣ
ଯେଉଁରୂପେ ଗଗନରୁ ପଡ଼େ ଗିରିବର
ସେହି ପ୍ରକାରେ ପଡ଼ିଲା ଦ୍ରୋଣଙ୍କର ଶର ।
ରୋଷଭରେ ଅଭିମନ୍ୟୁ ପେଷେ ତୀକ୍ଷ୍ଣମୁନା
ଶିରଛେଦି ଭେଦିଗଲା ଦ୍ରୋଣଙ୍କର ସେହ୍ନା ।
ତ୍ରିପଣ୍ଡ ରୁଧିର ଗଳେ ଦ୍ରୋଣଙ୍କ ଅଙ୍ଗରେ
ଜଳଧାର ବହେ ଯେହ୍ନେ ବରଷା କାଳରେ ।
ବତିଶ ନାରାଚ ଦ୍ରୋଣ କରିଲେ କ୍ଷେପଣ
ମହାଅନଳ ସମାନେ କରିଲେ ଗମନ ।
ସେ ମହା ଅନଳଶର ସାରଥିଙ୍କୁ ଭେଦେ
ଅର୍ଜ୍ଜୁନ ନନ୍ଦନ ତାହା କିଞ୍ଚିତରେ ଛେଦେ ।
ଆବରଣ ଶରକୁ ଯେ ପେଷିଲେକ ଗୁରୁ
ନ ପଡୁ ଛେଦିଲା ଶର ଅଭିମନ୍ୟୁ ଦୂରୁ ।
ଆକାଶେ ଥାଇ ଦେଖନ୍ତି ଦିଗପାଳଗଣ
ଦ୍ରୋଣ ଅଭିମନ୍ୟୁ ଦୁହେଁ ରଣରେ ସମାନ ।
ଦ୍ରୋଣଙ୍କର ଶର କେବେ ହୋଇଯାଏ ବ୍ୟର୍ଥ
ମାତ୍ର ଅଭିମନ୍ୟୁ ଶର ନ ଟଳେ କିଞ୍ଚିତ ।
ଏକ ଏକ ପ୍ରହାରରେ ପଞ୍ଚବିଂଶ ରଥୀ
ସମରେ ପଡ଼ିଣ ସେହୁ ଉବୁରି ନ ଯାନ୍ତି ।
ଭୀମସେନ ସହଦେବ ନକୁଳ ଏ ତିନି
ସମରେ ପ୍ରହାର କଲେ ଅନେକ ସଇନି ।
ମେଦମାଂସେ ପରିପୂର୍ଣ୍ଣ ହେଲା ରଣସ୍ଥାନ
ଗହଳ ରଣେ ବାରଣ ନୁହେଁ ବେନି ସୈନ୍ୟ ।
ଦ୍ରୋଣ ଗୁରୁଙ୍କ ସମର ଅତି ଭୟଙ୍କର
ତାହା ସହି ବ୍ୟୂହ ମଦ୍ଧେ ଅର୍ଜ୍ଜୁନ କୁମର ।
ଦ୍ରୋଣଙ୍କ ସହିତ ଅଭିମନ୍ୟୁ ରଣକରେ
ଭୀମସେନ ସମାନ କେ ଅଛି ତ୍ରିଲୋକରେ ।
କୃତାନ୍ତକ ଜିଣି ତାର ତେଜ ବିକାଶିଲା
ବ୍ୟୂହ ଭାଙ୍ଗି ଦ୍ରୋଣ ପେଲି ଭିତରେ ପଶିଲା ।
ବୃନ୍ଦ ଅର୍କଦେଶ ରାଜା ମଦନ ନୃପତି
ସେ ରାଜାର ତୁଲେ ଛନ୍ତି ଅଶୀସସ୍ର ରଥୀ ।
ଥିଲାବେଳେ ଦ୍ରୋଣସଙ୍ଗେ ସେନା ସୈନ୍ୟ ଘେନି
ତାହାକୁ ମର୍ଦ୍ଦନ କଲା ପାଣ୍ଡବ ପାବନି ।
ମତ୍ତଗଜ କରେ ଧରି କଚାଡ଼ଇ ଭୀମ
ଦଳିଦେଲା କିଞ୍ଚିତରେ କରିଣ ସଂଗ୍ରାମ ।
ବାମକରେ ଗଦାଧରି ପ୍ରହାରିଲା ତୋଳି
ମଦନ ନୃପତି ପଡ଼ି ହୋଇଗଲା ଧୂଳି ।
ରାଜା ପଡ଼ିବାର ଦେଖି ପାରିଷଦବଳ
ବେଢ଼ିଲେ ଭୀମସେନକୁ ପିଟିଲେ ପ୍ରବଳ ।
ରେ ରେକାର ଶବଦରେ କମ୍ପଇ ଆକାଶ
ଗଦା ପ୍ରହାରେ ଅନେକ ବଳ କଲା ଧ୍ୱଂସ ।

ଦ୍ରୋଣ କର୍ଣ୍ଣ ନ ସହନ୍ତି ଯାହାର ସମର
ତା ସମରେ କେ ରହିବ ଆନ ବୀର ଛାର ।
ଅଶୀ ଅଶୀ ସହସ୍ର ସେ ଯୋଦ୍ଧା ଆଉ ହସ୍ତୀ
ବେନି ଘଡ଼ି ସମରରେ ନିଃଶେଷ କରନ୍ତି ।
ଦମନ ଦଳ ଧ୍ୱଂସନ ଅଟଇ ତା ବାହୁ
ଭାରତେ ଭାରୋଇ ମଲ୍ଲ ଭୀମ ମହାବାହୁ ।
ସୈନ୍ୟବଳ ପଡ଼ନ୍ତେ ଦେଖିଲେ ଦ୍ରୋଣଗୁରୁ
ସମ୍ଭାଳି ନ ପାରେ ଏକା ପାର୍ଥ ରଣ କରୁ ।
ଦମନ ଦଳ ପଡ଼ିଲେ ଯହୁଁ ଭୀମରଣେ
ପଳାଇଲେ ଦ୍ୱାର ଛାଡ଼ି ନ ରହିଲେ ଜଣେ ।
ସୈନ୍ୟବଳ ପଡ଼ିଯାନ୍ତେ ଗୁରୁ ହେଲେ ଏକା
ପ୍ରଥମ ଯୁଦ୍ଧରେ ହୃଦେ ହୋଇଲେ ତାଟକା ।
ସମୟରେ ଛିଦ୍ରପାଇ ସୁଭଦ୍ରାର ବଳା
କୋପେ ନାରାଚ ବିନ୍ଧିଲା ନାମେ ମହାଖେଳା
ଡାକିନୀ ପ୍ରେତ ପିଶାଚୀ ଆବର ଚାମୁଣ୍ଡା
ଖାଙ୍କରକେଶୀ ଦେବୀଏ ହୁଅନ୍ତି ପ୍ରଚଣ୍ଡା ।
ପିଶାଚୀ ନାରାଚ ଯହୁଁ ବିନ୍ଧେ ଅଭିମନ୍ୟୁ
ରୋମ ରୋମକେ ଭେଦିଲା ଦ୍ରୋଣଙ୍କର ତନୁ
ରୁଧିରରେ ଜରଜର ଦ୍ରୋଣଙ୍କର କାୟ
ଭୁଜ ଚରଣୁ ବହଇ ଜଳଧାର ପ୍ରାୟ ।
ବଳହୀନ ହେଲେ ଗୁରୁ ନାହିଁ ଦୂରଦୃଷ୍ଟି
ଶର ମାଇଲେ ଶତ୍ରୁକୁ ନ ପାରଇ ଭେଟି ।
ହାବୁଡ଼ାଶର କୁମର ଦୂରୁଦେଲା ଛାଡ଼ି
ଉତ୍ତାନ ହୋଇଣ ଗୁରୁ ରଥେ ଗଲେ ପଡ଼ି ।
ଦ୍ରୋଣଙ୍କ ସାରଥି ରଥ ନେଲା ଆଡ଼କରି
ଦ୍ୱାର ରଖି ନ ପାରିଣ ଗଲେ ଅପସରି ।
କେତନ ବୋଇଲା ବାଣ ବିନ୍ଧ ଅଭିମନ୍ୟୁ
ବେନିଖଣ୍ଡ କରି କାଟ ଦ୍ରୋଣଙ୍କର ତନୁ ।
ଅଭିମନ୍ୟୁ ବୋଲେ ଏହା ନୁହେଁ କ୍ଷତ୍ରିଧର୍ମ
ମୂର୍ଚ୍ଛିତ ଯୋଦ୍ଧା ଯେ ମାରେ ସେ ବଡ଼ ଅଧମ ।
ପିତାଙ୍କର ଗୁରୁ ଏହୁ ଥାନ୍ତୁ କିନା ବର୍ତ୍ତି
କୃଷ୍ଣାର୍ଜୁନ ବିଚାରିଣ ଯାଙ୍କୁ ଦେବେ ଶାସ୍ତି ।
ପ୍ରଥମ ଦ୍ୱାରରେ ଦଶସହସ୍ର ନୃପତି
ପଞ୍ଚସସ୍ର ହସ୍ତୀ ଦଶସହସ୍ର ପଦାତି ।
ଦ୍ରୋଣ ଯେ ଆବୋରିଥିଲେ କଉରବ ଥାଟ
ସବୁମଲେ ଦ୍ରୋଣ ଗଲେ ଫିଟିଗଲା ବାଟ ।
ଯେସନେ ସାଗର ବ୍ୟୂହ ରଚି ହଂସପନ୍ତି
ସୈନ୍ୟମଧ୍ୟେ ଅଭିମନ୍ୟୁ ତେସନ ଦିଶନ୍ତି ।
କ୍ଷେପିଥାନ୍ତି ଅଶ୍ୱ ଗଜ ହୋଇ ପରଚଣ୍ଡ
ଅଶ୍ୱଗଜ ସୈନ୍ୟ ମାରିକଲେ ମସିଗୁଣ୍ଡ ।
ସୈନ୍ୟ ସମ୍ମୁଖରେ ଯାଏ ଏକରଥ ଗଳି
କୁରୁସୈନ୍ୟ ଚନ୍ଦ୍ରପ୍ରାୟ ଦିଶଇ ଧବଳି ।
ପଞ୍ଚତ୍ରିଂଶ ସସ୍ର ରାଜା ନଉସସ୍ର ହସ୍ତୀ
ଘେନିଣ ଦ୍ୱିତୀୟ ଦ୍ୱାରେ ଜୟଦ୍ରଥ ଅଛି ।
ରକ୍ତପାଟ ପିନ୍ଧି ହୀରା ନୀଳା ମଣ୍ଡିହୋଇ
କନ୍ଦର୍ପ ପରାୟେ ସିନ୍ଧୁ ରାଜା ବିକାଶଇ ।
ବୀରବେଶ ହସ୍ତରେ କୋଦଣ୍ଡ ଅଛି ଧରି
ସୈନ୍ୟଙ୍କ ସହ ଉଠିଲା ତକ୍ଷଣେ ହୁଂକାରି ।
ଅଭିମନ୍ୟୁ ପଛକତି ଭୀମସେନ ଥିଲା
ମହାରଢ଼ି ଘାତ କରି ଆଗ ହୋଇଗଲା ।
କାଳଦଣ୍ଡ ଘେନି କିବା ବିଜେ ନାଶକର
ତେସନ ପ୍ରକାରେ ଦିଶେ ପାଣ୍ଡବ ସୁନ୍ଦର ।
ଶ୍ୟେନ ଦେଖି ପଳାବନ୍ତି ଯେହ୍ନେ ଆନ ପକ୍ଷୀ
ଭାଜିଗଲେ କଉରବେ ଭୀମସେନ ଦେଖି ।
ଲେଉଟିଣ ଲକ୍ଷେବୀର ଘେନି କୁନ୍ତ ଖଡ଼୍ଗ
ପ୍ରହାର କଲେ ନେଇଣ ଭୀମସେନ ଅଙ୍ଗ ।
ଅସ୍ତ୍ର ଭାଙ୍ଗିବାର ଦେଖି ଭୀମସେନ ଉଠେ
ବେନି ଗଦା ବୁଲାଇଣ କୁରୁସୈନ୍ୟ ପିଟେ ।
ପବନନନ୍ଦନ ଦେଖି ପାତେ ବାମଅଙ୍ଗ
ପଡ଼ିଣ କୋନ୍ତ ଶାବେଳୀ ହୋଇଗଲା ଭଙ୍ଗ ।
ପରବତ ଭାଙ୍ଗିଦିଏ ଯେଉଁ ମହାବଳୀ
ତା ଆଘାତେ ସବୁ ରଥ ହୋଇଗଲା ଧୂଳି ।
ଦଶସସ୍ର ରଥୀ ଘେନି ଜୟଦ୍ରଥ ଥିଲା
ବେଢ଼ିଣ ବୃକୋଦରକୁ ବହୁଯୁଦ୍ଧ କଲା ।
ରଥ ହାନ୍ଦୋଳରେ ଭୀମ ଅତି ପରଚଣ୍ଡା
ରଥେ ରଥେ ପିଟିକରି କରିଦେଲା ଗୁଣ୍ଡା ।
ଅପାର ସଂଗ୍ରାମ ହେଲା ସେହି ରଣଭଙ୍ଗ
ସମରେ ଅଭଙ୍ଗ ଅଟେ ଭୀମସେନ ଅଙ୍ଗ ।
ଗଦା ମୃଦୁଗର ଶେଲ ଅସିପତ୍ର ଯାଠି
ଏକମୁଖ ହୋଇ ସର୍ବେ ଭୀମସେନେ ପିଟି ।
ଜୟଦ୍ରଥ ତେଜ ଅଟେ କାଳାନଳ ଜିଣି
ସହସ୍ରେକ ରାଜା ଘେନି ଉଠିଲାକ ପୁଣି ।
ମହା କୋଳାହଳ ହୋଇ ହେଲା ଘୋରରଣ
ତା ବିସ୍ତାରି କହିବାକୁ କେ ସମକ୍ଷ ପୁଣ ।
ନକୁଳ ସହଦେବର ଘୋରରଣ କଥା
ମହାଭାରତ ଯୁଦ୍ଧରେ ସେହୁ ସାମରଥା ।
ନକୁଳ ସମର କରେ ଅତୀବ ଗହନେ
ରଥ ଛତ୍ରାକାରେ ତୋଳେ ତାର କୁନ୍ତମୁନେ ।
ଅନ୍ତରୀକ୍ଷେ ବୁଲାଇଣ ଦିଅଇ ସେ ଫିଙ୍ଗି
ବହୁତ ଦୂରରେ ପଡ଼ି ତାହା ଯାଏ ଭାଙ୍ଗି ।

ଏହିପରି ରଣ ହୁଏ ଦ୍ୱିତୀୟ ଦୁଆରେ
ମହା ମହା ବଳବନ୍ତ ପଡ଼ିଲେ ସମରେ ।
ଶର ପେଷେ ସହଦେବ ସମରରେ ପଶି
ଶରଜାଳରେ ଗଗନମଣ୍ଡଳ ନ ଦିଶି ।
ବଜ୍ରଠାରୁ ଅଧିକରେ ଅଟଇ ସେ ବାଣ
ନିର୍ଘାତ ପ୍ରାୟେ ପଡ଼ିଣ ଘେନଇ ଯେ ପ୍ରାଣ ।
ବିଶେଷରେ ମନ୍ତ୍ରୀ ସେହୁ ପାରେ ସବୁ ଭେଦି
ଆକାଶରୁ ବାଣ ପଡ଼ି ସବୁ ଦିଏ ଛେଦି ।
ରଥ ଗଜ ପଦାତିକ ଯେ ମୁଖେ ପଡ଼ଇ
ବିମୁଖ ହୋଇଣ ସର୍ବେ ଯାଆନ୍ତି ପଳାଇ ।
ଶାକଲ୍ୟ ଦେଶର ରାଜା ମନ୍ମଥ ନୃପତି
ମନ୍ତ୍ରୀକୁ ଓଗାଳେ ଘେନି ପାଞ୍ଚସସ୍ର ରଥୀ ।
ସମରେ ନିଃଶଙ୍କ ଅଟେ ମାଦ୍ରୀଦେବୀସୁତ
ତା ସଙ୍ଗେ ଯୁଝିବାପାଇଁ ବଳାଇଲା ଚିତ୍ତ ।
ଗୁଣ ଟଙ୍କାରିଣ ସହଦେବକୁ ଓଗାଳି
ପ୍ରଶଂସଇ ସହଦେବ ସାଧୁ ମହାବଳୀ ।
ପଇଁଚାଳିଶ ସହସ୍ର ବଳ ଧରି ଧନୁ
ଅନୁକ୍ଷଣେ ବାଣ ବିନ୍ଧେ ମାଦ୍ରୀଦେବୀ ସୂନୁ ।
ନାରାଚ ପଡ଼ନ୍ତେ ସେହୁ ପଡ଼ିଲାକ ଢଳି
ହୟ ସାରଥି ସହିତ ଫୁଟିଗଲା ଗଳି ।
ରୁଧିରେ ରକତ ବର୍ଣ୍ଣ ସବୁଙ୍କରି କାୟେ
ଦିଶାନ୍ତି ସର୍ବେ ମନ୍ଦାର କୁସୁମ ପରାୟେ ।
ସେମାନଙ୍କ ଅସ୍ତ୍ରସବୁ ନ ଭେଦଇ କିଛି
ମନ୍ତ୍ରି ଅଭେଦ କବଚ ଅଙ୍ଗେ ପିନ୍ଧିଅଛି ।
ବିଚାରନ୍ତି ସହଦେବ ସେମାନଙ୍କୁ ଦେଖି
ଅନାଥ ଲୋକଙ୍କୁ ସିନା ଧର୍ମଦେବ ସାକ୍ଷୀ ।
ଦ୍ୱାରେ ସମର କରଇ ଅଭିମନ୍ୟୁ ସୁତ
ଦଶସସ୍ର ରାଜାତୁଲେ ଅଛି ଜୟଦ୍ରଥ ।
ଜୟଦ୍ରଥକୁ ଦେଖିଣ କହେ ଅଭିମନ୍ୟୁ
ସମ୍ଭାଳ ତୁ ଜୟଦ୍ରଥ ଏବେ ତୋର ତନୁ ।
ଏହା କହି ପାଞ୍ଚ ଲୁହାଶର ଏକମୁନା
ବିନ୍ଧିଦ୍ୟନ୍ତେ ଭେଦିଗଲା ଜୟଦ୍ରଥ ସେହ୍ନା ।
ଯେଉଁରୂପେ ସର୍ପମାନେ ପଶନ୍ତି ବିବରେ
ତେମନ୍ତ ଭେଦିଲା ଜୟଦ୍ରଥର ସେହ୍ନାରେ ।
ପୁଣି ପାଞ୍ଚବାଣ ଘେନି ବୀର ଅଭିମନ୍ୟୁ
କିଞ୍ଚିତରେ ଛେଦିଦେଲା ଜୟଦ୍ରଥ ଧନୁ ।
ପୁଣି ପଞ୍ଚବାଣ ବିନ୍ଧେ ସୁଭଦ୍ରା ତନୟ
ସାରଥି ସହ ଛେଦିଲା ରଥ ଚାରିହୟ ।
ରଥ ପୀଡ଼ାମାନ ସବୁ ପଡ଼ିଲାକ ଛିଡ଼ି
ରଥ ଯୋଦ୍ଧା ଏକାବେଳେ ପଡ଼ିଲେ କଚାଡ଼ି ।

ଆନ ରଥେ ଜୟଦ୍ରଥ ଆରୋହିଲେ ଯାଇ
ଅଭିମନ୍ୟୁ ଭିତରରେ ପଶେ ରଥବାହି ।
ଗିରିବର ସମାନରେ ଆରୋହିଣ ରଥ
ଭିତରେ ପଶିଲା ଯାଇ ସୁଭଦ୍ରାର ସୁତ ।
ବ୍ୟୂହ ଭେଦି ଅଭିମନ୍ୟୁ ବେଗେ ଗଲା ଚଳି
ପାଣ୍ଡବଙ୍କୁ ନ ଦିଶିଲା ସେ ରଥ ଧବଳି ।
ସୈନ୍ୟ ଭଗ୍ନ ଦେଖି ଧାଇଁଲେକ ତିନିବୀର
ଯୁଧିଷ୍ଠି ଅଛନ୍ତି ମଧ ପଛରେ ତାଙ୍କର ।
ଦଶସସ୍ର ରଥ ଘେନି ପୁଣି ଜୟଦ୍ରଥ
ଆଗେ ଓଗାଳେ ପାଣ୍ଡବ ବୀର ଚାରିଭ୍ରାତ ।
ଯୁଧିଷ୍ଠି ବୋଇଲେ ତୁହି ଶୁଣ ବୃକୋଦର
ରଣ ଜିଣି ଅଭିମନ୍ୟୁ ପଶିଲା ଭିତର ।
ପଞ୍ଚସ୍ତରି ସସ୍ର ରାଜା ପୁତ୍ର ମୋର ଏକା
ସେମାନଙ୍କୁ ଦେଖି ମନେ କରୁଥିବ ଶଙ୍କା ।
ଜୟଦ୍ରଥ ଜିଣିକରି ପୁତ୍ର ପଛେ ଯାଅ
ତାହା ଶୁଣି ଦଉଡ଼ିଲା ପବନ ତନୟ ।
କରେ କାଳବର ଗଦା ଘେନିଣ ମାରୁତି
ବହୁତ ସୈନ୍ୟଙ୍କୁ ମାରି ଦେଲେ ଯମକତି ।
ବହୁତ ସମର ହେଲା ସିନ୍ଧୁରାଜା ତୁଲେ
ଦଶସସ୍ର ରାଜା ତାକୁ ଆବୋରିଣ ଥିଲେ ।
ଭୀମସେନ ସହିତରେ କଲେ ରଣରଙ୍ଗ
ପୁଣି ବେଢ଼ିଲେ ସମସ୍ତେ ହୋଇ ଏକ ସଙ୍ଗ ।
ଭୀମ ଦୁଇ ମାଦ୍ରୀସୁତ ଏହି ତିନିମୂର୍ତ୍ତି
ସମରରେ ନିଶୋଧନ କଲେ ବହୁ ରଥୀ ।
ଦଶସହସ୍ର ରାଜନ ହେଲେ ଏକମୁଖ
ଏକ ଯାବୋଡ଼େ ବିନ୍ଧିଲେ ଘେନିଣ ଶାୟକ ।
ଆକାଶ ଅଦୃଶ୍ୟ ହେଲା କରି ଶରବୃଷ୍ଟି
ଦିଗ ବିଦିଗରେ ସବୁ ବାଣ ଗଲା ଘୋଟି ।
ସାଧୁ ହେ ପାଣ୍ଡବ ବୋଲି ହେଲା ଶୂନ୍ୟବାଣୀ
ଏ ଦୁଃସହ ସମରକୁ ତୁମ୍ଭେ ବୀରମଣି ।
ଗହଳ ସମର ଦେଖି ପବନ ନନ୍ଦନ
ରଥ ତେଜ୍ୟାକରି କଲେ ପାଦରେ ଗମନ ।
ମନ୍ଦର ପର୍ବତ କିବା ଆସିଅଛି ଉଠି
ଗଦା ବୁଲାଇଣ ତଥା ଭୀମସେନ ଜଟି ।
ଲୌହ ଗିରି ନ ସହଇ ଯାର ଗଦାଘାତ
ସେ ଗଦାଘାତରେ କାହୁଁ ରହିବ ବା ରଥ ।
ହୟ ସାରଥି ଆଦି ଯେ କିଛି ନ ରହିଲେ
ଭାଜିଲା କୌରବ ବଳ ସର୍ବେ ପଳାଇଲେ ।
ଦେବଙ୍କୁ ଦୁଃସହ ଅଟେ ଭୀମସେନ କୋପ
ଜୟଦ୍ରଥକୁ ଦେଖିଣ ବଢ଼ିଲା ତା ଦର୍ପ ।

ଭୀମସେନ କୋପ ହୋଇ ତାହାକୁ ପୁଚ୍ଛଇ
ଏସନକ ପ୍ରତିଜ୍ଞାରେ ତୋର କିସପାଇଁ ।
ପାଦଗତି କରି ପୁଣ ଧାମଇଁ ପାବନି
କୋପେ ପିଟିଲା ତା ରଥ ଆନ ରଥ ଘେନି ।
କୋନ୍ତ ମୁନେ ବହୁ ସୈନ୍ୟ ମାଇଲା ନକୁଳ
ପୁଣିହିଁ ବହୁତ ଶର ବିନ୍ଧିଲା ପ୍ରବଳ ।
ଆକାଶ କମ୍ପିଲା ଭୀମସେନ ଦେଲା ରଡ଼ି
ଯେଉଁପରି ଆକାଶରେ ଶୁଭେ ଘଡ଼ଘଡ଼ି ।
ଭୀମସେନ ମୂର୍ତ୍ତି ଦେଖି ସିନ୍ଧୁ ରାଜସୁତ
ଚାରିଶତ ରଥସହ ଉଠିଲା ତ୍ୱରିତ ।
ପରିଘ କୁନ୍ତ ନାରାଚ ଖଡ଼ଗ ଲାଙ୍କିଆ
ଝଟକି ଦିଶନ୍ତି ସର୍ବେ ବିଜୁଳିର ନିଆଁ ।
ଏକମୁଖ ହୋଇ ସର୍ବେ ଭୀମକୁ ପ୍ରହାରି
ଶରୀରେ ପଡ଼ି ସେ ଅସ୍ତ୍ର ହୋଇଯାଏ ଚୂରି ।
ବେନିକରେ ବେନିଗଦା ଘେନିଣ ମାରୁତି
ଏକା ପ୍ରହାରକେ ମାରେ ପଞ୍ଚବିଂଶ ରଥୀ ।
ପାଦଭରେ ଦଲ ଦଲ ହୁଅଇ ମେଦିନୀ
ବିଧା ଗୋଇଠାରେ ମଲେ ବହୁତ ସଇନି ।
ଭୟେ ଯୋଦ୍ଧାମାନେ ଗଲେ ସମରକୁ ଛାଡ଼ି
ସ୍ତବଧ ହୋଇଲେ ସର୍ବେ ଶୁଣି ଭୀମରଡ଼ି ।
ବତ୍ରିଶ ସହସ୍ର ଯୋଦ୍ଧା ପଡ଼ିଲେ ସମରେ
କବନ୍ଧ ନାଚିଲେ ତିନି ପାଣ୍ଡବ ସମରେ ।
ଦଣ୍ଡଭଗ୍ନ ଦେଖିକରି ଦୁଃଶୀଳାନ୍ନର୍ଲ୍ଲଭ
ରାଗରେ ଡାକିଲେ ଆରେ ଆରେରେ ପାଣ୍ଡବ
ରେ ରେ କାର ଶୁଣିକରି ଭୀମ ମହାବଳ
ଘୃତ ସଂଯୋଗ ହୋଇଲେ ଯେସନେ ଅନଳ
ବାଆନ ବାଆନ ଭାର ବେନି ଗଦା ନେଇ
ଜୟଦ୍ରଥ ରଥ ପରେ ପିଟିଲାକ ଯାଇ ।
ଏକ ପ୍ରହାରକେ ଭଗ୍ନ ହୋଇଗଲା ରଥ
ପାଦଗତି ହୋଇକରି ରହେ ଜୟଦ୍ରଥ ।
ଏକ ହସ୍ତରେ କୁଠାର ଅନ୍ୟହସ୍ତେ ଶୂଳେ
ଯଥା ଶିବ ଦିଶିଥିଲେ ଅନ୍ଧକ ନିର୍ମୂଳେ ।
ଜୟଦ୍ରଥକୁ ଦେଖିଣ ଧାମେ ବୃକୋଦର
ସହଦେବ ବୋଲେ ତୁମ୍ଭେ ସମର ନ କର ।
ରୁଦ୍ରଅସ୍ତ୍ର ଘେନିଲାଣି ସିନ୍ଧୁ ଅଧିପତି
ଏଣୁ ନିଷ୍ଟେ ପରାଜିତ ହେବା ତାର କତି ।
ଶୁଣି ଯୁଧିଷ୍ଠି ପୁଚ୍ଛିଲେ ସହଦେବ ପ୍ରତି
ଏଥିର କିସ ଚରିତ କହ ଆମ୍ଭକତି ।
ଶୁଣି ସହଦେବ କହେ ହେ ନୃପତି ଶୁଣ
ବହୁତ ଦିନର କଥା ଏହୁ ନୁହେଁ ଜାଣ ।

ସହଦେବ ବୋଲେ ସ୍ୱାମୀ ଶୁଣ ମହୀପତେ
ଥିଲାବେଳେ ଆମ୍ଭେମାନେ କୁଣ୍ଡଳୀ ବନସ୍ତେ
ପାଞ୍ଚଭାଇ ଗଲୁ ଆମ୍ଭେ ବନେ ମୃଗମାରି
ଆଶ୍ରମରେ ଥିଲେ ଏକା ଦ୍ରୌପଦୀ ସୁନ୍ଦରୀ ।
ଦଶସସ୍ର ରଥୀ ଘେନି ବିଷ୍ଣୁଭଦ୍ରା କୂଳେ
ଦ୍ରୌପଦୀକି ସେ ଚଣ୍ଡାଳ ହରିନେଲା ବେଳେ
ଧୌମ୍ୟ ପୁରୋହିତ ତାକୁ ବୁଝାଇଲେ ଯେତେ
ତାଙ୍କକଥା ନ ଶୁଣିଲା ସେହୁ କର୍ଣ୍ଣପଥେ ।
ରାଗଭର ହୋଇ ତହୁଁ ଗଲେ ପୁରୋହିତେ
ଆମ୍ଭଙ୍କୁ କହିଲେ ଯାଇ ନନ୍ଦନ ବନସ୍ତେ ।
ଆମ୍ଭ ଚାରି ଭାଇଙ୍କି ଯେ ଆଜ୍ଞାଦେଲେ ରାଇ
ଜୟଦ୍ରଥ ଦୋଷକ୍ଷମ ଦୁଃଶୀଳାର ପାଇଁ ।
ତାକୁ ପ୍ରାଣରେ ନ ମାରି ଦ୍ରୌପଦୀକୁ ଆଣ
ଅପମାନ ଦେଇ ତାର ସାର ବଡ଼ପଣ ।
ତୁମ୍ଭର ଆଜ୍ଞାରେ ଗଲୁ ଆମ୍ଭେ ଚାରିଭାଇ
ସରସ୍ୱତୀ କୂଳେ ଭୀମ ଓଗାଳିଲେ ଯାଇ ।
ସୈନ୍ୟବଳ ଯାହାଥିଲା ମାରି କଲୁ ହତ
ଗଦାଘାତେ ଭୀମସେନ ଭାଙ୍ଗିଦେଲେ ରଥ ।
ଦ୍ରୌପଦୀ ଛାଡ଼ି ପଳାଏ ପାଦଗତି କରି
ବହୁଶାସ୍ତି ଦେଲେ ତାର କେଶକୁ ଓଟାରି ।
ଜାନୁତଳେ ଗଳାଇଲେ ତାକୁ ସାତଥର
ଏଥି ସଙ୍ଗତେ ବହୁତ ହୋଇଛି ପ୍ରହାର ।
ତୁମ୍ଭର ଆଜ୍ଞା ପ୍ରମାଣେ ତାକୁ ନ ମାଇଲୁ
ରାଗଭରରେ ତାହାକୁ ସାତବେଣ୍ଟି କଲୁ ।
ପଚାରିଣ ତାହାକୁ ଯେ କରାଇଲୁ ସତ୍ୟ
ପ୍ରାଣେ ନ ମାରିବୁ ତୋତେ ଆରେ ଜୟଦ୍ରଥ ।
ସର୍ବଦା ତୁ ବୋଲାଇବୁ ପାଣ୍ଡବଙ୍କ ଭୃତ୍ୟ
ଏସନକ କରାଇଲୁ ଆହେ ଧର୍ମସୁତ
ସତ୍ୟକରନ୍ତେ ଛାଡ଼ିଲୁ ଗଲା ପ୍ରାଣ ଘେନି ।
ରାଜ୍ୟକୁ ନ ଗଲା ସେହୁ ହୋଇ ଅଭିମାନୀ ।
ଗୌରୀ ନଦୀକୂଳେ କପିଳାସର କନ୍ଦର
ତହିଁ ବିଜେ କରିଛନ୍ତି ଉମା ମହେଶ୍ୱର ।
ଅନ୍ଧକକୁ ନିବାରିଣ ସୁଖେ ଛନ୍ତି ରହି
ପଡ଼େ ଗଙ୍ଗାନୀର ତହିଁ ତିନିଧାର ହୋଇ ।
ସେହି ନଦୀକୂଳେ ଯାଇ କରିଲା କୁଟୀର
ତପସ୍ୟା କରିଲା ତହିଁ ସିନ୍ଧୁ ନୃପବର ।
ନିଶ୍ଚଳେ ବସିଲା ଦିବାରାତ୍ରେ ନାହିଁ ଶଯ୍ୟା
ଆହାର ବିହାର ସବୁ କରିଦେଲା ତେଜ୍ୟା ।
ଏ ବିଧିରେ ଦଶବର୍ଷ କରିଲାକ ଧ୍ୟାନ
ସିଂହ ଷଷ୍ଟୀରେ କମ୍ପିଲା ଶିବଙ୍କ ଆସନ ।

ଚନ୍ଦ୍ରବାର ଯେ ଅଶ୍ଳେଷା ନକ୍ଷତ୍ରର ଭୋଗ
ବାଳବ ନାମେ କରଣ ଅତିଗଣ୍ଡ ଯୋଗ ।
ତିନି ପ୍ରହର ପ୍ରବେଶ ଶତ୍ରୁ ମଧ ବେଳ
ବୃଷଭ ଆରୋହି ବିଜେ କରିଲେ ସୁଢ଼ଳ ।
ରୁଦ୍ର ବୋଇଲେ ତୁ ବର ମାଗ ସିନ୍ଧୁସୁତ
ଭକ୍ତ ପ୍ରାଣବନ୍ଧୁ ମୁହିଁ ତ୍ରିଜଗତ ନାଥ ।
ମୁହିଁ ବରଦାତା ସିନା ପରଦୁଃଖେ ଦୁଃଖୀ
ଦାତବ୍ୟ ପୁରୁଷ ମୁହିଁ ସର୍ବଜନ ରଖି ।
ଜୟଦ୍ରଥ ବୋଲେ ଯେବେ ବିଶ୍ୱନାଥ ତୁହି
ପରମ ଗତି ଲଭିଲି ତୋର ରୂପ ଚାହିଁ ।
ବାରବର୍ଷ ତପକଲି ଲଭି ବଡ଼ କ୍ଳେଶ
ଦେଖିବି ମୁଁ ନିଜରୂପ କର ତୁ ପ୍ରକାଶ ।
ଜୟଦ୍ରଥ ବାକ୍ୟେ ନିଜ ରୂପ ପରକାଶି
ତ୍ରିନୟନ ସ୍ଫଟିକର ରୂପକୁ ପ୍ରକାଶି ।
ତ୍ରିଶୂଳ ଗଦା ଶକତି ଶୋହେ ବେନିକରେ
ଜଟାକୁଟ ଲମ୍ବିଅଛି ପଞ୍ଚ ମସ୍ତକରେ ।
ସୋମ ସୂର୍ଯ୍ୟ ଅନଳ ଯେ ହୁଏ ତିନି ନେତ୍ର
ସ୍ରବିଣ ନୀଳ ଜଟାରୁ ବହେ ଅବିରତ ।
ଏ ବିଧିରେ ପଞ୍ଚଦଶ ନୟନ କପୋଳ
ଉରେ ପିନାକ ଡମ୍ବରୁ ଦିଶେ ମହୋଜ୍ଜ୍ୱଳ ।
ଗଙ୍ଗା ଯମୁନା ଯେ ସରସ୍ୱତୀଙ୍କର ନୀର
ଶୂନ୍ୟଗାମୀ ହୋଇ ବହୁଅଛି ତିନିଧାର ।
ସମୁଦ୍ର ମନ୍ଥନୁ ଉପୁଜିଲା କାଳକୂଟ
ଅତିଶୋଭା ଦିଶଇ ସେ ନୀଳବର୍ଣ୍ଣ କଣ୍ଠ ।
ଦ୍ୱାଦଶ ନୟନ ଶୋଭେ ରୁଚିର ତା ତନୁ
ଅନ୍ଧକାରିକି ଯେ ସଦା ପୂଜେ ଶତମନ୍ୟୁ ।
କୋଟିଏ ସହସ୍ର ବଳ ପିନାକ ଯା କରେ
ମୃଗାଙ୍ଗ ଧାରଣ ନାଥ ଅଚିନ୍ତ୍ୟ ବିଶ୍ୱରେ ।
ଶଙ୍ଖ ମହାପଦ୍ମ ଶ୍ୱେତ କର୍କୋଟ ତକ୍ଷକ
ଶିରେ ଅଷ୍ଟକୁଳ ନାଗ ସଦା ବିରାଜିତ ।
ବିଜେକଲେ ଦିଗମ୍ବର ନିଜ ରୂପ ଧରି
ବଦତି ଶାରଳା ଦାସ ଶିବ ସ୍ମରି ସ୍ମରି ।
ଭାବିଲେ ଯେ ବିଶ୍ୱନାଥ ନାମ ମମହୃଦେ
ପରମଗତି ପାଇବି ତବ ପରସାଦେ ।
ସଙ୍ଗେ ସଙ୍ଗେ ଅଛନ୍ତି ଯେ କାର୍ତ୍ତିକ କୁମର
ବିନାୟକ ଜୟନ୍ତକ ନନ୍ଦୀ ମହାବଳ ।
ଭୀମଙ୍କ ଚଣ୍ଡ ପ୍ରଚଣ୍ଡ ମଣିଭଦ୍ର କାଳୀ
ଚୌଦକୋଟି ଶିବଗଣ ଘେନି ବିଜେ ଶୂଳୀ ।
ଢଳି ଢଳି ବୃଷଭରେ ଯାନ୍ତି ଗଣ ଘେନି
ନବଲକ୍ଷ ଡମ୍ବରୁ ଯେ ବାଜେ ଟିନିଟିନି ।
ଶିବଗଣ ଘେନି ବିଜେ କଲେ କୁତୂହଳେ
ଜୟଦ୍ରଥକୁ ସେ ନିଜରୂପ ଦେଖାଇଲେ ।
ନିଜରୂପ ଦେଖି ସିନ୍ଧୁରାଜା ପରଣାମି
ତ୍ରାହି ତ୍ରାହି ବୋଲି ଉଚ୍ଚେ କରଇ ଦଇନୀ ।
ଈଶ୍ୱର ବୋଇଲେ ବର ମାଗ ସିନ୍ଧୁରାଜ
ମୋହର ପ୍ରସନ୍ନେ ତୋର ସିଦ୍ଧହେଉ କାର୍ଯ୍ୟ ।
ବରମାଗ ଜୟଦ୍ରଥ ବୋଲନ୍ତି ଧୂର୍ଜଟୀ
ମନୋବାଞ୍ଛା ପୂରାଇଣ ହୁଅ ତୁହି ତୁଷ୍ଟି ।
କରପତ୍ର ଯୋଡ଼ି ତହୁଁ ବୋଲେ ସିନ୍ଧୁରାଜ
ପାଣ୍ଡବେ ଜିଣିବି ମୋର ଅନ୍ୟେ ନାହିଁ କାର୍ଯ୍ୟ
ଶିବ ବୋଇଲେ ମାଗିଲୁ ନିଦାରୁଣ ବର
ଯାହା ବାଞ୍ଛା କଲୁ ତାହା ଦେବେ ଅଗୋଚର
କିରାତରୂପେ ଅର୍ଜ୍ଜୁନ ବୁଲୁଥିଲା ବନ
ତାହାର ମୋହର ଭେଟ ହେଲା ଏକଦିନ ।
ମୋତେ ବୋଇଲାରେ ତୋର ଘେନିଲେ ମୁଁ ପ୍ରାଣ
ମୋହର ଏଥିରେ କିସି ହୋଇବ କାରଣ ।
ଏହା କହି ଧନୁହୁଳେ ବୁଲାଇଲା ମୋତେ
ପୁଣି ଦୟାକରି ଛାଡ଼ି ଦେଲାକ ପଶ୍ଚାନ୍ତେ ।
ପାଶୁପତ ଅକ୍ଷୟ ଯେ ତୂଣ ଭୟେ ଦେଲି
ଶରଣ ପଶିଣ ମୁହିଁ ରକ୍ଷାଗତ ହେଲି ।
ନୀଳେନ୍ଦ୍ରିହରଣେ ମୋତେ ଦେଲେ ଯେ ଅବସ୍ଥା
କହନ୍ତେ ନ ସରଇ ସେ ସମର ବାରତା ।
ଦ୍ୱାରକାରେ ରାମକୃଷ୍ଣ ରଣେ ଜୟ କଲା
ସୁଭଦ୍ରା ଦେବୀକି ବଳେ ଏକା ହରି ନେଲା ।
ଖାଣ୍ଡବ ଦହନ କାଳେ ଇନ୍ଦ୍ରର ବିବାଦେ
ତେତିଶକୋଟି ଦେବତା ନ ପାରିଲେ ଯୁଦ୍ଧେ ।
କରତା ଜଗଜ୍ଜେଠି ସେ ପାର୍ଥ ମହାଯୋଦ୍ଧୀ
ଅଗ୍ନିଙ୍କର ଭଲକଲା ଲୁଦୁବୁଦୁ ବ୍ୟାଧି ।
ରାଜସୂୟ ଯଜ୍ଞକାଳେ ଗଲା ସେ ପାତାଳେ
ନବଦ୍ୱୀପା ପୃଥ୍ୱୀ ଧରେ ତାର ଧନୁହୁଳେ ।
ମୁହଁ ତାକୁ ସରିସମ ନ ହୋଇଲି ରଣେ
ତୁ ଜିଣିବୁ ବର ମାଗୁ କେବଣ କାରଣେ ।
ବରମାଗୁ ପାଣ୍ଡବଙ୍କୁ ରଣେ ଜିଣିବାକୁ
ସମରେ ଜିଣିବୁ ଆନ ସେ ଚାରି ଭାଇଙ୍କୁ ।
ଅର୍ଜ୍ଜୁନ ରଖେ ବୋଲିଣ ଡାକିବ ଯେ ଯୋଧୀ
ତାକୁ ମାଇଲେ ଏ ବର ନ ହୋଇବ ସିଦ୍ଧି ।
ପିନାକ ସମାନ ଏକ ଧନୁ ତାକୁ ଦେଲେ
ନୃପତିଙ୍କୁ ଜିଣ ବୋଲି ଶଙ୍କର ବୋଇଲେ ।
ପ୍ରଥମଯୁଦ୍ଧେ ଆମ୍ଭର ପୁତ୍ର ଅଭିମନ୍ୟୁ
ଆପେ ଛେଦନ କରିଲା ଏହା କର ଧନୁ ।

ସେ ଧନୁ ଧରନ୍ତା ଯେବେ ଜୟଦ୍ରଥ ହାତେ
ଅଦ୍ୟାପି ଆମ୍ଭେ ସରବେ ନ ଥାନ୍ତୁ ଜୀବିତେ
ଏବେ ଆଣିଲା ସେ ଧନୁ ପିନାକର ସମ
ତାକୁ ରଣେ ଜିଣିବାକୁ ହୋଇଲୁ ଅକ୍ଷମ ।
ତ୍ରିଶୂଳ ଖଟ୍ୱାଙ୍ଗ ଆଉ କାଳାନଳ ବାଣ
ଏହା ଥିଲେ ଅଭିମନ୍ୟୁ ନ ଜିଣନ୍ତା ରଣ ।
ସହଦେବଠାରୁ ଶୁଣି ବୀର ଭୀମସେନ
ଯୁଦ୍ଧ ନ କରି ରହିଲା ହୋଇଣ ମଉନ ।
ଜୟ ଜୟ ଜଗନ୍ନାଥ ଅନାଦି ପୁରୁଷ
ଅନନ୍ତ ରୂପେ ପୃଥିବୀ କରିଛ ପ୍ରକାଶ ।
ଏଥିକି ଅନନ୍ତ ନାମ ଜଗତରେ ଖ୍ୟାତ
ଜୟ ନୀଳାଦ୍ରି ବିହାରୀ ଅନାଦି ଅଚ୍ୟୁତ ।
ମୁହିଁ ଛାର କି କହିବି ତୁମ୍ଭ ଯେଉଁ ଯଶ
ଚନ୍ଦ୍ର ସୂର୍ଯ୍ୟ ଗ୍ରହ ତାରା କରନ୍ତି ପ୍ରକାଶ ।
ଚଉଦ ବ୍ରହ୍ମାଣ୍ଡ ମଧ୍ୟେ ଯେତେ ଜୀବାଜୀବ
ସବୁରି ଗୁହାରି ପ୍ରଭୁ ବୁଝିଅଛ ସର୍ବ ।
ତୁମ୍ଭ ସୃଷ୍ଟିରୁ ମୁହିଁ କି ଅଟଇ ବାହାର
ତେଣୁ ଶୁଣା ଯାଉନାହିଁ ଗୁହାରି ମୋହର ।
ପାପୀ ପର ପୀଡ଼ନରେ ହେଉଛି ଅଥୟ
କ୍ଷଣେ ଶାନ୍ତି ନ ମିଳଇ ଆହେ ଦୟାମୟ ।
ନିଷ୍କଳରେ ତୁମ୍ଭ ନାମ କରିବାକୁ ଧ୍ୟାନ
ନାହିଁ ଅବକାଶ କ୍ରମେ ଆସୁଛି ଶମନ ।
କି ବୁଦ୍ଧି କରିବି ପ୍ରଭୁ ନ ସ୍ଫୁରଇ କିଛି
ଶାରଳା ଦାସ ତୁମ୍ଭର ଆଶ୍ରୟେ ଅଛି ।



## ଅଭିମନ୍ୟୁର ଏକାଦଶଦ୍ୱାର ଭେଦ ଓ ଅଭିମନ୍ୟୁ ବଧ

ପଚାରନ୍ତି ଅଗସ୍ତିଙ୍କୁ ମନୁ ନୃପରାୟ
ପୁଣି କେଉଁ କୃତ୍ୟ ହେଲା କହ ମହାଶୟ ।
ସେହି କଥା ଶୁଣିବାକୁ ମୋହର ମାନସ
କହନ୍ତି ଅଗସ୍ତି ମୁନି ଶୁଣ ହେ ନରେଶ ।
ଏଥୁଅନ୍ତେ ଶୁଣ ଜଳଧର ବ୍ୟୂହ କଥା
ଚାରଦେଲେ ପାଣ୍ଡବଙ୍କୁ ଆଣିଣ ବାରତା ।
ସ୍ୱାମୀ ଅବଧାନ କର ଦେବ ଯୁଧିଷ୍ଠିର
ଜିଣିଲେ ଅର୍ଜୁନ ଜଳଧର ପଞ୍ଚଦ୍ୱାର ।
ଚୌରାଅଶୀ ଲକ୍ଷ ମ୍ଳେଚ୍ଛ ଯୋଦ୍ଧା ତହିଁ ଥିଲେ
ପଞ୍ଚଘଡ଼ିରେ ଚୌବନ ଲକ୍ଷ ତହିଁ ମଲେ ।
ରାତ୍ରଦିନ ଲାଗଅଛି ସେଠାରେ ସଂଗ୍ରାମ
ସଦା ଲାଗି ରହିଅଛି ନାହିଁ ଯେ ବିଶ୍ରାମ ।
ମହିଷା ସଙ୍ଗରେ ଥିଲା ଯେହ୍ନେ ରକ୍ତବୀର୍ଯ୍ୟ
ମାଇଲେ ସେ ନ ମରଇ ଦୁର୍ବାର ଦନୁଜ ।
ତାହାର ରୁଧିର ଯାଇ ପଡ଼ିଗଲେ କ୍ଷିତି
ସେହି ରୁଧିରୁ ଦାନବ ହୁଅଇ ଉତ୍ପତ୍ତି ।
ସେହିପରି ପଡ଼େ ଯହିଁ ଏହାଙ୍କ ରୁଧିର
କୋଟି କୋଟି ହୋଇ ଜାତ ହୁଅନ୍ତି ଅସୁର ।
ଏବେ ଆସି ହେଲା ଦେଢ଼ ପ୍ରହର ଯେ ବେଳା
ଆଉ ପାଞ୍ଚଘଡ଼ି ଯୁଦ୍ଧ କରୁଥାଅ ହେଲା ।
ଜଳଧର ବ୍ୟୂହ ଭେଦି ଆସି ଏହି ରାତି
ଚକ୍ରବ୍ୟୂହ ଭେଦିକରି ଜିଣିବେ ସବୁନ୍ତି ।
ଏହା ଶୁଣି ପାଣ୍ଡବ ଯେ ହରଷ ହୋଇଲେ
କେହ୍ନେ ଅଭିମନ୍ୟୁ ବାହୁଡ଼ିବ ବିଚାରିଲେ ।
ଏବେ ଶୁଣ ଜଳଧର ବ୍ୟୂହର ସମର
ବିଶ୍ରାମ ନାହିଁ କିଞ୍ଚିତେ ଉଭୟ ପକ୍ଷର ।
ନବଦ୍ୱାର ଜିଣିଗଲେ କୃଷ୍ଣ ଧନଞ୍ଜୟ
ସେ ଦ୍ୱାର ସମର କଥା ଅଟେ ଅତିଶୟ ।
ବାହାନ୍ତି ଯେ ତୁରଙ୍ଗମ ଦେବକୀର ବଳା
ରୁଧିର ଜଡ଼ିତ ହୋଇ ନ ଦିଶଇ କଳା ।
ରଥ ବାହି ଧନଞ୍ଜୟ ଭିତରକୁ ଗଲେ
ପାଞ୍ଚଲକ୍ଷ ଯୋଦ୍ଧା ଆସି ତାଙ୍କୁ ଓଗାଳିଲେ ।
ଉଷ୍ଟ୍ର ଗର୍ଦ୍ଦଭ ଭଲ୍ଲୁକ ହୋଇଛି ବାହନ
କେହି ବା ବ୍ୟାଘ୍ର ପିଠିରେ କରିଛି ଆସନ ।
କୁଠାର ପର୍ଶୁ କୋଦାଳ ଧରିଛନ୍ତି କରେ
କିଏ ସେ ସାହସୀ ହୋଇ ପଶିବ ସମରେ ।
କଡ଼ା ମରଦଳ ବିଜିଘୋଷ ଯେ ଦାଉଣ୍ଡି
ବାଜେ ଦୈତ୍ୟ ନାଚନ୍ତି ଖେମଟା ନାଟଖଣ୍ଡି ।
ପିଅନ୍ତି ମଦିରା ସର୍ବେ ମଦମତ୍ତେ ଭୋଳ
ଭକ୍ଷନ୍ତି ଆନନ୍ଦେ ଗୋରୁ ମହିଷ ଛାଗଳ ।
ଜାରଣ ମାରଣ କରି କେହି ନ ଜାଣନ୍ତି
ଦନ୍ତେ ରକଟିଣ ହାଡ଼ ମାଂସକୁ ଚୋବାନ୍ତି ।
ଧର୍ମାଧର୍ମ ବୋଲିଯାହା ନ ଜାଣନ୍ତି ବେନି
ଏକ ଯୋଦ୍ଧାକୁ ବିନ୍ଧନ୍ତି ଲକ୍ଷେ ଯୋଦ୍ଧା ଘେନି ।
ଧରଧର ମାର ମାର ଡାକ ଅବିରତ
ପାଦଭାରା ନ ସହଇ ବସୁନ୍ଧରା ମାତ ।
ଏକ ପଡ଼ନ୍ତେ ଆରେକ ଉଠେ ଅବତରି
କିଳିକିଳା ଶବଦରେ କେହି ନୁହେଁ ସରି ।
ଅର୍ଜୁନ ବୋଇଲେ ତୁମ୍ଭେ ଶୁଣ ଭଗବାନ
କାହିଁକି ବ୍ୟାକୁଳ ମୋର ହେଉଅଛି ମନ ।
ସଂଗ୍ରାମରେ ପରାଜୟ ହୋଇବ କି ଆଜ
ଏ ବ୍ୟୂହ କୂଟ ପରାୟେ ଦିଶେ ଦେବରାଜ ।

କାକମାନେ ପୁନଃ ପୁନଃ ଛାଡ଼ନ୍ତି ବୋବାଳି
କାହିଁକି ହେଉଛି ଏହା ନ ପାରେ ମୁଁ ଭାଳି ।
ଶ୍ରୀକୃଷ୍ଣ ବୋଇଲେ ପାର୍ଥ ମଡ଼ାର ଗହନେ
ତେଣୁ ରାବ କରୁଛନ୍ତି ଏହି କାକମାନେ ।
ଏହା କହି ରଥବାହି ନେଲେ ଅତିବେଗେ
ଯୋଦ୍ଧାଙ୍କୁ ମାରିଲେ ପାର୍ଥ ଯେ ପଡ଼ିଲା ଆଗେ
ଶୁଣ ଚଇତନ ଏବେ କୃଷ୍ଣଙ୍କ କପଟ
ଯେତେ ମାଇଲେ ନ ସରେ ଅସୁରଙ୍କ ଥାଟ ।
ହୃଦୟରେ ବିଚାରନ୍ତି ଦେବ ପୀତବାସ
ତେଣେ ଅଭିମନ୍ୟୁ ରଣେ ନୋହିଲେ ବିନାଶ
ଏଣେ ଜଳଧର ବ୍ୟୂହ କ୍ଷୟ ହେବ କାହିଁ
ଯେତେ ମାଇଲେ ଅସୁର ଶେଷ ହେବ ନାହିଁ ।
ଯାହାଙ୍କ ମାୟାକୁ ଜିଣି ନ ପାରନ୍ତି ହର
ସେ ମାୟା ଜାଣିବ କାହିଁ ପାର୍ଥ ଧନୁର୍ଦ୍ଧର ।
ଏହି ମାୟାବଳେ ତହିଁ ହୁଏ ରଣଗୋଳ
ସିନ୍ଧୁ ମନ୍ଥନ ପରାୟେ ଶୁଭଇ ଚହଳ ।
ମନୁ ପଚାରିଲେ ପୁଣି ଅଗସ୍ତି ମୁନିଙ୍କି
ଅଭିମନ୍ୟୁ ଗଲା ତେଣେ କର୍ଣ୍ଣର କତିକି ।
ଯୁଧିଷ୍ଠି ଭୀମ ନକୁଳ ପୁଣି ସହଦେବ
ଏ ଚାରିଙ୍କୁ ଓଗାଳିଲା ସିନ୍ଧୁ ରାଜଦେବ ।
ସେ ତ ନ ଛାଡ଼ିଲା ଏହୁ ନ ପାରିଲେ ଯାଇ
ଯେଣୁ ଶିବଙ୍କଠାରୁ ସେ ବର ଥିଲା ପାଇ ।
ଏକା ଏକାରଥେ ବସି ଗଲା ଅଭିମନ୍ୟୁ
କେମନ୍ତ ହୋଇଲା ଯୁଦ୍ଧ କହ କୁମ୍ଭସୂନୁ ।
କହନ୍ତି ଅଗସ୍ତି ବୈବସ୍ୱତ ମନୁ ଶ୍ରୋତା
ଶୁଣ ଆହେ ମହାରାଜ ଅଭିମନ୍ୟୁ କଥା ।
ସୈନ୍ୟ ମଧ୍ୟେ ଅଭିମନ୍ୟୁ ରଥ ଦେଲା ଚାଳି
ଚନ୍ଦ୍ର କିରଣ ପରାୟେ ଦିଶଇ ଧବଳି ।
ଭୟଙ୍କର ଚକ୍ରବ୍ୟୂହ ଭେଦିଗଲା ପେଲି
ଲେଉଟିବା ଭେଦ ଜାଣି ନ ପାରିଲା ବଳୀ ।
ରଣ ହାନ୍ଦୋଳ ଲଗାଇ ରଥ ଚଳିଯାନ୍ତେ
ଭାଜିଗଲେ ରଥୀମାନେ ତା ଗମନ ପଥେ ।
ଅଭିମନ୍ୟୁକୁ ଦେଖିଣ କୃଷ୍ଣବର୍ଣ୍ଣ କାୟେ
ବିଚାରିଲେ ଧନଞ୍ଜୟ କଲେ କି ବିଜୟେ ।
ପଳାନ୍ତେସୈନ୍ୟ ଗୋଡ଼ାଇ ମାରେ ଅଭିମନ୍ୟୁ
ତୀକ୍ଷ୍ଣ କୋନ୍ତରେ ଛେଦଇ ସବୁଙ୍କରି ଧନୁ ।
ପୁଣି ଜାଣିଲେ ନୁହଇ ଏହୁ ଫାଲଗୁନି
ତହୁଁ ବିନ୍ଧିଲେ ଯୋଦ୍ଧାଏ ଶରମାନ ଘେନି ।
ବେନିକୋଟି ରଥ ରଥୀ ପାଞ୍ଚକୋଟି ହସ୍ତୀ
ନବକୋଟି ତୁରଙ୍ଗମ ସାଗରେ ପଦାତି ।

ଏତେ ସୈନ୍ୟ ଏକକାଳେ ବେଢ଼ିଲେକ ରଥ
ଅନର୍ଯ୍ୟାପ୍ତ ଶରମାନ କରନ୍ତି ଆଘାତ ।
ଅଭିମନ୍ୟୁ ଡାକଦିଏ ଶୁଣ ହେ କେତନ
ସମ୍ଭାଳି ଥା ଅଶ୍ୱଙ୍କୁ ନ କ୍ଷେପନ୍ତୁ ଗଗନ ।
ସାରଥି ବୋଇଲା ଏତ ସମର ଗହନ
ଏଥିରେ ପଶିଲୁ ତୁହି ବାଳୁତ ନନ୍ଦନ ।
ଅଭିମନ୍ୟୁ ବୋଲେ ମୁହିଁ ରଣେ ଜଗଜ୍ଜିତା
ଜାଣୁନାହୁଁ କି ସାରଥି ଅର୍ଜ୍ଜୁନ ମୋ ପିତା ।
ତୁ ବୋଇଲୁ ଏହି ରଣ ଅଗମ୍ୟ ଗହନ
ଏହା ଦହିବାକୁ ମୁହିଁ ଅଟେ ହୁତାଶନ ।
ଦେଖ ମୋହର ପ୍ରତିଜ୍ଞା ଆଉ ରଣ ରଙ୍ଗ
ସମ୍ଭାଳି ରଖ ତୁ ରଥ ଆବର ତୁରଙ୍ଗ ।
ଏହା କହି କ୍ଷିପ୍ରେ କାଣ୍ଡ ବିନ୍ଧେ ଅଭିମନ୍ୟୁ
ଏକ ପ୍ରହାରକେ ଛେଦେ ସବୁଙ୍କରି ଧନୁ ।
ପୁଣହିଁ ହାବୋଡ଼ାଶର ବିନ୍ଧେ ତିନିକୋଟି
ଯୋଦ୍ଧାଙ୍କର ରଥ ଭାଙ୍ଗି ତଳେ ଗଲା ଲୋଟି
ଭାଜି ରଥମାନ ଯହୁଁ ହେଲେ ମସିଗୁଣ୍ଡା
ସମରେ ଧାଏଁ ପାଣ୍ଡବକୁଳ ପୁତ୍ର ଷଣ୍ଢା ।
ଏକମୁଖ ହୋଇକରି ତହୁଁ ସର୍ବ ଯୋଦ୍ଧୀ
ଆକର୍ଣ୍ଣ ପୂରାଇ ଶର ବିନ୍ଧିଲେକ ସନ୍ଧି ।
ଅଭିମନ୍ୟୁ ସେହି ଶର ଦେଖି ଅର୍ଦ୍ଧପଥେ
ଲକ୍ଷେଶର ମାରି ତାହା ଛେଦିଲା କିଞ୍ଚିତେ ।
ଏକ ଏକ ଶରକରେ ପଡ଼େ ଏକ ରଥୀ
ଗଜ ଯୋଦ୍ଧା ପଡ଼ିମଲେ ଲୋଟନ୍ତି ପଦାତି ।
ଜମନିକ ସମନ୍ତିକ ନାମେ ବେନି ରାୟେ
ଏକଲକ୍ଷ ଯୋଦ୍ଧା ଘେନି ସମରେ ବିଜୟେ ।
ଏକ କାଳେ ନବଲକ୍ଷ ଯୋଦ୍ଧା ଘେନି ଧନୁ
ଶତପୁରରେ ବେଢ଼ିଲେ ଯାଇ ଅଭିମନ୍ୟୁ ।
ପଞ୍ଚଶିଖ ନାରାଚକୁ ରାମ ଦେଇଥିଲେ
ତୂଣୀରୁ ଅଭିମନ୍ୟୁ ଯେ ବେଗରେ କାଢ଼ିଲେ ।
ସେ ଶରକୁ କରେ ଧରି ସୁଭଦ୍ରାର ସୂନୁ
ବସାଇଲା ତାହା ନେଇ ଆପଣାର ଧନୁ ।
ନବଲକ୍ଷ ଯୋଦ୍ଧାଙ୍କୁ ଯେ ନବଲକ୍ଷ ବାଣ
ବିନ୍ଧନ୍ତେଣ ଛଇଛାଡ଼ି ଫୁଟି ରାଜାଗଣ ।
ନବଲକ୍ଷ ଯୋଦ୍ଧା ସର୍ବେ ପଡ଼ିଲେକ ଢଳି
ତାଙ୍କ ଉପରେ କେତନ ରଥ ଦେଲା ଚାଳି ।
ସହସ୍ର ପ୍ରମାଣେ ରଥୀ ତିନିସସ୍ର ହସ୍ତୀ
ପଞ୍ଚମସାଗର ତୁରଙ୍ଗ ସାଗରେ ପଦାତି ।
ଏତେକ ମାରିଣ ତହୁଁ ବୋଲେ ଅଭିମନ୍ୟୁ
ଦ୍ୱିତୀୟ ଦ୍ୱାରେ ରହିଛି ସୂର୍ଯ୍ୟଙ୍କର ସୂନୁ ।

କ୍ଷତ୍ରିୟବର ଭାରୋଇମଲ୍ଲ ବୀର କର୍ଣ୍ଣ
ଇନ୍ଦ୍ର ଗୋବିନ୍ଦ ସମରେ ଅଟେ ସେ ଭାଜନ ।
ତାହାର ସମ୍ମୁଖେ ରଥ ଚଳାଅ ତ୍ୱରିତ
ଅର୍ଜ୍ଜୁନ ପ୍ରାୟେ ମଣିଲା ଦିନକର ସୁତ ।
ପୁଣି ବିଚାରିଲା ଏତ ନୁହଇ ଅର୍ଜ୍ଜୁନ
ଶ୍ରୀକୃଷ୍ଣ ସାରଥି କାହିଁ ସେ କପିକେତନ ।
ଏମନ୍ତ ବିଚାରୁଛନ୍ତି କର୍ଣ୍ଣ ମହାରଥୀ
ଏକାଳେ ଧବଳିରଥ ପ୍ରବେଶିଲା କତି ।
ଅଭିମନ୍ୟୁକୁ ଦେଖିଣ କ୍ଷତ୍ରିକୁଳ ଶ୍ରେଷ୍ଠ
ବୋଇଲାରେ ଅଭିମନ୍ୟୁ ଏଡ଼େ ତୁହି ଦୁଷ୍ଟ ।
ଏ ମହାଯୁଦ୍ଧରେ ପଶୁ କି କଥା ତୋହର
ଗୋ ଦ୍ୱିଜ ହେଲେହେଁ ଯହିଁ ଛେଦହୁଏ ଶିର ।
ବାଳବୃଦ୍ଧ ତରୁଣାଦି ସର୍ବେ ମିଶାମିଶି
ଅବଶ୍ୟ ମରଇ ରଣେ ଯେହୁ ଥାଏ ପଶି ।
ଏ ସମୟେ ପଶିଲୁ ତୁ ହୋଇଣ ନିଃଶଙ୍କା
ଅଶୀ ସହସ୍ର ରାଜାଙ୍କୁ ତୁ ବାଳକ ଏକା ।
ଭୀମାର୍ଜ୍ଜୁନ ମାଦ୍ରୀସୁତେ ଆବର ଯୁଧିଷ୍ଠି
ଏମାନଙ୍କଠାରୁ ତୁ କି ଅଟୁରେ ଗରିଷ୍ଠି ।
କେଉଁ ଅଭିମାନୀ ହୋଇ ତୁହି ଆରେ ବାଳ
ମିଛେ କିମ୍ପାଇଁ ସଂଗ୍ରାମେ ପଶିଲୁ ଚଣ୍ଡାଳ ।
କେମନ୍ତେ କୃଷ୍ଣ ତୁମ୍ଭର ଅଟେ ସାହାପକ୍ଷ
ସଙ୍ଗେ ଦେଇ ନାହିଁ ରଥ ରଥୀ ତୋର ପଛ ।
ହସିବା ଖେଳିବା ପ୍ରାୟ ବିଚାରିଲୁ ଅବା
କାହିଁକି ସମରେ ପଶି ଦ୍ରୋହୀ ହେଲୁ ବାବା ।
ପ୍ରଥମ ଦ୍ୱାରରେ ଥିଲେ ରାୟଗୁରୁ ଦ୍ରୋଣେ
ଏ ମହୀମଣ୍ଡଳେ ତାଙ୍କୁ ଜିଣିବ କେ ରଣେ ।
ସେ ଦ୍ୱାରକୁ ଜିଣି ତୁହି ଆସିଲୁ କେମନ୍ତେ
ବାଳକ ବୋଲିଣ ଅବା ଛାଡ଼ିଦେଲେ ତୋତେ
ଦ୍ୱିତୀୟ ଦ୍ୱାରରେ ଥିଲା ସିନ୍ଧୁ ନରପତି
ଦେବ ଦାନବଙ୍କୁ ସେହି ନ କରଇ ଭୀତି ।
ଈଶ୍ୱର ସେବି ପାଇଛି ସେ ପିନାକ ଧନୁ
ତାଙ୍କୁ କେମନ୍ତେ ଜିଣିଲୁ ଆରେ ଅଭିମନ୍ୟୁ ।
ମହାଯୋଦ୍ଧା ହେଲେ ମଧ୍ୟ ଥାଏ ଧର୍ମେ ମତି
ବାଳୁତ ବୋଲିଣ ତୋତେ ଛାଡ଼ିଲା ସେ ରଥୀ
ସମରେ ବାଳୁତ ଯେଣୁ ମାରି ନ ଯୋଗାଇ
ତେଣୁ ଛାଡ଼ିଦେଲା ତୋତେ କିଛି ହିଁ ନ କହି ।
ଅଜ୍ଞାନ ବାଳକ ହୋଇ ସମରକୁ ଆଶ
ହାରିଲେ ଜିଣିଲେ ତୋତେ ହେବ କେଉଁ ଯଶ
ତୁହି ଏକା ଜଣେ ସିନା ପାଣ୍ଡବ କୁଳକୁ
ଆଶ୍ରା କରିଛନ୍ତି ସିନା ତୋହର ବାହାକୁ ।
ବାବୁ ତୋର ସଂକଳ୍ପକୁ ସବୁଙ୍କରି ଆଶ
କେଉଁ ଅବିଗୁଣେ ତୁହି ରଣେ ଦେଉ ଝାସ ।
କୌରବକୁଳ ରକ୍ଷକ ଲକ୍ଷ୍ମଣ କୁମର
ପାଣ୍ଡବକୁଳକୁ ତୁହି ଅଟୁ ସେ ପ୍ରକାର ।
ଏଡ଼େ ବଡ଼ କୁଳକୁରେ ଅଛ ପୁତ୍ର ବେନି
ଜୀଇଁ ରହିଥାଅ ବାବୁ ଦୀର୍ଘଆୟୁ ଘେନି ।
ଛାଡ଼ ମନୁ ବଇରାଗ ବାହୁଡ଼ରେ ବାଳ
ଶଲ୍ୟ ଭୂରିଶ୍ରବା ତୋତେ ଦେବେ ଯମଆଳ
ମୋହର ବୋଲକୁ ବାବୁ ଦୃଢ଼କରିଜାଣ
ଏହିଠାରୁ ବାହୁଡ଼ି ତୁ ଯାଅରେ ନନ୍ଦନ ।
ତୋତେ ପଠାଇଲା ପିତା ଅର୍ଜିଣ ବିବାଦ
ଧିକ ତୋର ରାଜ୍ୟ ଆଶା ଧିକ ତା ସମ୍ପଦ ।
ଯେବଣ ପ୍ରାଣୀ ବାବୁରେ ବିବାଦେ ପଶିଲା
ଜୀଇଁ ଥାଉଁ ଥାଉଁ ଜାଣ ସେହୁ ହାଦେ ମଲା ।
ଅଳମ୍ବୁଷ ବୋଲି ବାବୁ ଯେବଣ ରାକ୍ଷସ
ଦେଖିଲା ମାତ୍ରକେ ମାରି ଭକ୍ଷିବ ତୋ ମାଂସ
ସଖା କେହି ସଙ୍ଗତରେ ନାହିଁ ଆରେ ଶିଶୁ
ଜାଣୁ ଜାଣୁ ଅନଳରେ କିମ୍ପା ଆସି ପଶୁ ।
ମୁହିଁ ତୋହର ଆପଦ ଘେନେ ଆରେ ବାଳ
କେମନ୍ତେ ଦେଖିବି ମୁହିଁ ଥାଇ ତୋର କାଳ ।
ସମରେ ପଶିଲେ ତାକୁ ଅବଶ୍ୟ ଯେ ମାରି
ଧର୍ମ ଅଧର୍ମ ବାବୁରେ କିଛି ନ ବିଚାରି ।
ମତ୍ତଗର୍ବେ ରଣେ ପଶି ହରାଇବୁ କାର୍ଯ୍ୟ
ବାହୁଡ଼ି ଯାଅରେ ବାବୁ ନ କର ତୁ ଲାଜ ।
ମାତା ପିତାଙ୍କ ଆଗରେ ପୁତ୍ରଙ୍କ ଝିଙ୍ଗାସ
କେମନ୍ତେ ଦେଖିବି ମୁହିଁ ତୋହର ବିନାଶ ।
ଦୁଇ ମାଦ୍ରୀସୁତ ଭୀମ କୃଷ୍ଣ ଅରଜୁନ
ଏଥୁ ପଳାଇ ଯାଆନ୍ତି ଘେନିଣ ଜୀବନ ।
ଏତେଦୂର ଯାଏ ଯେବେ ସେମାନେ ଆସନ୍ତେ
ତାଙ୍କ ଶିର ଛେଦିଦ୍ୟନ୍ତି ତୋହର ଦେଖନ୍ତେ ।
ଗୁରୁଜନଙ୍କ ଝିଙ୍ଗାସ ଶୁଣି ଅଭିମନ୍ୟୁ
ଗୁଣକୁ ଟଙ୍କାର କରି ଆମଞ୍ଚିଲା ଧନୁ ।
କୋପେ ପ୍ରତ୍ୟୁତ୍ତର ଦିଏ ସୁଭଦ୍ରାନନ୍ଦନ
ମିଛେହେଁ କେତେ ପ୍ରତିଜ୍ଞା କରୁଛ ହେ କର୍ଣ୍ଣ ।
ଭୀଷ୍ମ ଏମନ୍ତ ପ୍ରତିଜ୍ଞା କେତେ କରିଥିଲା
ରଣଯଜ୍ଞ କରି ସେହୁ ଶରଶଯ୍ୟା କଲା ।
ଏବେ ତୁମ୍ଭ ଦ୍ରୋଣଗୁରୁ ବାନ୍ଧିଲେ ମୁକୁଟ
ତାଙ୍କ ଦେଖନ୍ତେ ମାଇଲି ମୁହିଁ କେତେ ଥାଟ ।
ସେହୁ ଦ୍ୱାର ଛାଡ଼ି ଯେବେ ନ ଯାନ୍ତେ ପଳାଇ
ନିଶ୍ଚେଁ ମାରିଥାନ୍ତି ଆଜି ତାହାଙ୍କୁ ଗୋଡ଼ାଇ ।

ଜୟଦ୍ରଥକୁ ଈଶ୍ୱର ଯେବେ ଦେଲେ ଧନୁ
ତାହାର ଥାଟ ମଛିଲା ଏହି ଅଭିମନ୍ୟୁ ।
ଏବେହେଁ ଭୋ ନାଥ ବୁଝ ଦେଖନ୍ତେ ତୁମ୍ଭର
ନବସହସ୍ର ଯୋଦ୍ଧାଙ୍କୁ କରିଲି ସଂହାର ।
ତୁମ୍ଭ ବୀରପଣ ସବୁ ଜାଣିଅଛି ମୁହିଁ
ମୋହ ଆଗେ ତୁମ୍ଭେ ଆଉ ନ କର ବଡ଼ାଇ ।
ଅର୍ଜ୍ଜୁନ ଥାଆନ୍ତେ ଏଡ଼େ ଗର୍ବ କରିଥାନ୍ତ
କେବଣ ପ୍ରତ୍ୟକ୍ଷେ ତୁମ୍ଭେ ଛାମୁରେ ରହନ୍ତ ।
ପାଞ୍ଚାଳଦେଶେ ଦ୍ରୁପଦ ନୃପତିଙ୍କ ଘରେ
ଧନୁ ଆମଞ୍ଚି ନପାରି ପଟାର ଉପରେ ।
ଭୀଷ୍ମ ଦ୍ରୋଣ କୃପ ତୁମ୍ଭେ ଭୂରିଶ୍ରବା ତୁଲେ
ଲାଖ ନ ବିନ୍ଧି ଲାଜରେ ବସିଲ ସକଳେ ।
ମୋ ପିତା ଲାଖ ବିନ୍ଧିଲେ ଯାଇ ଯେତେବେଳେ
ପରଶ୍ରୀ ନ ଦେଖି ତୁମ୍ଭେ ମାତି ରଣଗୋଳେ ।
ଲକ୍ଷେ ନୃପତିଙ୍କୁ ଘେନି କଲ ବହୁ ରଣ
କେତେ ଶାସ୍ତି ତୁମ୍ଭଙ୍କୁ ନ ଦେଲେ ଯେ ଅର୍ଜ୍ଜୁନ ।
ଭୀମ ତୁମ୍ଭଙ୍କୁ ରଥରୁ ଘୋଷାରି ଆଣିଲେ
ଜାନୁ ତଳେ ଗଳାଇଣ ଛାଡ଼ି ଦେଇଥିଲେ ।
ଘୋଷଯାତ୍ରା କରି ଗଲ କାମ୍ୟକ କାନନ
ସମ୍ପଦ ଦେଖାଇବାକୁ ଗର୍ବକରି ମନ ।
ଏକରଥେ ଆସି ଚିତ୍ରସେନ ବିଦ୍ୟାଧର
ଦୁର୍ଯ୍ୟୋଧନ କେଶ ଧରି ବାନ୍ଧିଲା ରଥର ।
ରାଜାର ମଇତ୍ର ବୋଲି ଭଣ୍ଡାଇଣ ଖାଅ
ବିପଦବେଳେ ରାଜାଙ୍କୁ ଛାଡ଼ିଣ ପଳାଅ ।
ଚିତ୍ରସେନ ଗନ୍ଧର୍ବକୁ ପିତା କୋପକଲା
ଭୟେ ଦୁର୍ଯ୍ୟୋଧନଙ୍କୁ ସେ ଆକାଶୁ ଛାଡ଼ିଲା ।
ଶରରେ ପଥ ବାନ୍ଧିଣ ପିତା ଫାଲଗୁନି
ଯୁଧିଷ୍ଠିଙ୍କ ପାଦତଳେ ପକାଇଲେ ଆଣି ।
ନିର୍ଲ୍ଲଜ ଆତ୍ମା ଘେନିଣ ତୁମ୍ଭେ ଅଛ ବର୍ତ୍ତି
ସେବେଳେ ପଳାଇଗଲପାଇ ବହୁ ଶାସ୍ତି ।
ସୁଭଦ୍ରା ବିଭାକୁ ଗଲ ବଳରାମ ବୋଲେ
ଏକା ଅର୍ଜ୍ଜୁନ ତୁମ୍ଭଙ୍କୁ କି ଶାସ୍ତି ନ ଦେଲେ ।
ବିରାଟ ରାଜ୍ୟକୁ ଗଲ ଗୋଧନ ହରଣେ
ସବୁଙ୍କୁ ମୋହ କରିଲେ ପୁଣି ଅରଜୁନେ ।
ସବୁରି ଶିରୁ କାଢ଼ିଲେ ମୁକୁଟ ଶ୍ରୀଭୂଷା
ନିର୍ଲ୍ଲଜ୍ଜ ଆତ୍ମାକୁ ପୁଣି ତୁମ୍ଭେ କଲ ଆଶା ।
ଚନ୍ଦ୍ରାବତୀକି ହରିଣ ଯେ ଶାମ୍ବକୁମର
ତାହାପାଇଁ ତୁମ୍ଭେ କେତେ ନକଲ ସମର ।
ଏକା ମୋ ପିତା ସେବେଳେ ଯା କରିଛି ଜାଣ
ଭୂରିଶ୍ରବା ଭୀଷ୍ମ ସହ ତୁମ୍ଭେ କଲ ରଣ ।
ପାଣ୍ଡବେ ଶର ମାରିଣ କଲେ ଖଣ୍ଡ ଖଣ୍ଡ
ନାଶ ନ କରି ମୁଣ୍ଡିଲେ ସବୁଙ୍କରି ମୁଣ୍ଡ ।
ନୀଳେନ୍ଦ୍ରୀ ହରଣେ ଲଭିଅଛ ଯେ ଅବସ୍ଥା
କହିଲେ ନ ସରେ ତୁମ୍ଭମାନଙ୍କର କଥା ।
ତୁମ୍ଭେ କର୍ଣ୍ଣ କେତେ ମୋତେ କରୁଅଛ ସାନ
ମୋର ପିତା ନୁହନ୍ତି କି ପାଣ୍ଡବ ଅର୍ଜ୍ଜୁନ ।
ହରି ବଳରାମ ମୋର ସୋଦର ମଉଳା
ପୂର୍ଣ୍ଣ ଶରବିନ୍ଦୁ ମୁଖ କି ସୁନ୍ଦର କଳା ।
ଅର୍ଜ୍ଜୁନଙ୍କ ସମାନ ଯେ ଅଟେ ମୋର ବଳ
ମୋ ହାତେ ନିଧନ ହେବେ କଉରବ ବଳ ।
କ୍ଷତ୍ରୀପୁତ୍ର ହୋଇ ସିନା ବିଦ୍ୟାଗୁଣ ଥିଲେ
ସାନବଡ଼ ଜଣାଯିବ ସମରେ ପଶିଲେ ।
କିଞ୍ଚିତ ଅଗ୍ନି ସଂସାର ପୁଣ ଦହିପାରେ
ଭକ୍ଷିଲେ ବିଷକୁ ରେଣୁସମ ପ୍ରାଣୀ ମରେ ।
ବାସୁଦେବ ସାନ ଜନ୍ମ ଦେବକୀର କୋଳେ
ଅଷ୍ଟମଲ୍ଲ ମାଇଲେ ସେ ଖେଳ କୁତୂହଳେ ।
ସାନ ବୋଲିଣ ନ ବୋଲ ଦେଖ ଯୁଦ୍ଧ ମୋର
ଗରୁଡ଼ ଯେ ଏକା ଜାଣ ହୋଇ ଅବତାର ।
ନାଗବଳ ନିସୂଦନ କଲା ଏକା ହୋଇ
ଆହେ କର୍ଣ୍ଣ ମୁଁ ଗରୁଡ଼ ତୁମ୍ଭେ ଜାଣ ଅହି ।
କେ ଆଜି ଜିଣିବ ରଣେ ସାକ୍ଷାତରେ ଦେଖ
ସାନବଡ଼ ଜଣାଯିବ ଦେଖିଲେ ପ୍ରତ୍ୟକ୍ଷ ।
ଏକତ୍ରେ ଆସନ୍ତି ଯେବେ ଇନ୍ଦୁରରୁ ପଲେ
ସେହି ଯୁଝି ପାରିବେ କି ମାର୍ଜାରର ତୁଲେ
ତୁମ୍ଭେ ତ ସେହି ଇନ୍ଦୁର ମୁଁ ଅଟେ ମାର୍ଜାର
ପିମ୍ପୁଡ଼ିକି ମରଦନ୍ତି ଯେସନେ ପାଦର ।
ଅଗସ୍ତି ଗଣ୍ଡୁଷକରେ ସିନ୍ଧୁ କଲେ ପାନ
ଆହେ କର୍ଣ୍ଣ ତୁମ୍ଭେ ହେଲ ସାଗର ସମାନ ।
ତୁମ୍ଭେ ସେ ସାଗର ମୁହିଁ ଅଟଇ ଅଗସ୍ତି
ନିମିଷକେ ଗଣ୍ଡୁଷେ ମୁଁ ପିଇବି ସବୁନ୍ତି ।
ଆହେକର୍ଣ୍ଣ ତୁମ୍ଭେ ଅଛ ଯେତେ କୁରୁବଳ .
ମୁଁ ବଡ଼ବା ଅଗ୍ନି ଜାଣ ଦହିବି ସକଳ ।
ତୁମ୍ଭେ କର୍ଣ୍ଣ ଆଜି ନିଶ୍ଚେଁ ହରାଇବ ବୁଦ୍ଧି
କୋଇନ୍ତା ବାକ୍ୟ ନ କରି ହରାଇଲ ନିଧି ।
ଏତେବେଳେ ହୋଇଥାନ୍ତ ପାଣ୍ଡବଙ୍କ ଜ୍ୟେଷ୍ଠ
ଲକ୍ଷେ ରାଜାଙ୍କ ଉପରେ ହୋଇଥାନ୍ତ ଶ୍ରେଷ୍ଠ ।
ଭୀଷ୍ମ ପଡ଼ିଲେ ନିକଟେ ହାରିଲେଣି ଦ୍ରୋଣ
ପଥ ନ ଛାଡ଼ିଲେ ତବ ପ୍ରାଣ ଅକାରଣ ।
ତୁମ୍ଭେ ମୋର ଜ୍ୟେଷ୍ଠ ତାତ ବୋଲିଣ ଶୁଣିଲି
ଗୁରୁବୋଲି ଏତେବେଳଯାଏ ମୁଁ ସହିଲି ।

ଯଦ୍ୟପି ପର୍ବତ ଅଟେ ଅତ୍ୟନ୍ତ କଠିନ
ବଜ୍ର ତାହାକୁ କି କରି ନ ପାରଇ ଚୂର୍ଣ୍ଣ ।
ସେପରି ମୋ ଶର ବଜ୍ର ତୁମ୍ଭେ ପରବତ
ବିନ୍ଧିଣ ତୁମ୍ଭମାନଙ୍କୁ କରିବି ନିପାତ ।
ଆହେ କର୍ଣ୍ଣ ତୁମ୍ଭେ ମୋତେ ମଣ ସାନବୋଲି
ମାତ୍ର କ୍ଷତ୍ରିୟ ପଣରେ ଦେଖ ମେରୁ ବୋଲି ।
ଅଭିମନ୍ୟୁ ବାକ୍ୟେ କର୍ଣ୍ଣ ଅତ୍ୟନ୍ତ କୋପିଲା
ବାହାନାଦ କରିଣ ସେ ଧନୁ ଆମଞ୍ଚିଲା ।
ଆକର୍ଷିଲା ଚାହିଁଲା ପୁଣି ନାରାଚ ପୂରାଇ
ବୋଲେ ତୋତେ ମାଇଲେରେ ପୌରୁଷତ ନାହିଁ
ମହାକୋପରେ ରାଧେୟ ଶର କଲା ବୃଷ୍ଟି
ଏକାଥରକେ ନାରାଚ ବିନ୍ଧେ ଚଉଷଠି ।
ପଞ୍ଚ ଲୁହାଶର ବିନ୍ଧି ସୁଭଦ୍ରା ନନ୍ଦନ
ସମସ୍ତ ନାରାଚ ତାର ଛେଦିଲା ବହନ ।
ବାଣାଘାତେ କର୍ଣ୍ଣବୀର କୋପେ ପ୍ରଜ୍ୱଳିତ
କ୍ରୋଧରେ ବିନ୍ଧିଲା ଆର୍ଦ୍ରାବଳି ଯେ ନାରାଚ ।
ପାଞ୍ଚଶତ ଶର ବିନ୍ଧି ଅର୍ଜ୍ଜୁନ କୁମର
କର୍ଣ୍ଣର ନାରାଚମାନ କଲା ନାରଖାର ।
ପୁଣି ରାଧେୟ ସହସ୍ର ନାରାଚ ପୂରାଇ
ସକଳ ବିନ୍ଧିଲା ଅତି କୋପଭର ହୋଇ ।
ସେ ଶର ଆସିବା ଅଭିମନ୍ୟୁ ଯେ ଦେଖିଲା
ନିଜେ ପ୍ରତିଶର କରି ତା ସର୍ବ ଛେଦିଲା ।
ତାହା ଦେଖିକରି କର୍ଣ୍ଣ ହୋଇ କ୍ରୋଧଭର
ଶରେକ ମାରି ସମସ୍ତ କଲା ଅନ୍ଧକାର ।
କିରଣ ଶରକେ ମାରି ଅର୍ଜ୍ଜୁନ କୁମର
କର୍ଣ୍ଣ ଅନ୍ଧକାର ଶର କରିଦେଲା ଦୂର ।
ସମର ବିଅର୍ଥ ଦେଖି କର୍ଣ୍ଣ ମହାରଥୀ
ପରିଘ ନାରାଚ ଘେନି ବିନ୍ଧିଲା ତଡ଼ତି ।
କୋପେ ଅଭିମନ୍ୟୁ ତୀକ୍ଷ୍ଣ ବାଣେକ ମାଇଲା
ନାରାଚ ଛେଦି କର୍ଣ୍ଣର ସେହ୍ନାକୁ ଭେଦିଲା ।
ଯେସନେ ଯାଇ ବିବରେ ପଶେ କାଳସର୍ପ
ସେରୂପେ ତା ଦେହେ ପଶି ଭାଙ୍ଗିଲା ତା ଦର୍ପ
ସାଷ୍ଟାମ ହୋଇଣ କର୍ଣ୍ଣ ଧନୁଶର ଧରି
ତିରିଶ ବାଣ ବିନ୍ଧିଲା ଅତି କୋପକରି ।
ପଚାଶ ବାଣ ବିନ୍ଧିଲା କୋପେ ଅଭିମନ୍ୟୁ
ତତକ୍ଷଣେ କର୍ଣ୍ଣର ସେ ଛେଦିଲାକ ଧନୁ ।
ପୁଣି ଶତେବାଣ କୋପେ ତାହାକୁ ପ୍ରହାରି
ହୟ ସାରଥି ରଥକୁ ଛେଦିଲା ତାହାରି ।
ବିରଥ ହୋଇଲା ସେହି ରାଧେୟର ସୁତ
ପୁନଶ୍ଚ ଚଢ଼ିଲା ଯାଇ ଗଜ ମଦମତ୍ତ ।
ବାଛି ବାଛି ଜ୍ୱାଳାବଳି ବାଣ ରୋଷଭରେ
ସହସ୍ରେକ ବିନ୍ଧିଲା ସେ ଅଭିମନ୍ୟୁ ପରେ ।
ସୁଭଦ୍ରା ନନ୍ଦନ ସେହି ଶର ଆସୁ ଜାଣି
କର୍ଣ୍ଣର ସେ ଶର ସବୁ ପକାଇଲେ ହାଣି ।
ହାବୋଡ଼ା ଶର ବିନ୍ଧିଣ ପୁଣି ଅଭିମନ୍ୟୁ
ଗଜ କନ୍ଧୁ ଖସି ତଳେ ପଡ଼େ ସୂର୍ଯ୍ୟସୂନୁ ।
ଧରାରେ ଭାରୋଇଭଲ୍ଲ ପଡ଼ିଗଲା ଯାଇ
ଦେଖି ଅଭିମନ୍ୟୁ ଜୟ ଶଙ୍ଖଶବ୍ଦ ତହିଁ ।
ଆକାଶକୁ ଶୁଭିଲା ଯେ ଶଙ୍ଖର ଯେ ଧ୍ୱନି
ଜଳଧର ବ୍ୟୂହେ ତାହା ଶୁଣି ଚକ୍ରପାଣି ।
ହୃଦ ମଧ୍ୟରେ ଚିନ୍ତିତ ହେଲେ ଦେବରାଜ
ସମରରେ ଅଭିମନ୍ୟୁ ନାଶଯିବ ଆଜ ।
ଏହି ଦୁଃଖ ମନମଧ୍ୟୁ ନ ହୋଇଲା ଦୂର
ପାଞ୍ଚଜନ୍ୟ ଶଙ୍ଖ ଶବ୍ଦ କଲେ ଚକ୍ରଧର ।
ବାହିଲେକ ତୁରଙ୍ଗମ ଦେବ ଦଇତ୍ୟାରି
ଯାହାର କୂଟ କପଟ କହିଲେ ନ ସରି ।
ମାୟାରେ କରିଥିବାରୁ ମୋହ ଜନାର୍ଦ୍ଦନ
ଜ୍ଞାନହୀନେ ମହାରଣେ କଲେକ ଅର୍ଜ୍ଜୁନ ।
କର୍ଣ୍ଣ ମୋହ ହେବା ଦେଖି ସୁଭଦ୍ରାର ବଳା
ସାରଥିକି ବୋଲେ ମୋର ରଥ ବେଗେଚଳା
କର୍ଣ୍ଣବୀର ପଡ଼ିଅଛି ଚେତନା ହଜାଇ
ଶୂନ୍ୟମାର୍ଗେ ସେ ସାରଥି ରଥ ନେଲା ବାହି ।
ତୃତୀୟ ଦ୍ୱାର ଜିଣିଣ ଅଭିମନ୍ୟୁ ରଥ
ଚତୁର୍ଥଦ୍ୱାରେ ମିଳିଲା ଯାଇ ସେ ତ୍ୱରିତ ।
ରଥ ଗଜ ଅଶ୍ୱ ସେନା ଅତ୍ୟନ୍ତ ଗହଳ
ସମୁଦ୍ର ମନ୍ଥନ ପରି ଶୁଭଇ ଚହଳ ।
ପାଞ୍ଚକୋଟି ଯୋଦ୍ଧା ତୁଲେ ରାୟ ଗୁରୁ ଶଲ୍ୟ
ଦ୍ୱାର ରୋଧିଲା ଭରତକୁଳ ମହାମଲ୍ଲ ।
ଏହା ଦେଖି କୁମରର ନ ସ୍ଫୁରଇ କିଛି
ଗୋଟିଏ ମାତ୍ର ସାରଥି ସଖା ହୋଇଅଛି ।
ଦେଖିଲା ଦ୍ୱାରେ ପଚାଶକୋଟି ଛନ୍ତି ରଥୀ
ଏକମୁଖ ହୋଇ ସର୍ବେ ନାରାଚ ବିନ୍ଧନ୍ତି ।
ବରଷା କାଳରେ ଯେହ୍ନେ ବରଷଇ ନୀର
ସେହିପରି ରଥୀମାନେ ବରଷନ୍ତି ଶର ।
କରକା ଗହଳେ ଯେହ୍ନେ ପଡ଼େ ନିରନ୍ତର
ତହୁଁ ବଳି ଶତେ ଗୁଣ ପଡୁଅଛି ଶର ।
ନାରାଚ ଆସିବା ଦେଖି ବୀର ଅଭିମନ୍ୟୁ
ସାରଥିକୁ କହି କରେ ଧଇଲାକ ଧନୁ ।
ଧନୁରେ ଆରଦ୍ରାବଳି ନାରାଚ ପୂରାଇ
ବିନ୍ଧିବାରୁ ଅସ୍ତ୍ର ସବୁ ଦେଲାକ ଉଡ଼ାଇ ।

ସାରଥିକି ବୋଇଲା ସେ ସମ୍ଭାଳ ମୋ ରଥ
ଦୁଃସହ ସଂଗ୍ରାମ ହୋଇବ ଯେ ଅପ୍ରମିତ ।
ସାରଥି ବୋଇଲା ଏତ ଅଗୋଚର ଥାଟ
ଦିବସ ଅନ୍ଧାର ମୋତେ ନ ଦିଶଇ ବାଟ ।
ସମ୍ଭାଳିଣ ଯୁଦ୍ଧକର ତୁମ୍ଭେ ବାଳବସ୍ତି
ଗଗନପଥେ ରଥ ମୁଁ ଘୁଞ୍ଚାଇ ନେଉଛି ।
ଅଭିମନ୍ୟୁ ବୋଇଲା ଯା ନୁହଇ ଉଚିତ
କ୍ଷତ୍ରୀକୁଳେ ଜନ୍ମି ଏହା ଉଚିତ କେମନ୍ତ ।
ଅଶ୍ୱକୁ ସମ୍ଭାଳି ମୋର ରଥ ବେଗେ ବାହା
ମୁହିଁ ମହାକ୍ଷତ୍ରି ମୋତେ ନ କହ ତୁ ଏହା ।
ଏପରି ନିଷ୍ଠୁର ବାକ୍ୟ ଶୁଣିଣ ସାରଥି
ବାହିଲା ଆକାଶେ ରଥ ଯେହ୍ନେ ସୁରପତି ।
ଏହା ଦେଖି କୃପାଚାର୍ଯ୍ୟ ଶଲ୍ୟଙ୍କୁ ପଚାରି
ଦେଖିଲତ ଅପୂରୁବ ଯୁଦ୍ଧ ଯେ ଏହାରି ।
ଇନ୍ଦ୍ର ଗୋବିନ୍ଦ କୁବେର ଅବା ଚିତ୍ରସେନ
ଆକାଶୁ ଖସଇ ରଥ ପୁଷ୍ପକ ସମାନ ।
ଶଲ୍ୟ ବୋଇଲେ ନୁହନ୍ତି ଏତ ଦେବଗଣ
କୁରୁକ୍ଷେତ୍ର ଯୁଦ୍ଧେ ତାଙ୍କ କିସ ପ୍ରୟୋଜନ ।
କୃଷ୍ଣ କିବା ଅର୍ଜୁନ ଏ ନୁହଇଟି ଜାଣ
ନୁହେଁ ନନ୍ଦିଘୋଷ ନାହିଁ ଯେ କପିକେତନ ।
ନାରାଚ ବିନ୍ଧଇ ଏହୁ ଉପ୍ରୋଧକୁ ହୁଡ଼ି
ବେଗ ବେଗ ହୋଇ ରଥ ଆସୁଅଛି ମାଡ଼ି ।
ଏମନ୍ତ ବିଚାର କରୁ ସେ ଧବଳି ରଥ
ଶଲ୍ୟଙ୍କ ସନ୍ନିଧେ ଯାଇ ହେଲା ଉପଗତ ।
ଶ୍ରୀକରେ ଯେ ଧନୁ ତାର ନଉସସ୍ର ବଳ
ରଣନାଦେ ଆକାଶରେ କମ୍ପେ ଆଖଣ୍ଡଳ ।
ନାରାଚ ବିନ୍ଧଇ କରି ଅଣଉପରୋଧ
ପର୍ବତ ଭେଦଇ ଯେଉଁ ଶର ହେଲେ ବିଦ୍ଧ ।
ହୟ ଗଜ ରଥୀ ରଥ ପଦାତି ସହିତେ
ସମସ୍ତେ କ୍ଷତ ହୁଅନ୍ତି ନାରାଚ ପଡ଼ନ୍ତେ ।
ଯୋଦ୍ଧାଏ ଅନେକ ବାଣ ବିନ୍ଧନ୍ତି ତାହାକୁ
ନାରାଚ ନ ଭେଦଇ ସେ ରଥ ଧବଳକୁ ।
କେତନ ନାମେ ବସିଛି ଯେବଣ ସାରଥି
କ୍ଷଣେ ରଥ ଶୂନ୍ୟେ କରେ କ୍ଷଣେ ଭୂମିଗତି ।
ସ୍ଫଟିକ ରଥରେ ନାନା ରତ୍ନ ଅଛି ଜଡ଼ି
ଚୂର୍ଣ୍ଣହୁଏ ବଜ୍ରଶକ୍ତି ତହିଁରେ ଯେ ପଡ଼ି ।
ଏକା ପ୍ରହାରକେ ଫୁଟେ ଦଶବିଂଶ ରଥୀ
ଅନିର୍ବାର ଶର ତାର ବୃଥା ନ ହୁଅନ୍ତି ।
ସତ୍ୟବାର ବୋଲିକରି ତହିଁ ଏକ ରାୟେ
ତାର ତୁଳେ ପାରିଦଣ୍ଡ ବିଂଶୋତ୍ତର ଶଏ
ଗୋକ୍ଷୀର ଶ୍ୱେତ ସମାନ ତାର ଅଶ୍ୱମାନ
ମଣ୍ଡି ହୋଇଛନ୍ତି ନାନା ରତନ ଭୂଷଣ ।
ମଦମତ୍ତ ଗଜ ଆଉ ଅଶ୍ୱ ମହାତେଜୀ
କୋପଭର ହୋଇଣ ସେ ଆସି ଗଳଗାଜି ।
ନବସହସ୍ର ରାଜନ ଛନ୍ତି ତାର ତୁଳେ
ରେ ରେ କାର କରି ଅଭିମନ୍ୟୁକୁ ବେଢ଼ିଲେ ।
ଶରାଘାତ ନିରନ୍ତରେ ଯେହ୍ନେ ବର୍ଷେ ପାଣି
ଝଲକଇ ସେ ନାରାଚ ବିଦ୍ୟୁତେଜ ଜିଣି ।
ଶ୍ରୀଭୁଜେ ଶୋଭଇ ଆର୍ଦ୍ରାବଳୀ ସମ ଧନୁ
ନବସସ୍ର ଯୋଦ୍ଧା ତୁଳେ ଯୁଦ୍ଧେ ଅଭିମନ୍ୟୁ ।
କୃତାନ୍ତକ ବୋଲିକରି ଏକଇ ନାରାଜ
ବିନ୍ଧିଲେ ସଚରାଚର ହୋଇବ ଦହିର୍ଯ୍ୟ ।
ଏହି ଶରକୁ ସେ କାଣ୍ଡେ କଳାକ ସନ୍ଧାନ
ଆକର୍ଷି ବିନ୍ଧିଲା ତାହା ସୁଭଦ୍ରା ନନ୍ଦନ ।
ପ୍ରଳୟାଗ୍ନି ସମାନରେ ଉଠିଲା ତା ତେଜ
ଶୁଷ୍କତରୁ ସମ ସବୁ କଲାକ ଦହିର୍ଯ୍ୟ ।
ଆହେ ମନୁରାଜା ଅଗ୍ନିସମ ସେହି ଶର
କ୍ଷତ୍ରିଙ୍କ ଉପରେ ପଡ଼ି କଲା ଛାରଖାର ।
ଅଶ୍ୱ ଗଜ ରଥ ରଥୀ ସାରଥି ସହିତେ
ସର୍ବେ ଦହନ ହୋଇଲେ ନାରାଚ ପଡ଼ନ୍ତେ ।
ସର୍ବ ଜୟ କରି ଚଳେ ବୀର ଅଭିମନ୍ୟୁ
ପଞ୍ଚମଦ୍ୱାରେ ଭେଟିଲେ ଗୋଳକର ସୂନୁ ।
କୃପାଚାର୍ଯ୍ୟ ପୁଚ୍ଛିଲେ ଏ ଅଟେ କା କୁମର
ଶଲ୍ୟ ବୋଇଲେ ଏ ନାତି ଅଟଇ ଆମ୍ଭର ।
କୃପ ବୋଇଲେ ଏହାର ବଡ଼ଇ ସାହସ
ବାଳପୁତ୍ର ହୋଇ ଏହୁ ଯୁଦ୍ଧେ ଦେଲା ଝାସ ।
ସୈନ୍ୟଙ୍କ ଭଙ୍ଗ ଦେଖିଣ କୋପବହେ ଗୁରୁ
ଉପ୍ରୋଧ ଛାଡ଼ି ବିନ୍ଧିଲେ ଅଗ୍ନିବାଣ ଦୂରୁ ।
ବଜ୍ରପ୍ରାୟେ ସେ ନାରାଚ ଦୂରରୁ ଆସିଲା
ବନ ଅନଳ ଜାଣି ତା ତେଜ ପ୍ରକାଶିଲା ।
ମେଘାସ୍ତ୍ର କାଢ଼ି ବିନ୍ଧିଲା ସୁଭଦ୍ରା କୁମର
ବରଷିଲେ ମେଘମାଳ ହୋଇଣ ପ୍ରଚୁର ।
ପ୍ରଳୟ କାଳକୁ ଜିଣି ବର୍ଷେ ଗଳଗାଜି
ସହି ନ ପାରି ଯୋଦ୍ଧାଏ ପଳାଇଲେ ଭାଜି ।
ଅଗ୍ନିର ତେଜକୁ ଯହୁଁ ଲିଭାଇଲା ଜଳ
ଦେଖିଣ ପ୍ରଶଂସା କଲେ ସର୍ବ ଦିଗପାଳ ।
ପୁଣି କୃପ ସସ୍ରଶିରା ନାରାଚକୁ ଧରି
ବିନ୍ଧିଲେ ସେହି ନାରାଚ ମନ୍ତ୍ରକୁ ସୁମରି ।
ରାହୁର ମୁଖ ଯେସନେ ଦିଶଇ ବିସ୍ତାର
ସେହି ପ୍ରକାରେ ଦିଶଇ ସସ୍ରଶିରା ଶର ।

ମହାମେଘ ଜାଣି ସେ ଆସିଲା ଗଳଗାଜି
ଉପରୁ କି ଗିରିଖଣ୍ଡେ ପଡୁଅଛି ଭାଜି ।
ସାରଥି ଦେଖି ବୋଇଲେ ସମ୍ଭାଳ ତୋ ରଥ
ଦେବଅସ୍ତ୍ର ବିନ୍ଧେ କୃପ ହୋଇ କ୍ରୋଧାନ୍ୱିତ ।
କେତନବାକ୍ୟେ କୁମର ହେଲେ କୋପମୂର୍ତ୍ତି
ଧନୁରେ ଯୋଚି ବିନ୍ଧିଲା ଅମୋଘ ଶକତି ।
ଶକତିର ତେଜେ କୃପ ହୋଇ ତେଜୋହାନି
ପୁଣିହିଁ ବିନ୍ଧିଲେ ରାଗେ ସର୍ପଶର ଘେନି ।
ଗର୍ଜି ଧାଇଁଲେ ପନ୍ନଗେ ବିସ୍ତାରିଣ ଫେରୁ
ଗରୁଡ଼ାସ୍ତ୍ରେ ଅଭିମନ୍ୟୁ ଛେଦିଲେ ତା ଦୂରୁ ।
କୃପ ବୋଇଲେ କୁମର ଜୀବନ ତୋ ଧନ୍ୟ
ଆହା କହିଣ ବିନ୍ଧିଲେ ଅସ୍ତ୍ର ଅଗଣନ ।
ଅଶୀ ନାରାଚ ବିନ୍ଧିଲେ ସେହି ବେନିରଥୀ
ପଞ୍ଚଶରେ ଅଭିମନ୍ୟୁ ତାହା ଯେ ନିପାତି ।
ସହସ୍ର ନାରାଚ ଶଲ୍ୟ ବିନ୍ଧିଲେ ତା ସଙ୍ଗେ
ପୁଣି କୃପ ସସ୍ରଶର ବିନ୍ଧିଲେ ସବ୍ୟଗ୍ରେ ।
ଚାରି ଅଶ୍ୱଙ୍କ ଉପରେ ଚାରିସସ୍ର ଶର
ସାରଥିକି ସହସ୍ରେକ କଲାକ ପ୍ରହାର ।
ବିନ୍ଧିଲେ ଯେ ଅନିର୍ବାର ଶର ବେନି ରଥୀ
ଅଭିମନ୍ୟୁ ଉପରକୁ ହୋଇ କୋପମୂର୍ତ୍ତି ।
ରଥ ଘୋଟିଣ ସେ ବାଣେ ଅନ୍ଧକାର ସୃଷ୍ଟି
ଆକାଶମଣ୍ଡଳେ ମହାମେଘ ଯଥା ଘୋଟି ।
ଅଭିମନ୍ୟୁ ବିନ୍ଧିଲେ ଯେ ରାଧାଚକ୍ର ବାଣ
କୃପ ଶଲ୍ୟ ଅସ୍ତ୍ରକୁ ଯେ ଛେଦଇ ସେ ଜାଣ ।
ବିନ୍ଧି ବିମୁଖ ହୋଇଲେ ବେନି ମହାରଥୀ
ପ୍ରତିଶରେ ଅଭିମନ୍ୟୁ ଛେଦଇ ତା ଧାତି ।
ତହୁଁ କାମ୍ୟକ ବାଣକୁ ବିନ୍ଧି କୃପାଚାର୍ଯ୍ୟ
ଅଭିମନ୍ୟୁ ତ୍ରିଂଶବାଣେ କଲେ ତା ଦହିର୍ଯ୍ୟ ।
ତ୍ରିପୁରାଶର ଯା ଇନ୍ଦ୍ରଦେବ ଦେଇଥିଲେ
ସେହି ଶର ଅଭିମନ୍ୟୁ ବେଗରେ ବିନ୍ଧିଲେ ।
ନିଦାଘ ବାଣକୁ ଯହୁଁ ବିନ୍ଧେ ଅଭିମନ୍ୟୁ
ପଡ଼ି ସେ ଛିଡ଼ିଲା କୃପାଚାର୍ଯ୍ୟଙ୍କର ଧନୁ ।
ଲୁହାର ପଞ୍ଚଶର ଯେ ବିନ୍ଧି ପୁତ୍ରମଣି
କୃପଙ୍କର ସାରଥିକୁ ପକାଇଲେ ହାଣି ।
ମୋହନ ଶସ୍ତ୍ରେକ ପୁଣି ବିନ୍ଧି ଅଭିମନ୍ୟୁ
ବାଣେ ଜର୍ଜ୍ଜରିତ କଲା କୃପଙ୍କର ତନୁ ।
ସମରେ ବିରଥୀ ହେଲେ କୃପ ମହାରଥୀ
ତହୁଁ ଆଗେ ରଣକଲେ ଶଲ୍ୟ ସେନାପତି ।
ପଞ୍ଚଷଠି ବାଣେ ଶଲ୍ୟ କଲେକ ବିଘାତ
ବେନିବାଣେ ଛେଦିଲା ତା ଅର୍ଜ୍ଜୁନର ସୁତ ।
ଅନେକ ଶର ବିନ୍ଧିଲେ ରାୟେ ଶଲ୍ୟଗୁରୁ
ସବୁ ଶରମାନ ଛେଦେ ଅଭିମନ୍ୟୁ ଦୂରୁ ।
ଏହିପରି ସମର ଯେ ହେଲା ଗରୁଟାଣ
ଶର ଆଘାତରେ ଦେଖା ନ ଗଲା ଗଗନ ।
ପର୍ବତାଶର ବିନ୍ଧିଲେ ଯହୁଁ ମହାରଥୀ
ଅଭିମନ୍ୟୁ ବଜ୍ରଶରେ ଛେଦିଲା ଝଟତି ।
ପର୍ଶୁରାମ ଶର ଏକ ପେଷେ ଅଭିମନ୍ୟୁ
ସେହୁ ଫୁଟି ଭେଦିଲା ଯେ ଶଲ୍ୟଙ୍କର ତନୁ ।
ରୋମେ ରୋମେ ଭେଦିଲାକ ଯହୁଁ ତୀକ୍ଷ୍ଣବାଣ
ଘାଏ ଅସାଷ୍ଟମ ତହିଁ ହେଲେ ଶଲ୍ୟରାଣ ।
ରଥରେ ଉତ୍ତାନଶାୟୀ ହୋନ୍ତେ ଶଲ୍ୟରାୟେ
ଅଭିମନ୍ୟୁ ପଶିଲାକ ହୋଇଣ ନିର୍ଭୟେ ।
ବ୍ୟୂହ ଭେଦି ଜିଣିଲାକ ସୈନ୍ୟ ଏକାରଥ
ତାକୁ ଜିଣିବାକୁ କେହି ନୋହିଲେ ସମର୍ଥ ।
ପଞ୍ଚମ ଦୁଆର ଯୁଦ୍ଧ ଶୁଣ ଆହେ ଶ୍ରୋତା
ଅଶୀସସ୍ର ରଥୀ ନବସସ୍ର ଗଜ ମତ୍ତା ।
ଅଶ୍ୱ ଯୋଦ୍ଧା ସହ ତିନି ସାଗର ପଦାନ୍ତି
ଏକମୁଖ ହୋଇ ସର୍ବେ ନାରାଚ ବିନ୍ଧନ୍ତି ।
କେ ଶତେ କେହୁ ସହସ୍ର ବାଣମାନ ମାରି
କେହୁ କେତେ ଯେ ବିନ୍ଧନ୍ତି ଜାଣିତ ନ ପାରି
ଶୂନ୍ୟେ ଭେଦିଯାଏ ସେହି ବାଣ ଜ୍ୱାଳାବଳୀ
ନାରାଚେ ଅଦୃଶ୍ୟ ହେଲେ ଦେବ ଅଂଶୁମାଳି
ଅନ୍ଧକାର ଦିଶିଲା ଯେ ସେହି ରଣଭୂଇଁ
ଅନୁକ୍ଷଣେ ବିନ୍ଧିବାରୁ ମେଦିନୀ କମ୍ପଇ ।
ରଣଗୋଳେ ଧନ୍ଦୋଳ ଯେ କହି ତ ନ ପାରି
ଶବଦ ହୁଅଇ ଯେହ୍ନେ ସମୁଦ୍ର ଲହରୀ ।
ବାଜଇ ଯେ ବିଜିଘୋଷ ଟମକ ନିଶାଣ
ଘୋରନାଦ କରିଣ ଯେ ଗର୍ଜ୍ଜନ୍ତି ବାରଣ ।
ନିରପେକ୍ଷ ଯୋଦ୍ଧା ସେହୁ ବୀର ଅଭିମନ୍ୟୁ
ଶରବିନ୍ଧି ଛେଦିଲେ ସେ ସବୁଙ୍କରି ଧନୁ ।
ପୁଣ ପୁଣ ସେ ନାରାଚ କରନ୍ତେଣ ଭେଦ
ରଥୀଙ୍କର ମୁଣ୍ଡ ଛିଡ଼ିପଡ଼େ ରଣମଧ ।
କେୟୂର କଙ୍କଣ ଆଦି ମୁକୁଟ ଶ୍ରୀଭୂଷା
ରକତ କର୍ଦ୍ଦମରେ ଯେ ହେଲା ମାଟିମିଶା ।
ତହୁଁ ରଥ ଭଗ୍ନହେଲା ମଲେ ବହୁହସ୍ତୀ
ଏକର ଉପରେ ପଡ଼ି ଆରେକ ରୁହନ୍ତି ।
ପଦାତିଙ୍କ ସଂଖ୍ୟା କେହୁ କରିବ ଗଣନା
ଭୂମିରେ ପଡ଼ିଲେ କେତେ ରଥ ହୋଇ ଚୂନା ।
ଏକା ହୋଇ ଅଭିମନ୍ୟୁ ମନ୍ଥେ ସର୍ବବଳ
ସମୁଦ୍ର ମନ୍ଥନେ ଯେହ୍ନେ ଶୁଭଇ ଚହଳ ।

ଦେଖି ପ୍ରଶଂସନ୍ତି ଭୂରିଶ୍ରବା ମହାରଥୀ
ସାଧୁ ସାଧୁ ବାଳୁତ ତ ଅଟୁ ମହାକ୍ଷତ୍ରୀ ।
ଏହିପରି ପ୍ରଶଂସନ୍ତି ବହୁ ବଳବନ୍ତ
ଧନ୍ୟ ଧନ୍ୟ ଅଭିମନ୍ୟୁ ତୋର ପିତାମାତା ।
କୃଷ୍ଣାର୍ଜୁନ ସମାନରେ ତୋର ବଳବୁଦ୍ଧି
ପର୍ଶୁରାମ ପ୍ରାୟ କ୍ଷତ୍ରୀ ତୁହି ମହାଯୋଦ୍ଧୀ ।
ସହଦେବ ସମ ମନ୍ତ୍ରୀ ଗୁଣେ ଗୁଣନିଧି
ଏକା ଜଣକେ ଏ ବ୍ୟୂହ ଅଇଲୁ ଯେ ଭେଦି ।
ବଳବନ୍ତ ପଣରେ ଯେପରି ବୃକୋଦର
ବେଦବନ୍ତ ପଣେ ଯେଉଁପରି ବେଦବର ।
କାଳାନଳ ବହ୍ନି ଯଥା ତେଜୋବନ୍ତ ପଣେ
ତଥା ଦୀପ୍ତି ଅଟେ ତୋର କୁରୁକ୍ଷେତ୍ର ରଣେ ।
ବିଦ୍ୟାବନ୍ତ ପଣେ ଯେଉଁପରି ବୃହସ୍ପତି
ସବୁରୂପେ ଯେଉଁପରି ଅଟେ ଶଚୀପତି ।
ନାରାଚ ବୃଷ୍ଟିକି ଅଟୁ ଦ୍ରୋଣମେଘ ପରି
ଦନ୍ତୀ କୁରୁସୈନ୍ୟଙ୍କୁ ତୁ ଅଟୁ ଯେ କେଶରୀ ।
ସହିବା ପଣକୁ ତୁହି ଅଟୁ ମହୀ ସମ
ସାଧକପଣେ ତୁ ଅଟୁ ଯୋଗୀଙ୍କ ସମାନ ।
ଏକାଥରକେ ଜିଣିଲୁ ମହାରଣ ଗୋଳ
ଏ ବିଧିରେ ପ୍ରଶଂସିଲେ ସ୍ୱର୍ଗେ ଦିଗପାଳ ।
ଏଡ଼େବଡ଼ ଯୋଦ୍ଧାଙ୍କୁ ଯେ ସାହା ନାହିଁ ଥାଟ
ଜଣକେ ମୁକୁଳା କଲା ଚକ୍ରବ୍ୟୂହ ବାଟ ।
ଭୂରିଶ୍ରବା ଅଳମ୍ବୁଷ ସୋମ ଭଗଦତ୍ତ
ବାହ୍ଲିକ କେଶୀ ଶବରୀ ଥିଲେ ରଣଜିତ ।
ଏ ସର୍ବଯୋଦ୍ଧା ସମରେ ଅପପରି ଗଲେ
ପୁଣି ଏକମୁଖେ ସର୍ବେ ବାଣ ଯେ ବିନ୍ଧିଲେ ।
ଶତେ ଶତେ ନାରାଚ ଯେ ଘେନିଛନ୍ତି କରେ
ଜୁଳୁଜୁଳା ପୋକ ପ୍ରାୟ ଦିଶନ୍ତି ରଣରେ ।
ଏପରି ବହୁ ନାରାଚ କରନ୍ତେ ଯେ ବୃଷ୍ଟି
ଶତେ ନାରାଚେ ତା ଅଭିମନ୍ୟୁ ଦେଲା କାଟି
କ୍ଷୁଦ୍ର ହେଲେ କାହାକୁ ସେ ନ ଛାଡ଼ଇ କେଣେ
ଦଶସହସ୍ର ଯୋଦ୍ଧାସହ ଯୁଝେ ଏକା ଜଣେ ।
ନକ୍ଷତ୍ର ଭିତରେ ଯେହ୍ନେ ଚନ୍ଦ୍ରମା ତେଜସ୍ୱୀ
କୁରୁକ୍ଷେତ୍ରେ ଅଭିମନ୍ୟୁ ସେହିପରି ଦିଶି ।
ଅପାର ସୈନ୍ୟଦଳ ଯେ ଗହଳ ଧନ୍ଦୋଳ
ଶର ବୃଷ୍ଟିରେ ନ ଦିଶେ ଆକାଶ ମଣ୍ଡଳ ।
ସୈନ୍ୟ ପାଦରେଣୁ ଉଡ଼ି ନ ଦିଶେ ଆକାଶ
ଭାହା ନିବାରଣେ ଜାତ ସୁଭଦ୍ରାର ଶିଷ୍ୟ ।
ଏକା ହୋଇ କ୍ଷତ୍ରିୟଙ୍କୁ ଦେଲା ବହୁ ଦୁଃଖ
ସମରରେ ଯୋଦ୍ଧାମାନେ ହୋଇଲେ ବିମୁଖ

କର୍ଣ୍ଣାଟ ଦେଶ ରାଜନ ଅଟେ ଜାନୁଘଣ୍ଟ
ଅର୍ବୁଦେ ଯୋଦ୍ଧା ଘେନିଣ ଓଗାଳିଲେ ବାଟ ।
ଶତ ଶତ ନାରାଚ ସେ ଘେନି ତୀକ୍ଷ୍ଣ ମୁନ
ତ୍ୱରିତେ ବିନ୍ଧିଲା ସେହି ଅଭିମନ୍ୟୁ ସେହ୍ନ ।
ସବୁ ଅନ୍ଧକାର ହେଲା ନ ଦିଶିଲା କିଛି
ରଥୀ ସାରଥୀ କିଏ ସେ କେଉଁଠାରେ ଅଛି ।
ସାରଥିକି ନ ଶୁଭଇ ଗୁଣଘୋଷ ନାଦ
ରଥୀମାନଙ୍କୁ ନ ଶୁଭେ ସାରଥି ଶବଦ ।
କେତନକୁ ନ ଦିଶଇ ଅର୍ଜ୍ଜୁନ ନନ୍ଦନ
ପୁଣିହିଁ ନ ଦିଶେ ତାକୁ ଧବଳ ସ୍ୟନ୍ଦନ ।
ଧନୁଘୋଷ ନ ଶୁଭନ୍ତେ ବିଚାରେ ସାରଥି
ରଥପରେ ନାହିଁ କିବାଅର୍ଜ୍ଜୁନ ସନ୍ତତି ।
ଭାଳଇ ସେ ଅଭିମନ୍ୟୁ ନ ଚଳଇ ରଥ
କେତନ ସାରଥି କିବା ହେଲା ଅଶକତ ।
ସାରଥି ଦୃଷ୍ଟି ଗୋଚର ନୋହିବାରୁ ଅଶ୍ୱ
ତାହା ଭାବି କେତନର ଉଡ଼ିଲା ସାହସ ।
ଅଶ୍ୱ ଅଣ୍ଟାଳିଲା ତହୁଁ ସାରଥି ଦ୍ୱିକରେ
ତିନିଶତ ନାରାଚ ଯେ ପଡ଼େ ତାର ପରେ ।
ଘୋର ଅନ୍ଧକାର ଦେଖିଣ ଚାଳିଲା ସାରଥି
ଉଠିଲେ ଅଶ୍ୱ ସକଳ ହେଲେ ନଭୋଗତି ।
ଅଭିମନ୍ୟୁ ଦେଖିଲା ଯେ ସୂତ ଅଛି ରଥେ
ଆବର ଦେଖିଲା ଅଶ୍ୱ ଚାଲନ୍ତି ତ୍ୱରିତେ ।
ବୋଇଲେକ ଅଭିମନ୍ୟୁ ଶୁଣ ହେ କେତନ
ରଣ ଛାଡ଼ି ରଥ କିମ୍ପା ଆଣିଲୁ ଗଗନ ।
କ୍ଷତ୍ରୀ କୁଳରେ ଅଯଶ କଲୁ ମୋତେ ଆଣି
କିସ ଯେ ବୋଲିବେ ପିତା ମାମୁଁ ଚକ୍ରପାଣି ।
ସମର କାଳରେ କ୍ଷତ୍ରୀ ଯେବେ ପିଠି ଦ୍ୟନ୍ତି
ଜୀବନ୍ତେ ଅକୀର୍ତ୍ତି ମଲେ ହୁଏ ନର୍କଗତି ।
କୁମର ବଚନେ ରଥ ବାହିଲା ସାରଥି
ସମର କ୍ଷେତ୍ରରେ ସେ ଯେ ମିଳିଲା ଝଟତି ।
ଭାରତେ ଭାରୋଇମଲ୍ଲ ଅଟେ ଅଭିମନ୍ୟୁ
ଅପାର କୁରୁ-ସାଗର ମନ୍ଥେ ଧରି ଧନୁ ।
ବହୁବଳ ଘେନି ଜାନୁଘଣ୍ଟ ନରପତି
ଅଭିମନ୍ୟୁକୁ ଦେଖିଣ ଧାଇଁ ଶୀଘ୍ରଗତି
ଲକ୍ଷେପୁର କରି ଅଭିମନ୍ୟୁକୁ ବେଢ଼ିଲା
ଗଦା ମୁଦ୍‌ଗର ଭୂଷଣ୍ଡି ନିଠାଇ ମାଇଲା ।
ସୁଭଦ୍ରାନନ୍ଦନ ଅଟେ କକ୍ଷା ଜଗଜ୍ଜେଠି
ବିନ୍ଧନ୍ତେଣ ଅଇବ୍ରତ ଯୋଦ୍ଧା ଗଲେ ଫୁଟି ।
ପୁଣ ପୁଣ ପ୍ରହାର ଯେ କରେ ବୀରମଣି
ପାଶୁପତ ଶରେ ଗଜ ଯୋଦ୍ଧା ଲକ୍ଷେ ହାଣି ।

କୃତାନ୍ତକ ଶର ଯାହା ଯମ ଦେଇଥିଲେ
ସେ ଅସ୍ତ୍ର ପେଷନ୍ତେ ତିନିସସ୍ର ରଥୀ ମଲେ ।
ରୁଧିରରେ କରଦମ ହୋଇଲାକ ମହୀ
ଜାନୁଘଣ୍ଟ ସମଦଣ୍ଡ ନ ରହିଲେ କେହି ।
ବାୟବ୍ୟ ଅସ୍ତ୍ର ବିନ୍ଧିଲା ସୁଭଦ୍ରାନନ୍ଦନ
ସେ ବାଣରେ ଉଡ଼ିଗଲେ ବହୁତର ସୈନ୍ୟ ।
ରଥ ଯୋଦ୍ଧା ଗଜ ବାଜୀ ଉଡ଼ିଲେ ଗଗନେ
ଅପାର ଦୂରେ ପଡ଼ିଲେ ଯାଇଣ ସେମାନେ ।
ପୁଣି ତୀକ୍ଷ୍ଣଶର କାଢ଼ି ସୁଭଦ୍ରା ନନ୍ଦନ
ଧନୁରେ ଯୋଚି ତାହାଙ୍କୁ ବିନ୍ଧନ୍ତେ ତକ୍ଷଣ ।
ଜାନୁଘଣ୍ଟର ବାହୁରେ ତାହା ଗଲା ଫୁଟି
ରଥ ଉପରୁ ପଡ଼ିଲା ସେହି ମହୀଲୋଟି ।
ତାର ତୁଲେ ରଥୀ ଦୁଇସସ୍ର ପାରିଦଣ୍ଡ
ନାରାଚ ବିଘାତେ ସର୍ବେ ହେଲେ ଖଣ୍ଡ ଖଣ୍ଡ ।
ପୁନରପି ବହୁ ଯୋଦ୍ଧା ଆବୋରନ୍ତେ ଆସି
ଅଗ୍ନି ଅସ୍ତ୍ରେ ଅଭିମନ୍ୟୁ ତାହାଙ୍କୁ ବିନାଶି ।
ଜୟଶଙ୍ଖ ବଜାଇଣ ପାର୍ଥସୁତ ଚଳେ
ଷଷ୍ଠଦ୍ୱାରେ ଭୂରିଶ୍ରବା ସମ୍ମୁଖରେ ମିଳେ ।
ଅଶୀକୋଟି ଯୋଦ୍ଧାଘେନି ଭୂରିଶ୍ରବା ରଥୀ
ଷଷ୍ଠଦ୍ୱାରେ ଥିଲେ ଯୁଦ୍ଧେ ଉଠିଲେ ଝଟତି ।
ଦେଖି ଅଭିମନ୍ୟୁ ତାଙ୍କୁ ରଥରେ ପ୍ରଣମି
ବୋଇଲେ ଦୁଆର ଛାଡ଼ିଦିଅ ଦେବ ସ୍ୱାମୀ ।
ଅପାର କାଳର ତୁମ୍ଭେ ଅଟ କୁଳବୃଦ୍ଧ
ମୁହିଁ ବାଳୁତ ମୋର ସଙ୍ଗେ ତୁମ୍ଭର କି ଯୁଦ୍ଧ ।
ତୁମ୍ଭେ ମୋ ଗୁରୁଙ୍କ ଗୁରୁ ମୋ ପରମଗୁରୁ
ଆଶ୍ଚର୍ଯ୍ୟ ହୋଇଲି ଏବେ ଧନୁ ଧରିବାରୁ ।
ନ ଶୁଣି ତା ଭୂରିଶ୍ରବା ଯୋଚି ପଞ୍ଚବାଣ
ଅଭିମନ୍ୟୁକୁ ବିନ୍ଧିଲେ ଗୁଣ ଆମଞ୍ଜଣ ।
ପୁଣି ପଞ୍ଚବିଂଶ ଶର ଧନୁରେ ବସାଇ
ଅଭିମନ୍ୟୁ ଉପରକୁ ବିନ୍ଧିଲେ ନିଠାଇ ।
ସାରଥିକୁ ପଞ୍ଚବିଂଶ ଅଶ୍ୱେ ପଞ୍ଚତ୍ରିଂଶ
ରଥର ପରେ ବିନ୍ଧିଲେ ପୁଣି ଦୁଇ ବିଂଶ
ପାଞ୍ଚଶରେ ଅଭିମନ୍ୟୁ ସେ ଶରକୁ ହାଣି
ପୁଣି ଚୋଖା ପଞ୍ଚଶର ବିନ୍ଧିଲେ ସେକ୍ଷଣି ।
ସେ ଶର ବେଗେ ଚଳିଲେ ଧରି ଏକ ମୂର୍ତ୍ତି
ଭୂରିଶ୍ରବାର ବଧିଲେ ନବସସ୍ର ରଥୀ ।
ନିର୍ଘାତ ଶରକୁ ପୁଣି କୁମାର ବିନ୍ଧିଲା
କୌଶଳର ତିନିସସ୍ର ରାଜାଙ୍କୁ ହାଣିଲା ।
ଭୂରିଶ୍ରବାଙ୍କ ସଙ୍ଗରେ ସମର କରନ୍ତେ
ଦ୍ୱିସସ୍ର ରାଜା ପଡ଼ିଲେ ତାହାର ଦେଖନ୍ତେ ।

ଯାହା କଲା ତହିଁ ସେହି ସୁଭଦ୍ରାର ବଳା
ମାନବରେ ଅଗୋଚର ତାର ଯୁଦ୍ଧଲୀଳା ।
କଙ୍କପକ୍ଷ ନାରାଚ ଯେ ଅତି ତୀକ୍ଷ୍ଣମୁନା
ବିନ୍ଧନ୍ତେ ସେ ଫୁଟାଇଲେ ଭୂରିଶ୍ରବା ସେହ୍ନା ।
ମେରୁ ଫୁଟି ଗଙ୍ଗା ଯେହ୍ନେ ବହେ ତିନିଧାର
ସେପରି ରକ୍ତ ବହିଲା ଫୁଟି ତା ଶରୀର ।
ସେ ଘାଏ ଅଚେତ ହେଲେ କୁରୁକୁଳ ଶ୍ରେଷ୍ଠ
ଭୂରିଶ୍ରବା ଅସାଷ୍ଟମେ ଭାଜିଲେକ ଥାଟ ।
ବିଲଙ୍କାର କୃତାନ୍ତକ ଏହାଙ୍କର ମୂଳେ
ପଡ଼ିଗଲେ ଯୋଦ୍ଧାମାନେ ଯୁଦ୍ଧ ମହାରୋଳେ
ଆହେ ମନୁ ଦଣ୍ଡଧର ମରୁତ ରାଜନ
ପଶ୍ଚିମରୁ ଆସିଥିଲେ ଯେତେ ରାଜାଗଣ ।
ଦିବା ଶେଷେ ଦିଶେ ଯଥା ଆକାଶ ସୁରଙ୍ଗ
ରୁଧିରେ ଜର୍ଜର ହୋଇ ଦିଶେ ତାର ଅଙ୍ଗ ।
ରତ୍ନମଣି କୁଣ୍ଡଳାଦି ବାହୁଟି ତୋଡ଼ର
ରଙ୍ଗ ଦେଖାଗଲା ରକ୍ତେ ହୋଇ ଜର ଜର ।
ପଡ଼ି ଉଠି ବିନ୍ଧୁଛନ୍ତି ଶରମାନ ପୁଣି
ଏକାଳେ ସମର କରେସେ କୁମର ମଣି ।
ଏରୂପେ ବହୁ ସମର କଲା ଜଣକରେ
ପ୍ରତ୍ୟକ୍ଷେ ଅର୍ଜୁନ କିବା ପଶିଛି ସମରେ ।
ଦଶସହସ୍ର ରାଜନ ପଡ଼ିଲେ ସେଠାରେ
ରୁଧିର ନଦୀ ବହିଲା ମୃତପିଣ୍ଡ ପରେ ।
ଷଷ୍ଠ ଦୁଆରକୁ ଜିଣି ରଥ ବେଗେ ଚଳି
ସପ୍ତମ ଦ୍ୱାରେ ପ୍ରବେଶ ସେ ରଥ ଧବଳି ।
ସମସ୍ତ ଦ୍ୱାରର ଯୁଦ୍ଧ କଥା ଏବେ ଶୁଣ
ଦୁର୍ଯ୍ୟୋଧନ ତୁଲେ ଛନ୍ତି ସହସ୍ର ରାଜନ ।
ବତିଶ ସହସ୍ର ହସ୍ତୀ ନବ ସସ୍ର ରଥୀ
ସତୁରିସସ୍ର ମୁକୁଟ ବନ୍ଧା ସେନାପତି ।
ପଦାତି ନବକ୍ଷଉଣୀ ଶକୁନିର ସହ
ଲକ୍ଷ୍ମଣକୁମର ସଙ୍ଗେ ନବସସ୍ର ରାୟ ।
ପୁଣି ଦଶସସ୍ର ରାଜା ତହିଁ ରହିଥିଲେ
ଏକମୁଖ ହୋଇ ସର୍ବେ ନାରାଚ ବିନ୍ଧିଲେ ।
ଦୁଃଶାସନ ଦୁର୍ଜ୍ଜୟ ଯେ ଦୈତ୍ୟ ଅଳମ୍ବୁଷ
ଏମାନେ ମଧ ବିନ୍ଧନ୍ତି ନାରାଚ ବିଶେଷ ।
ଅସଂଖ୍ୟ ସଇନି ତହିଁ ବଡ଼ଇ ଗହଳ
ସିନ୍ଧୁ ଗରଜନ ପରି ଶୁଭେ ମୁଖଗୋଳ ।
ଯଦ୍ୟପିଟି କଉରବେ ଅଟନ୍ତି ସେ ମଲ୍ଲ
ଅଭିମନ୍ୟୁ ବ୍ୟାଘ୍ର ଆଗେ ସେହି ଛେଳିପଲ ।
ରୋଷେ ନାରାଚ ବିନ୍ଧନ୍ତି କୌରବ ସଇନି
ଅଭିମନ୍ୟୁ ପ୍ରତାପରେ ଯାନ୍ତି ସଂଯମନୀ ।

ଏକ ଗୋଟି ଯୋଦ୍ଧାକୁ ସେ ଦଶସସ୍ର ରାୟ
ବେଢ଼ିଣ ବିନ୍ଧନ୍ତି ବାଣ କାଳାନଳ ପ୍ରାୟ ।
ଛେଦିଲା ସମସ୍ତଙ୍କର ଫଳା ଖଡ଼ଗ୍ ଧନୁ
ଅନୁକ୍ଷଣେ ବାଣ ବିନ୍ଧେ ବୀର ଅଭିମନ୍ୟୁ ।
ପୁଣି ବ୍ୟୋମ ଆଚ୍ଛାଦିଣ ବିନ୍ଧୁ ତୀକ୍ଷ୍ଣ ବାଣ
ରଥୁଁ ରଥୀ ପଡ଼ିଗଲେ ଗଜୁ ରାଜାଗଣ ।
ଗଜ ଯୋଦ୍ଧାଙ୍କ ଉପରେ ତୀକ୍ଷ୍ଣବାଣ ପଡ଼ି
ପ୍ରାଣ ହାରିଣ ପଡ଼ିଲେ ଗିରି ସମ ଝଡ଼ି ।
ଅଶ୍ୱମାନ ହତହେଲେ ଥିଲେ ତହିଁ ଯେତେ
ପଡ଼ିଲେ ପଦାତି ପ୍ରାଣ ହାରି ଅପ୍ରମିତେ ।
ରଥୀଙ୍କ ଦେହୁ ରୁଧିର ପଡ଼ଇ ନିକିଳି
ରକତେ କର୍ଦ୍ଦମ ମହୀ ନ ରହିଲା ଧୂଳି ।
ଅଭିମନ୍ୟୁ ଯୁଦ୍ଧକଥା ଦେବେ ଅଗୋଚର
ଖେଳନ୍ତା ବାଳକ ସେହି ଚଉଦ ବର୍ଷର ।
ବିଶେଷତଃ ଯୋଦ୍ଧାବଳ ବାଇଶ କ୍ଷଉଣୀ
ଏକା ଜଣକେ ସମର କଲା ବୀରମଣି ।
ରଥ ଗଜ ସୈନ୍ୟଙ୍କୁ ସେ ତୀକ୍ଷ୍ଣ ଶର ବିନ୍ଧି
ନିମିଷକେ ଶତ ଶତ ସୈନ୍ୟ ଦିଏ ଛେଦି ।
ସେହ୍ନାଫୁଟି ବାଣମାନ ଭେଦେ ରୋମେ ରୋମେ
ବେନିଖଣ୍ଡ ହୋଇ ବହୁ ପଡ଼ନ୍ତି ସଂଗ୍ରାମେ ।
ଅନର୍ଯ୍ୟାପ୍ତ ଶରାଘାତେ ସର୍ବେ ହେଲେ ହତ
ସୈନ୍ୟ ସହିତେ ପଡ଼ିଲେ ନୃପତି ବହୁତ ।
ସ୍ୱର୍ଣ୍ଣମୁକୁଟ ବାହୁଟି ଆଉ ଜଗଦ୍‌ବଳା
ରକତ ନଦୀରେ ସବୁ ଭାସେ ହୋଇ ଭେଳା ।
ନବସସ୍ର ରାଜା ତିନିସସ୍ର ପାରିଦଣ୍ଡ
ଘଡ଼ିକରେ ଛେଦିଲାକ ସବୁଙ୍କରି ମୁଣ୍ଡ ।
ଯେସନେକ ପଳାବନ୍ତି ବାସଭଗ୍ନ ପକ୍ଷୀ
ସେହିପରି ପଳାଇଲେ ସମର ଉପେକ୍ଷି ।
କଳନା ନ ଯାଏ ତହିଁ ଅନର୍ଯ୍ୟାପ୍ତ ବାଣ
କୌରବ ଥାଟକୁ କେହି ନୋହିଲେ ରକ୍ଷଣ ।
ଶକୁନି ଦୁଃଶାସନ ଯେ ଦେଖି ରଣ ଭଗ୍ନ
ଦୁର୍ଜ୍ଜୟ ଦୁର୍ମୁଖ ଦୁରାପଦ ଦୁରାସନ ।
ଦୁରାନ୍ତକ ଦୁରାବନ୍ତ ଦୁର୍ମଦ ଦୁର୍ନାଦ
ଦୁର୍ନଷ୍ଟ ଦୁର୍ବାର ଆଉ ଦୁରାନ୍ତ ଦୁର୍ବନ୍ଦ ।
ଦୁର୍ଯ୍ୟୋଧନର ଏପରି ଅଠାଣୋଇ ଭାଇ
ଅଷ୍ଟମ ଦ୍ୱାରରେ ସର୍ବେ ଓଗାଳିଲେ ଯାଇ ।
ବତିଶ ସହସ୍ର ମ୍ଳେଚ୍ଛଯୋଦ୍ଧା ସଙ୍ଗେ ଘେନି
ଅସଂଖ୍ୟ ନାରାଚ ସର୍ବେ ବିନ୍ଧନ୍ତି ଯେ ଟାଣି ।
ଦଣ୍ଡ ଦେଖିଣ ଉସତ ହୋଇ ବୀରମଣି
ବିନ୍ଧେ ନାରାଚ ଖେଳନ୍ତା ସିଂହସମ ଜାଣି ।

ମହାବାତେ ଯେଉଁପରି ପଡ଼େ ପକ୍ୱଫଳ
କନ୍ଧୁ ଛିଣ୍ଡାଇ ମଉଳି ପକାଏ ଭୂତଳ ।
କାର ବେନିଭୁଜ କାର କଳେବର କାଟି
ମୁଣ୍ଡା ବୃକ୍ଷ ସମ ନାଚେ କବନ୍ଧ ଯେ କୋଟି ।
ଦେବେ ପ୍ରଶଂସା କରନ୍ତି ଧନ୍ୟ ଅଭିମନ୍ୟୁ
ପୃଥ୍ୱୀଭାରା ନିବାରିଲୁ ଏକା ଧରି ଧନୁ ।
ଆକାଶରୁ ଅଇଲେକ ବିହନ୍ତା ପୁରୁଷେ
ଆସି ଅଦୃଶ୍ୟେ ରହିଲେ ଅଭିମନ୍ୟୁ ପାଶେ ।
ଅଭିମନ୍ୟୁ ଅଟଇ ଯେ ନିଷ୍କଳଙ୍କ କ୍ଷତ୍ରୀ
ଏମାନେ ତା କ୍ଷତ୍ରୀପଣ ଦେଖି ହେଲେ ତୃପ୍ତି ।
ଅଭିମନ୍ୟୁର ସମର ଦେଖିଣ ଏମନ୍ତ
ବିହନ୍ତା ପୁରୁଷମାନେ ହୋଇଲେ ଚକିତ ।
ଅଗସ୍ତିଙ୍କୁ ବୈବସ୍ୱତ ମନୁ ପୁଚ୍ଛାକଲେ
ବିହନ୍ତା ପୁରୁଷେ କିମ୍ପା ସେଠାକୁ ଅଇଲେ ।
କହନ୍ତି ଅଗସ୍ତି ତୁମ୍ଭେ ଶୁଣ ଶୁଦ୍ଧଚେତା
କହିଲେ ନ ସରିବ ଏ ଦ୍ରୋଣପର୍ବ କଥା ।
କବନ୍ଧ ବୋଲିଣ ଦୈତ୍ୟ ଥିଲା ସତ୍ୟଯୁଗେ
ସେହି ଦୈତ୍ୟ ନାଶଗଲା ପ୍ରଜାପତି ରାଗେ ।
ଉଦେକବନ୍ଧ ବୋଲିଣ ତାହାର ଯେ ପୁତ୍ର
ଆକାଶ ମଣ୍ଡିଣ ସେହୁ କରେ ମନ୍ଦକୃତ୍ୟ ।
ଅଭିମନ୍ୟୁ ସତ୍ୟଯୁଗେ ଆଦି ନାମ ବହି
ଦେବଙ୍କୁ ତାରିଲେ ସେହି ଦୈତ୍ୟ ପ୍ରାଣ ନେଇ
ଆଦିମାତାଙ୍କର ନାମ ଅଟେ ଉଗ୍ରତାରା
ମାତା ପୋଏ ନିବାରନ୍ତି ପୃଥିବୀର ଭାରା ।
ଆଦିମାତା ଜନମିଲା ନନ୍ଦଖୁଡ଼ ଘରେ
କଂସ କଚାଡ଼ିଲା ନେଇ ଶିଳାର ଉପରେ ।
ସେ ମାତା ପୁତ୍ରଙ୍କୁ ବିଷ୍ଣୁ ସତ୍ୟ ଯେ କରାଇ
ବୋଇଲେ ମର୍ତ୍ତ୍ୟେ ଜନମ ହୁଅ ମୋହପାଇଁ ।
ଆଦିକି କହିଲେ ଭଦ୍ରାଗର୍ଭୁ ତୁ ଜନ୍ମିବୁ
ଚଉଦ ବରଷ ଯାଏ ସେଠାରେ ରହିବୁ ।
ଆଦି ବୋଲେ ସ୍ୱର୍ଗପୁର ମୁହିଁ ରକ୍ଷାକରେ
ମର୍ତ୍ତ୍ୟମଣ୍ଡଳେ ରହିବି କେମନ୍ତ ପ୍ରକାରେ ।
ତୁମ୍ଭର ବଚନ ଶୁଣି ମୁହିଁ ଭାଙ୍ଗି ନ ପାରିବି
ଚୌଦବର୍ଷରୁ ଅଧିକ ମର୍ତ୍ତ୍ୟେ ନ ରହିବି ।
ଚୌଦବର୍ଷୁ ଏକଦିନ ଅଧିକ ହୋଇଲେ
ତୋତେ ଅର୍ଜ୍ଜୁନ ସହିତେ ମାରିବି ବୋଇଲେ ।
ତୁହି ଯଦ୍ୟପି ହେ ଦେବ ରଖାଇବୁ ମୋତେ
ସେହି ରଣଭୂଇଁରେ ମୁଁ ମାରିବଇଁ ତୋତେ ।
ଏହି କଥା ଯେବେ ଦୃଢ଼ କରିବ ଅନନ୍ତ
ତେବେ ତୋମାତାଙ୍କୁ ମୋତେ ମର୍ତ୍ତ୍ୟେ କରଜାତ

ବିଷ୍ଣୁ ବୋଇଲେ ମୁଁ କେଉଁଦିନ ହେବି ଜାତ
ତା ଆରଦିନ ତ୍ରିଦଣ୍ଡେ ଆସିବେ ତୋ ମାତ ।
ସେ ଭୈରବୀ ଉଗ୍ରତାରା କେଶବ ବଚନେ
ଯଶୋଦା ଗର୍ଭୁ ଜନ୍ମିଲେ ନନ୍ଦର ଭବନେ ।
କଂସ ଡରେ ବସୁଦେବ ଗୋପପୁରେ ଯାଇ
ନନ୍ଦ ଝିଅକୁ ଆଣିଲା ନିଜ ପୁତ୍ର ଥୋଇ ।
ପୁତ୍ର ଜନ୍ମ ହେବା ଶୁଣି ଧାଏଁ କଂସରାୟେ
ସେ କନ୍ୟାକୁ କଚାଡ଼ିଲା ଘଟଣ ଶିଳାଏ ।
ତତକ୍ଷଣେ ଉବୁରିଣ ଗଲା ଭଇରବୀ
ଆକାଶ ମଣ୍ଡଳେ ଯାଇ ବିଶ୍ରାମିଲା ଦେବୀ ।
କୂଟେ ଜଳଧର ବ୍ୟୂହ ହରି ରଚାଇଲେ
ଅର୍ଜ୍ଜୁନକୁ ଅଭିମନ୍ୟୁ ଭୟେ ଘେନିଗଲେ ।
ଅଭିମନ୍ୟୁ ସମରରେ ପଡ଼ିବା ପର୍ଯ୍ୟନ୍ତେ
ଭୟେ ଅର୍ଜ୍ଜୁନକୁ ନ ଛାଡ଼ିଲେ ଜଗନ୍ନାଥେ ।
ପାର୍ଥ ତହିଁ ଥିଲେ ଅଭିମନ୍ୟୁ ନ ପଡ଼ନ୍ତା
କୃଷ୍ଣ ଅର୍ଜ୍ଜୁନକୁ ମାରି ସ୍ୱର୍ଗକୁ ଗମନ୍ତା ।
ଉଦେକବନ୍ଧ ଦଇତ କବନ୍ଧ ନନ୍ଦନ
ନବବର୍ଷ ହେଲା କଲା ସ୍ୱର୍ଗକୁ ମନ୍ଥନ ।
ସେ ଉଦେକବନ୍ଧ ଡରେ ଦେବ ପୁରନ୍ଦର
ଆସ୍ଥାନେ ବସି ନ ପାରେ ଅମର ସଭାର ।
ଇନ୍ଦ୍ର ସଭାରେ ନ ବସୁ ଅନାବୃଷ୍ଟି ହେଲା
କେଉଁ ଦେଶକୁ ସୁଖରେ ପାଳି ନ ପାରିଲା ।
ଧାତା ବୋଲେ ଅଭିମନ୍ୟୁ ସ୍ୱର୍ଗକୁ ଅଇଲେ
ଉଦେକବନ୍ଧ ମରିବ ଯୁଝି ତାର ତୁଲେ ।
ଇନ୍ଦ୍ର ପେଶିଲା ବିହନ୍ତା ପୁରୁଷଗଣଙ୍କୁ
ସମରେ ନାଶ କରାଅ ସେ ଅଭିମନ୍ୟୁକୁ ।
ନୋହିଲେ ଉଦେକବନ୍ଧ ସ୍ୱର୍ଗକୁ ଧ୍ୱଂସିବ
ଅଭିମନ୍ୟୁ ସ୍ୱର୍ଗେ ଗଲେ ସେ ଦୈତ୍ୟ ମରିବ ।
ଯେବେ ରଣେ ଅଭିମନ୍ୟୁ ବରତିଣ ଯିବେ
ତେବେ କୃଷ୍ଣାର୍ଜ୍ଜୁନ ନିଶ୍ଚେ ବିନାଶ ହୋଇବେ ।
ଭାଇ ବୋଲି କୌରବଙ୍କୁ କରି ଉପରୋଧ
ଯେ ଯେତେ କହିଲେ ପାର୍ଥ ନ କରିବ ବଧ ।
ଅଭିମନ୍ୟୁ ମଲେ ପୁତ୍ରକଷ୍ଟେ ଅରଜୁନ
କର୍ଣ୍ଣ ଦୁର୍ଯ୍ୟୋଧନ ବେନି କରିବ ନିଧନ ।
ଅର୍ଜ୍ଜୁନ କୋପିଲେ କୁରୁବଳ ହେବ ନାଶ
ନ ମଲେ କୌରବେ ପୃଥ୍ୱୀ ନ ବେହ ଉଶ୍ୱାସ ।
ଏପରି କହିଣ ଦେବଲୋକେ ଚଳିଗଲେ
ଉଶ୍ୱାସ ନୋହିବ ଧରା ଅଭିମନ୍ୟୁ ଥିଲେ ।
ବିହନ୍ତା ପୁରୁଷେ କହୁଁ କରିଲେ କପଟ
ଅଭିମନ୍ୟୁ ଶର ହେଲା ଅକାଟ ଅତୁଟ ।

ପଞ୍ଚଲକ୍ଷ ଯୋଦ୍ଧା ଘେନି ଲକ୍ଷ୍ମଣକୁମର
ଅଳମ୍ବୁଷ ଦୁଃଶାସନ ଅଛନ୍ତି ସଙ୍ଗର ।
ଏତେ ଯୋଦ୍ଧାଙ୍କୁ ଘେନି ସେ ଭାନୁମତୀ ବଳା
ମହା ମତ୍ତନାଗ ପ୍ରାୟ ତେଜ ଅନର୍ଗଳା ।
ଭଦ୍ରାସୁତ ପ୍ରତିଜ୍ଞାରେ ଅଟେ ବଳବନ୍ତା
ତ୍ରିଲୋକ୍ୟ ଏକ ହୋଇଲେ ତାକୁ ନ ଜିଣନ୍ତା
ବ୍ୟୂହ ଜୟ କଲା ଯେହୁ ନବଦ୍ୱାର ଭେଦି
ତିନି ସାଗର ଯୋଦ୍ଧାଙ୍କୁ ପକାଇଲା ଛେଦି ।
ଦଶସହ୍ର ରାଜା ସାତ ମର୍ଭୁତ ଯେ ରଥୀ
ତେରଶତ ପାରିଦଣ୍ଡ ନକ୍ଷୌଣୀ ପଦାତି ।
ଏତେକ ନାଶକଲା ସେ ପଶି ଚକ୍ରବ୍ୟୂହେ
ଅପାର କୃତ୍ୟ କରିଲା ବାଳକ ତନୟେ ।
ନବଦ୍ୱାର ଜିଣି ଜୟଶଙ୍ଖ ବଜାଇଲା
ଦଶମ ଦ୍ୱାରରେ ଯାଇ ପ୍ରବେଶ ହୋଇଲା ।
ବହୁତର ସୈନ୍ୟ ହତ ହୋଇବାର ଦେଖି
ଅଶ୍ୱଥାମା ଓଗାଳିଲେ ଉପ୍ରୋଧି ଉପେକ୍ଷି ।
ଭରଦ୍ୱାଜଙ୍କର ନାତି ଯୁଦ୍ଧେ ବଳବାନ
ଭାରତ ଯୁଦ୍ଧେ ତା ସଙ୍ଗେ କେ ହେବ ସମାନ ।
ବିନ୍ଧଇ ନାରାଚ ବେଗେ ଅର୍ଜ୍ଜୁନର ସୁତ
କିଞ୍ଚିତ ଶରେ ତା ଅଶ୍ୱଥାମା କରେ ହତ ।
ପୁନରପି ପଞ୍ଚତ୍ରିଂଶ ପୂରାଇଣ ବାଣ
ବିନ୍ଧିଲାକ ଧାଡିକାରେ ସୁଭଦ୍ରା ନନ୍ଦନ ।
ନାରାଚ ଆସିବା ଦୂରୁଁ ଦେଖିକରି ଦ୍ରୋଣୀ
ପ୍ରତିକଚ୍ଛ ପଞ୍ଚବାଣ ପେଷି ତାହା ଜାଣି ।
ସେ ଦୁହେଁ ସମରେ କେହି ନୁହନ୍ତି ଯେ ନୀଚ
ଅଭିମନ୍ୟୁଙ୍କର ପିତା ଅଟନ୍ତି ଶ୍ରୀବହ୍ଯ ।
ଅଶ୍ୱଥାମାଙ୍କର ପିତା ଅଟେ ଦ୍ରୋଣଗୁରୁ
କେଉଁ ବୀର ତାହାଙ୍କର ଆଗେ ଧନୁ ଧରୁ ।
ଅସଂଖ୍ୟ ଶର ବିନ୍ଧନ୍ତି ସେହି ବେନିରଥୀ
ଶର ଗହଣେ ନ ଦିଶେ ସପ୍ତଦ୍ୱୀପ ପୃଥ୍ୱୀ ।
ଅଶ୍ୱଥାମା ଚୋଖା ଚୋଖା ଶରମାନ ବିନ୍ଧି
ଅଭିମନ୍ୟୁ ତାହା ଦିଏ କିଞ୍ଚିତରେ ଛେଦି ।
ଏହିପରି ବାଣମାନ ବିନ୍ଧେ ଅଶ୍ୱଥାମା
ତୁଷ୍ଟେ ଯେଉଁ ଅସ୍ତ୍ର ସବୁ ଦେଇଥିଲେ ଉମା ।
ମହାକାଳ ବାଣେ ତାହା ଛେଦେ ଅଭିମନ୍ୟୁ
ପୁଣି ଦ୍ରୋଣୀ ବିନ୍ଧିଲେକ ଶର ଅଭିମନ୍ୟୁ ।
ସେ ମହାଘୋର ନାରାଚ ଆସନ୍ତେ ତ୍ୱରିତ
ତାହା ଛେଦି ପକାଇଲେ ଅର୍ଜ୍ଜୁନଙ୍କ ସୁତ ।
ଶରେ ଶର ପରିତାଳ ହୁଅନ୍ତେ ଯେ ବେନି
ତହିଁରୁ ଜାତ ହୋଇଲା ନିର୍ଧୂମ ବହ୍ନି ।

ପୁଣିହିଁ ଶର ବିନ୍ଧଇ ଭରଦ୍ୱାଜ ନାତି
ବିନ୍ଧ୍ୟମାଳା ପ୍ରାୟେ ଶର ଆସଇ ତଡ଼ତି ।
ପଡ଼ନ୍ତେ ସେ ପଥର ଯେ ସମରେ ଦୁର୍ମୁଖ
ଦେଖିକରି ଅଭିମନ୍ୟୁ ହୋଇଲା ବିମୁଖ ।
ଅଭିମନ୍ୟୁ ବକ୍ରମୁନା ନାରାଚକୁ ବିନ୍ଧି
ବିନ୍ଧ୍ୟମାଳ ଶରକୁ ସେ ପକାଇଲା ଛେଦି ।
କୋପେ ଅଶ୍ୱତ୍ଥାମା ବିନ୍ଧେ ଅର୍ଦ୍ଧଚନ୍ଦ୍ର ବାଣ
ସୂର୍ଯ୍ୟବାଣେ ଛେଦିଲା ତା ସୁଭଦ୍ରା ନନ୍ଦନ ।
କୋପଭରେ ଅଶ୍ୱତ୍ଥାମା ଅଗ୍ନିଶର ପେଷି
ମେଘାଶର ପେଷି ତାହା ଅଭିମନ୍ୟୁ ନାଶି ।
ଏହିପରି କରିବାରୁ ଶର ବେନିବାଳ
ସୂର୍ଯ୍ୟତେଜ ନ ଦିଶିଲା ଗଗନ ମଣ୍ଡଳ ।
ଏପରି ରଣ କରନ୍ତେ ହେଲା ବେନିଘଡ଼ି
ଶର ଆତଯାତ ଶୁଭେ ଯେହ୍ନେ ଚଡ଼ଚଡ଼ି ।
ମହା ଅନଳ ନାରାଚ ବିନ୍ଧିଲାକ ଦ୍ରୋଣି
ଅଭିମନ୍ୟୁ ଆବର୍ତ୍ତିକ ଶରେ ତାହା ହାଣି ।
ପୁଣି ନାଗପାଶ ଶର ବସାଇଣ ଧନୁ
ବିନ୍ଧିଲା ଅଶ୍ୱତ୍ଥାମାକୁ ପୁତ୍ର ଅଭିମନ୍ୟୁ
ଖଗବର ବାଣ ଘେନି ଭରଦ୍ୱାଜ ନାତି
ବିନ୍ଧନ୍ତେ ସର୍ପ ପଳାଇ ଗଲେ ତତ୍‌କ୍ଷଣାନ୍ତି ।
ଏହିପରି ସମର ଯେ ହେଲା ଦୁହିଁଙ୍କର
ପ୍ରତିକକ୍ଷ ଶରମାନ ବିନ୍ଧିଲେ ଅପାର ।
ଆଦାନ ସନ୍ଧାନ କେହି ଜାଣି ତ ନ ପାରି
ବେନି ବୀର ଅଟନ୍ତି ଯେ ବଳେ ସମସରି ।
ଅଶ୍ୱତ୍ଥାମା ପ୍ରଶଂସଇ ଧନ୍ୟ ଅଭିମନ୍ୟୁ
ତୁ ବାଳକ ହୋଇ ଅସ୍ତ୍ରମାନ ଭଲ ଜାଣୁ ।
ତୁହି ମହା ଧନୁର୍ଦ୍ଧର ଏ ଭାରତ ଯୁଦ୍ଧେ
କେ ରଥୀ ରହିପାରିବେ ତୋହର ସନ୍ନିଧେ ।
ଏଡ଼େଯୋଦ୍ଧା ହୋଇଲୁ ତୁ ହୋଇ ବାଳବୟି
ଏ ବ୍ୟୂହେ ପଶିଲୁ ଭୟ ନୋହିଲା ତୋ କିଛି ।
ଦ୍ରୋଣ ଜୟଦ୍ରଥ କର୍ଣ୍ଣ ଭୂରିଶ୍ରବା ଶଲ୍ୟ
ଏହାଙ୍କୁ ଜିଣିଲୁ ତୁହି ଅଟୁ ମହାମଲ୍ଲ ।
ପଚାଶସସ୍ର ରାଜାଙ୍କ ପାରିଦଣ୍ଡ ମାନ
ଏକା ହୋଇକରି ନେଲୁ ସମସ୍ତଙ୍କ ପ୍ରାଣ ।
ତୁହି ଅଟୁ ଷୋଯଡ଼ରେ ମହାବଳବନ୍ତା
ଛେଳ ଚକ୍ର ପ୍ରୟୋଗରେ ଅଟୁ ତୁ ଶକତା ।
ଏହି କୌରବ ସଇନି ଅଟେ ଅକୂପାର
ଏହାଙ୍କୁ ମନ୍ଥନ କଲୁ ହୋଇ ତୁ ମନ୍ଦର ।
ଏ କଉରବ ଅଟନ୍ତି ମହା ନାଗରାଶି
ଗରୁଡ଼ ହୋଇ ୟାଙ୍କର ଦର୍ପ ଦେଲୁ ଧ୍ୱଂସି ।

ଅଭିମନ୍ୟୁ ବୋଲେ ଏବେ ଦ୍ୱନ୍ଦ୍ୱକର ବାବା
ଆଜ ଏ କୌରବବଳ କରିବି ମୁଁ ପଦା ।
ପୁଣି ଅୟୁତେ ନାରାଚ କାଣ୍ଡରେ ବସାଇ
ମାରି ଅଶ୍ୱତ୍ଥାମା ରଥ ଘୁଞ୍ଚାଇଲା ନେଇ ।
ମହାବଳବନ୍ତ ସେ ଯେ କକ୍ଷା ଜଗନ୍ନେଠି
ଅଶ୍ୱତ୍ଥାମା ପଞ୍ଚଦଶ ବାଣେ ସବୁ କାଟି ।
ପୁଣି କୋପେ ବିନ୍ଧିଲାକ ବାସବର ନାତି
ଅଶ୍ୱତ୍ଥାମା ଉପରକୁ ଅମୋଘ ଶକତି ।
ଅଶ୍ୱତ୍ଥାମା ସେହି ଶକ୍ତି ଛେଦିକରି ଦୂରୁ
ସପତସୂର୍ଯ୍ୟ ଚକ୍ରକୁ କାଢ଼ି ତୂଣୀରରୁ ।
ପେଷନ୍ତେ ଭୟେ ପଳାଇ କୁରୁଙ୍କ ସଇନି
ରଖ ଅଶ୍ୱତ୍ଥାମା ବୋଲି ମୁଖେ କଲେ ଧ୍ୱନି ।
ପାଞ୍ଚ ଯୋଜନ ପର୍ଯ୍ୟନ୍ତେ ଥାଟ ପଳାଇଲେ
ଏକା ଧବଳି ରଥ ଯେ ସେଠାରେ ରହିଲେ ।
ଶୂନ୍ୟପୁରେ ବୃନ୍ଦାରକେ ପାଇଲେକ ବ୍ୟଥା
ବଡ଼ ଅସମ୍ଭବ ବେନି ରଥୀ ଯୁଦ୍ଧ କଥା ।
ଅମୋଘ ଶକତି ତେଜ ସୂର୍ଯ୍ୟସମ ଜାଣ
ଦୁଇଶର ଯୋଗ ହୋନ୍ତେ ବାଜେ ରଣ ଝଣ ।
ଦୁହେଁ ସମର କରନ୍ତି ନୁହଁନ୍ତି କେ ଭଙ୍ଗ
ପଥରପ୍ରାୟ ଅଟଇ ଦୁହିଁଙ୍କର ଅଙ୍ଗ ।
ଦୁହେଁ ସମର କରନ୍ତି ଅତି ରୋଷ ବହି
ଅମରମଣ୍ଡଳ ସ୍ୱର୍ଗେ ନ ପାରନ୍ତି ରହି ।
ମୁନି କହନ୍ତି ଶୁଣ ହେ ବୈବସ୍ୱତ ରାଜା
ରଣ ଦେଖି ଦୁର୍ଯ୍ୟୋଧନ ପାଇଲାକ ଲଜ୍ଜା ।
ଶିବ ଯେ ଅସ୍ତ୍ରକୁ ବଳରାମେ ଦେଇଥିଲେ
ସେ ଅସ୍ତ୍ରକୁ ଅଭିମନ୍ୟୁ ମନେ ସୁମରିଲେ ।
ସୁମରନ୍ତେ ସେହି ଅସ୍ତ୍ର ହେଲା ହସ୍ତଗତ
ତାକୁ ଗୁଣରେ ବସାଇ ଧରି ଅଛି ହସ୍ତ ।
ଅଶ୍ୱତ୍ଥାମାର ରଥ ଯେ ଆସେ ବେଗକରି
ଅଭିମନ୍ୟୁ ସଦାନନ୍ଦ ଅସ୍ତ୍ର ଅଛି ଧରି ।
ଅଶ୍ୱତ୍ଥାମା ରଥ ଯହୁଁ ନିକଟେ ଅଇଲା
କୋପେ ଅଭିମନ୍ୟୁ ସେହି ଅସ୍ତ୍ରକୁ ମାଇଲା ।
ପଡ଼ନ୍ତେ ଅଶ୍ୱତ୍ଥାମାର ରଥ ଗଲା ଭାଜି
ଦେଖିକରି ଅଶ୍ୱତ୍ଥାମା ଉଠେ ଗଳଗାଜି ।
ମହାମତ୍ତ ନାଗ ଏକ ଆରୋହିଣ ବେଗେ
ମିଳିଲାକ ଅଶ୍ୱତ୍ଥାମା ଅଭିମନ୍ୟୁ ଆଗେ ।
ଅଭିମନ୍ୟୁକୁ ପାଇଣ ବୋଲେ ଦ୍ରୋଣସୁତ
ସମ୍ଭାଳ ସମ୍ଭାଳ ତୁ ହୋ ଅର୍ଜ୍ଜୁନର ପୁତ୍ର ।
ବକ୍ରମୁନା ଶତଧାର ଧନୁରେ ବସାଇ
ଅଭିମନ୍ୟୁ ଉପରକୁ ବିନ୍ଧିଲେ ନିଠାଇ ।

ଦେଖିଣ ଅପସରିଲା ସୁଭଦ୍ରାନନ୍ଦନ
ବଜ୍ରବାଣ ଘେନି ତାହା କଲାକ ଛେଦନ ।
ଏସନକ କରିବାରୁ ଯୁଦ୍ଧେ ବେନିବୀର
ଆକାଶେ ଅଦୃଶ୍ୟ ହେଲେ ଦେବ ଦିବାକର ।
ବ୍ରହ୍ମଅସ୍ତ୍ର ବାଣେ ତହୁଁ ଅଭିମନ୍ୟୁ ପେଶି
ଦିଅନ୍ତେ ଦ୍ରୋଣି ଉପରେ ପଡ଼ିଲାକ ଆସି ।
ଘାଏ ଅଶକତ ହେଲେ ଗୁରୁଙ୍କର ସୁତ
ରଥରେ ଅଚେତ ହୋଇ ପଡ଼ନ୍ତେ ତ୍ୱରିତ ।
ଧବଳି ରଥ କେତନ ସାରଥି ବାହିଲା
ବ୍ୟୂହ ମଧ୍ୟରେ ଯାଇଣ ପରବେଶ ହେଲା ।
ଦେଖିଲା ବହୁତ ସୈନ୍ୟ ରହିଛନ୍ତି ପୂରି
ରଥୀ ହାତୀ ପଦାତିଙ୍କୁ କେହୁ ଗଣିପାରି ।
ଅନେକ ଦେଶରେ ତହିଁ ପୂରିଥିଲେ ରାଜା
ଅଭିମନ୍ୟୁ ବାଣେ କେତେ କଲେ ପ୍ରାଣତେଜ୍ୟା ।
ଅନବରତ ବାଣ ବିନ୍ଧେ ଅଭିମନ୍ୟୁ
ଅନେକ କ୍ଷତ୍ରିୟଙ୍କର ଛେଦିଲାକ ଧନୁ ।
ଅନେକ ପଦାତି ରଥୀ ହାତୀ ନାଶଗଲା
କେତେ ଯେ ମଲେ ସେଠାରେ କଳନା ନୋହିଲା
ଅମାପ ସୈନ୍ୟ ସେଠାରେ ସମାପତ ଦେଖି
ଦୁର୍ଯ୍ୟୋଧନ ବୋଇଲେକ ହୋଇ ଅତି ଦୁଃଖୀ
ଚକ୍ରବ୍ୟୂହ ବେଢ଼ି ଏତେ ସୈନ୍ୟ ରହିଥିଲେ
ଏକା ଅଭିମନ୍ୟୁ ରଣେ ଏତେକ ପଡ଼ିଲେ ।
ସୈନ୍ୟଭଗ୍ନଦେଖି ଭାବେ ସେ ମାନଗୋବିନ୍ଦ
କେମନ୍ତେ ଏତେ ସୈନ୍ୟଙ୍କୁ କଲା ଏହୁ ଭେଦ
ଦ୍ରୋଣ ଶଲ୍ୟ କୃପାଚାର୍ଯ୍ୟ ଜୟଦ୍ରଥ କର୍ଣ୍ଣ
ବାହ୍ଲୀକ ଭୂରିଶ୍ରବାଦି ଯେତେ ଯୋଦ୍ଧାଗଣ ।
ଏତେ ମହାରଥୀ ମୋରପଡ଼ିଗଲେ ତେଣେ
ନୋହିଲେ ଭେଦି ଏ ବ୍ୟୂହ କାହୁଁ ଆସେ ଜଣେ
ମହାବାତେ ବୃକ୍ଷ ଯେହ୍ନେ ଭାଜି ପଡ଼ିଥାନ୍ତି
ସେପରି ପାଞ୍ଚଯୋଜନେ ସୈନ୍ୟ ପଡ଼ିଛନ୍ତି ।
ଏହାଙ୍କୁ ଚାହିଁ ମୋହର ହଜିଯାଏ ଜ୍ଞାନ
ଭୋ ଦଇବ ସଂସାରରେ ତୁହି ବଡ଼ ଜାଣ ।
କୃଷ୍ଣ ନାହିଁ ପାର୍ଥ ନାହିଁ ନାହିଁ ଭୀମସେନ
ଆବର ନାହିଁ ନକୁଳ ସହଦେବ ଜାଣ ।
ଏକା ପୁତ୍ରଗୋଟି ଆସି କଲା ଏତେ କୃତ୍ୟ
କା ଆଗେ କହିବା ଏହା ଧନ୍ୟରେ ବିଧାତ ।
ମାରରେ ବେଢ଼ି ଏହାକୁ ମରୁ ଏ କୁମର
ଅଧର୍ମ ବୋଲି ମନରେ କିଛି ନ ବିଚାର ।
ଧର୍ମରେ କଷଣ ମୋତେ ଦେଲା ବାଳବଣ୍ଟି
ଥାଟଯାକ ବିଧ୍ୱଂସିଲା ଧର୍ମ କାହିଁ ଅଛି ।
ରାଜାର ମୁଖୁଁ ଏପରି ଯହୁଁ ସେ ଶୁଣିଲେ
ତିନିଲକ୍ଷ ଯୋଦ୍ଧା ଆସି କୁନ୍ତ ପ୍ରହାରିଲେ ।
ଦୁର୍ଜ୍ଜୟ ଯେ ଦୁରାସଙ୍ଗ ରଥ ପଛେ ଥାଇ
ପ୍ରହାରକଲେ ପରିଘ ଶକତି ବୁଲାଇ ।
ଅଲମ୍ବୁଷ ଅଳାୟୁଧ ଏହି ଦୁଇଜଣ
ବେଗେ ରୋଷରେ ଛେଦିଲେ ତାର ବେନିଦ୍ରୋଣ
ଧନୁରେ ଶର ଯୋଚିଣ ସେ ମନ୍ତ୍ରୀ ଶକୁନି
କୁମର ଧନୁରେ ଗୁଣ ପକାଇଲେ ହାଣି ।
ନିଶସ୍ତ୍ର ହୋଇଲା ଯହୁଁ ସୁଭଦ୍ରାର ସୁତ
ଖଡଗ ଘେନି ରଥରୁ ଡେଇଁଲା ତୁରିତ ।
ବିକ୍ରମସିଂହ ପରାୟ କରି ପାଦଗତି
କ୍ଷଣକେ ଛେଦନ କଲା ଶତଶତ ରଥୀ ।
କୂଟେ ତାକୁ ବେଢ଼ାଇଲା ସୈନ୍ୟ କୁରୁରାୟ
ଅଧର୍ମ ଯୁଦ୍ଧ କଲାକ ଧର୍ମେ ନାହିଁ ଭୟ ।
ବହୁ ସୈନ୍ୟ ବେଢ଼ାଇଛି ରାଜା ଦୁର୍ଯ୍ୟୋଧନ
ଏକା ଯୁଦ୍ଧ କରଇ ସେ ଅର୍ଜ୍ଜୁନ ନନ୍ଦନ ।
ଶୁଣ ବୈବସ୍ୱତ ମନୁ ଦ୍ୱାପରର କଥା
ଭାଇର ପୁତ୍ର ମାରନ୍ତି କରିଣ ଅହନ୍ତା ।
କିଏ ସେ ଜେଡୁତା କିଏ ଖୁଡୁତା ଅଟନ୍ତି
ଏମାନେ ଏକତ୍ର ବାଳକୁମରେ ମାରନ୍ତି ।
ଖଡ଼ଗ କୁନ୍ତ ପରିଘ ଗୁରୁଜ ଯେ ଯାଠି
ପ୍ରହାର କଲେକ ସର୍ବେ ଏକାବେଳେ ଉଠି ।
ରଥୀମାନେ ଅଇଲେ ଯେ ଖଡ୍‌ଗ ଫଳାଘେନି
ପାଦଗତିରେ ରାଉତେ ଗଲେ ସସ୍ତ୍ର ତିନି ।
ପାଞ୍ଚଲକ୍ଷ ଯୋଦ୍ଧାଏ ଯେ ଏକମୁଖ ହୋଇ
ବେଢ଼ିଲେ ଚଉପାଶରେ ନ ଦିଶଇ ଭୂଇଁ ।
ଶସ୍ତ୍ର ପିଟିଲାକ ଯହୁଁ ତାହାକୁ ଦୁର୍ମନ
ଫଳା ପାତି ବଞ୍ଚାଇଲା ଅର୍ଜ୍ଜୁନ ନନ୍ଦନ ।
ଫଳାରେ ବାଜିଣ ସେହୁ ହୁଅନ୍ତେ ମସୀଗୁଣ୍ଡା
ଅଭିମନ୍ୟୁ ଆର ହସ୍ତେ ଥିଲା ଏକ ଖଣ୍ଡା ।
ବୁଲାଇ ପିଟିଲା ଯହୁଁ ଦୁର୍ମନ ଉପରେ
ଦୈବେ ସେ ଖଣ୍ଡାବାଜିଲା ଯାଇଁ ଗୁରୁଜରେ ।
ବେନିଖଣ୍ଡ ହୋଇ ତାହା ଭଗ୍ନ ହୋଇଗଲା
ଶୂନ୍ୟହସ୍ତେ ଉଭାହୋଇ ସୁଭଦ୍ରାର ବଳା ।
ଏପରି ଦେଖି ତାହାକୁ ଛାଡ଼ିଲା ସାରଥି
ଶୂନ୍ୟହସ୍ତ ଏକା ହେଲା ପଣ୍ଡୁରାଜା ନାତି ।
ଶୂନ୍ୟହସ୍ତ ହୁଅନ୍ତେ କଲା ସେ ମାଲ ବିନ୍ଧାଣ
ଧାଇଁଯାଇ ତାର ପଛେ ଦୁଷ୍ଟ ଦୁଃଶାସନ ।
ପଛାଡୁ କରିଣ ଗଦା ମାଇଲାକ ଶିରେ
ସେ ଘାତେ ଅର୍ଜ୍ଜୁନସୁତ ପଡ଼ିଲା ମହୀରେ ।

ପୁଣି ଦୁଃଶା ରାଗେ ଗଦା ପ୍ରହାରିଲା ତୋଳି
ଅସ୍ଥି ଚର୍ମ ମାଂସ ତାର ହୋଇଗଲା ଧୂଳି ।
ଅଭିମନ୍ୟୁ ମଲା ବୋଲି ପଡ଼ିଲା ଚହଳ
ଜୟ ଶଙ୍ଖ ବଜାଇଣ ଗଲେ କୁରୁବଳ ।
ଶୂନ୍ୟେ ରହି ଦେଖୁଥିଲେ ବୃନ୍ଦାରକଗଣ
କହିଲେକ ଧିକ ଧିକ ଅଟୁ ଦୁର୍ଯ୍ୟୋଧନ ।
ଇନ୍ଦ୍ର ଆଜ୍ଞାଦେଲେ ତହୁଁ ମାତଳିକି ଚାହିଁ
ଆଦିକି ଆଣ ପୁଷ୍ପକ ବିମାନେ ବସାଇ ।
ଚଳିଲା ସାରଥି ତହୁଁ ଦେବରଥ ଘେନି
ଆକାଶରେ ଶୁଭିଲାକ ଜୟ ଜୟ ଧ୍ୱନି ।
ଉଭାରିଲେ ପଟଛତ୍ର କଲେ ପୁଷ୍ପବୃଷ୍ଟି
ଅମରାଳୟେ ଯାଇ ସେ ସୁର କଲେ ଭେଟି
ଅନେକ ସାନନ୍ଦ ହେଲେ ଦେବ ସୁରପତି
କୋଳେ ବସାଇ ଅନେକ ଉତ୍ସବ କରାନ୍ତି ।
ଅମରେ ବୋଇଲେ ତୁହି ଅଟୁ ଏକଜଣ
ଏବେ କବନ୍ଧକୁ ମାର କରିଣ ତୁ ରଣ ।
ଉଦେକବନ୍ଧ ନାଶିଲା ଅମର ଭୁବନ
ତୋର ଯୁଦ୍ଧେ ସେହି ନିଶ୍ଚେ ହୋଇବ ନିଧନ ।
ଇନ୍ଦ୍ର ବୋଇଲେ ଭାରତେ ଭାରା ନିବାରିଲୁ
ସମର କରି ଅନେକ ସୈନ୍ୟ ତୁ ମାଇଲୁ ।
କବନ୍ଧକୁ ମାର ତୁହି ମମକାର୍ଯ୍ୟ ଅର୍ଥେ
ତୋହର କୀର୍ତ୍ତି ରହିବ ଏ ସ୍ୱର୍ଗ ଜଗତେ ।
ଆଦି ବୋଲେ ମୋ କେତନ ସାରଥି ଯେ କାହିଁ
ଆବର ଧବଳି ରଥ ଆସୁ ସେହି ନେଇ ।
ଏହାଙ୍କୁ ଆଣିଣ ମୋତେ ଦେଲେ ଆଖଣ୍ଡଳ
ନିଶ୍ଚେ ତୁମ୍ଭର ଶତ୍ରୁର ପୂରାଇବି କାଳ ।
ଶତବାର ଜନ୍ମ ମୁହିଁ ମହୀଭାର ଅର୍ଥେ
କହ୍ନାଅବତାରେ କୃଷ୍ଣ ଘେନିଗଲେ ମୋତେ ।
ତ୍ରିଜୀବୀ ସାରଥି ମୋର ରଥେ ହୟଚାରି
ଥିଲେ ସେ ଦାନବ ମୁହିଁ ପକାଇବି ମାରି ।
ଇନ୍ଦ୍ର ବୋଇଲେ କେତନ ଯିବ ରଥ ଘେନି
ବାର୍ତ୍ତା କହି ପଠାଇଲେ କୃଷ୍ଣ ଫାଲ୍‌ଗୁନି ।
ଆଦି ବୋଲେ ସୂତ ଥିଲେ କରିବି ମୁଁ ରଣ
ନିମିଷକେ କବନ୍ଧର ଘେନିବି ଜୀବନ ।
ଯହୁଁ ପ୍ରତିଜ୍ଞା କଲା ସେ ତାରାର ତନୟ
ଶୁଣିକରି ଇନ୍ଦ୍ର ହେଲେ ଆନନ୍ଦ ହୃଦୟ ।
ଶୁଣ ଆହେ ବୈବସ୍ୱତ ମନୁ ନରପତେ
ଏ ଉତ୍ତାରୁ ଯାହା ହେଲା ଶୁଣ ଏକ ଚିତ୍ତେ ।
ଏ ସମୟେ ଦିନକର ପଶ୍ଚିମ ବାହିନୀ
ଯୁଦ୍ଧ ରଥ ଘେନି ସୂତ ପ୍ରବେଶ ସେକ୍ଷଣି ।
ଧବଳି ରଥ ହୋଇଲା ଚାରିଭାଇ କତି
ରଥୁ ଉତୁରି ସାରଥି ସାକ୍ଷାତ କରନ୍ତି ।
ଯୁଧିଷ୍ଠି ଭୀମ ନକୁଳ ଆଉ ସହଦେବ
ସାରଥିକି ପଚାରିଲେ ସମର ପ୍ରସ୍ତାବ ।
ବ୍ୟାକୁଳ ହୋଇ ବୋଇଲେ ଶୂନ୍ୟରଥ ଚାହିଁ
ତୁ ଏକା ଅଇଲୁ ବାବୁ ଅଭିମନ୍ୟୁ କାହିଁ ।
ସାରଥି ବୋଇଲା ତୁମ୍ଭେ ଶୁଣ ଧର୍ମରାୟ
ସମରେ ନିପାତ ହେଲା ତୁମ୍ଭର ତନୟ ।
ଶୁଣି ଶୋକଭରେ କହି ନ ପାରିଲେ କଥା
ମୂର୍ଚ୍ଛିତେ ପଡ଼ିଲେ ଚାରିପାଣ୍ଡବେ ସେ ତଥା ।
ଚେତି ସହଦେବ ବୋଲେ ଶୁଣ ମହୀପତେ
ଶୋକ ସଂହରନ୍ତୁ ଦେବ ଯିବା ଇନ୍ଦ୍ରପ୍ରସ୍ଥେ ।
ଶୋକ ତେଜିଣ ଉଠିଲେ ତହୁଁ ଚାରିଭାଇ
ଶୋକେ ଅବଶ ଶରୀର ନ ପାରନ୍ତି ଯାଇ ।
ପୁତ୍ରର ଗୁଣ ସୁମରି ବାହୁନି କାନ୍ଦନ୍ତି
ସବୁ ବୃତ୍ତିହୁଁ ନିକୃଷ୍ଟ ଏ କ୍ଷତ୍ରିୟ ବୃତ୍ତି ।
ଜୟ ଜୟ ଜଗନ୍ନାଥ ଶଙ୍ଖ ଚକ୍ରଧାରୀ
ସିନ୍ଧୁସୁତା କମଳାଙ୍କ ହୃଦୟ ବିହାରୀ ।
ଯୋଗୀଜନଙ୍କର ତୁମ୍ଭେ ଚିନ୍ତନୀୟ ଧନ
ସଦା ମୋ ହୃଦେ ବିକାଶୁ ତବ ସୁଧା ନାମ ।
ସେହି ନାମ ଗୁଣିଗୁଣି ମୋ ଜୀବନ ଯାଉ
ମୋହଠାରେ ଏହି କୃପାକର ମହାବାହୁ ।
ଏହି ଭିକ୍ଷା ତବପାଦେ ହେ ଜଗତଈଶ
କହଇ ଏ ଦ୍ରୋଣ ପର୍ବେ ଶ୍ରୀ ଶାରଳା ଦାସ ।



## ଅଭିମନ୍ୟୁ ବଧରେ ସଞ୍ଜୟ ଧୃତରାଷ୍ଟ୍ରଙ୍କ କଥୋପକଥନ ଓ ଅର୍ଜୁନର ଅଶୁଭ ଦର୍ଶନ

ଏଥୁ ଅନନ୍ତରେ କଥା ଶୁଣ ବୈବସ୍ୱତ
ଅଭିମନ୍ୟୁ ହେଲା ଯହୁଁ ସମରେ ନିହତ ।
ଜୟଧ୍ୱନି କରିଗଲେ କୌରବଙ୍କ ଥାଟ
ସଞ୍ଜୟ ହକାରି ପୁଚ୍ଛାକଲା ଧୃତରାଷ୍ଟ୍ର ।
ବଡ଼ଇ ଆନନ୍ଦ ଆଜି ଆମର ସଇନି
ଜୟ ଶବଦେ ଉଚ୍ଛୁଳୁ ଅଛଇ ମେଦିନୀ ।
ଜୟ ପତାକା ଉଡ଼ଇ ସବୁରି ରଥରେ
ଭୀମ ପଡ଼ିଲାକ ଆଜି ଆମ୍ଭର ସମରେ ।
ତେଣୁ କି ଆନନ୍ଦ ହେଉଛନ୍ତି ମୋର ଥାଟ
ଭୀମ ନାଶଗଲେ ନିଷ୍କଳଙ୍କ ପଞ୍ଚରାଷ୍ଟ୍ର ।
ଭୀମ ମଲେ ଦୁର୍ଯ୍ୟୋଧନ ହୋଇବ ନିଶ୍ଚିନ୍ତ
ଜୟଦ୍ରଥ କରିଥିଲା ସେବା ବିଶ୍ୱନାଥ ।

ପାର୍ଥ ଛଡ଼ା ସେ ଚାରିଙ୍କି କରିପାରେ ନାଶ
ଦେଇଥିଲେ ଏହିପରି ବର ତାଙ୍କୁ ଈଶ ।
ଜଳଧର ବ୍ୟୂହେ ହରି ନେଲେ ଅର୍ଜୁନଙ୍କୁ
ଜୟଦ୍ରଥ ନାଶିଲା କି ଚାରି ପାଣ୍ଡବଙ୍କୁ
ତେଣୁ ଜୟଦ୍ରଥ ନାମେ ଶୁଭେ ଜୟବାଣୀ ।
ସାଧ୍ୱୀ ପୁଣ୍ୟବତୀ ମୋର ଦୁଃଶାଳା ଦୁଲଣୀ
ଶୁଭଯୋଗେ ଜୟଦ୍ରଥେ ଦେଲି ମୁଁ କୁମାରୀ
ଅସମୟେ ହୋଇଲା ସେ ମୋର ହିତକାରୀ
ସଞ୍ଜୟ ବୋଲେ ବିଚିତ୍ରବୀର୍ଯ୍ୟସୂନୁ ଶୁଣ
ଚକ୍ରବ୍ୟୂହ କଲେ ଭରଦ୍ୱାଜଙ୍କ ନନ୍ଦନ ।
ଅର୍ଜ୍ଜୁନଙ୍କୁ ଘେନିଗଲେ ହରି ଜଳଧରେ
ଅଭିମନ୍ୟୁ ସେନାପତି ଆବର ସମରେ ।
ପ୍ରଥମଦ୍ୱାରେ ଜିଣିଲା ଦ୍ରୋଣଗୁରୁ ସେହି
ଚାରି ପାଣ୍ଡବ ଗଲେ ସେ ଯୁଦ୍ଧ କରି ତହିଁ ।
ଦ୍ୱିତୀୟ ଦ୍ୱାରେ ତୁମ୍ଭର ଜୟଦ୍ରଥ ଥିଲା
ଏହି ଚାରିଙ୍କର ସଙ୍ଗେ ଦ୍ୱନ୍ଦ୍ୱ ଆରମ୍ଭିଲା ।
ଶିବଙ୍କ ବରେ ଜିଣିଲା ସେ ଚାରି ଭାଇଙ୍କୁ
ସେ ଚାରିହେଁ ଛାଡ଼ିଗଲେ ଭୟକରି ତାଙ୍କୁ ।
ସେହି ଦ୍ୱାର ଜିଣିଗଲା ପାର୍ଥର ନନ୍ଦନ
ରଥର ନାମ ଧବଳି ସୂତ ତା କେତନ ।
ଶଙ୍ଖ ଶ୍ୱେତ ପଦ୍ମ ମହାପଦ୍ମ ହୟ ଚାରି
କର୍ଣ୍ଣର ତୁଲେ ହୋଇଲା ସେହି ଦ୍ୱନ୍ଦ୍ୱକାରୀ ।
କର୍ଣ୍ଣକୁ ଜିଣି ତୃତୀୟ ଦ୍ୱାରେ ଭେଦି ପଶି
ଶଲ୍ୟ କୃପଙ୍କୁ ଚତୁର୍ଥ ଦ୍ୱାରରେ ବିଧ୍ୱଂସି ।
ଭୂରିଶ୍ରବା ଅଶ୍ୱତ୍ଥାମା ଜିଣିଲା ପଞ୍ଚମେ
ଏହାଙ୍କ ସମସ୍ତ ସୈନ୍ୟ ମାରିଲାକ ପ୍ରାଣେ ।
ଶତସହସ୍ର ରାଜନ ଅଶୀସସ୍ର ହସ୍ତୀ
ପଞ୍ଚସସ୍ର ତୁରଙ୍ଗମ ଅସଂଖ୍ୟ ପଦାତି ।
ପଏକାର ବାଦ୍ୟକାର ପଡ଼ିଲେ ତ୍ରିକୋଟି
ଏତେକ ଧ୍ୱଂସିଲା ଏକ ସେ କୁମର ଗୋଟି ।
ଜିଣି ନ ପାରିଲେ ତାକୁ ଯୁଝିଣ ସମରେ
କପଟ ଯୁଦ୍ଧେ ମାଇଲେ ସେ ବାଳକୁମରେ ।
ଚାରି ପାଣ୍ଡବଙ୍କୁ ଥାନ୍ତେ ଆଜ ଯେବେ ମାରି
ପଞ୍ଚକଟକରେ ହୋଇଥାନ୍ତେ ଅଧିକାରୀ ।
ପୁନଶ୍ଚ ବୋଇଲା ଶୁଣ ଆହେ ଧୃତରାଷ୍ଟ୍ର
ଅଭିମନ୍ୟୁ ଯୋଗେ ହେବ ତୋତେ ପୁତ୍ରକଷ୍ଟ
ଅନେକ ବାର ଜିଣିଛି ପାର୍ଥ ତୋ ପୁଅଙ୍କୁ
ପ୍ରାଣେ ନ ମାରେ ଉପ୍ରୋଧ କରଇ ଯେ ତାଙ୍କୁ
କେବଳ ମୋହେ ପକାଏ ନ ମାରଇ ପାର୍ଥ
ଭାବେ ଯାଙ୍କ ବିନା ଅନ୍ଧ ହୋଇବେ ଅନାଥ ।
ଏବେ ଉପରୋଧ ଆଉ କେଭେ ନ କରିବ
ଏଣିକି ଦେଖିବୁ ତୋର ପୁତ୍ର କଷ୍ଟ ହେବ ।
ଆତ୍ମସ୍ନେହ ଛାଡ଼ିଲା ସେ ତା ପୁତ୍ର ବିହୀନେ
ଆତ୍ମେ ଅପୁତ୍ରିକ ହେଲୁ ଜାଣ ତୋର ମନେ ।
ଏ ସର୍ବ ଉତ୍ସବ ମୋତେ ଭଲ ନ ଦିଶଇ
ଦୁଃଖର କାରଣ ବିନା ଆଉ ଫଳ ନାହିଁ ।
ନିରପେକ୍ଷ ମନ୍ତ୍ରୀବାକ୍ୟ ଶୁଣି ଧୃତରାଷ୍ଟ୍ର
ଭାବିଲା ଏ ଶିଶୁ ବଧେ ହେଲା ପୁତ୍ରକଷ୍ଟ ।
ଅଭିମନ୍ୟୁ ବଧେ ପଣ୍ଡୁକୁଳହିଁ ବୁଡ଼ିଲା
ଲକ୍ଷ୍ମଣକୁମାର ଆଉ ବର୍ତ୍ତେ କି ଭାବିଲା ।
ମଣିଥିଲା ଭୀମ ସିନା ହୋଇଲା ନିଧନ
ଧିକ କଉରବେ ତୁମ୍ଭେ ଅତ୍ୟନ୍ତ ଅଜ୍ଞାନ ।
ଅନ୍ତଃପୁରେ ଶୁଭିଲା ଯେ ଉଚ୍ଚେ ଶୋକବାଣୀ
ଧୃତରାଷ୍ଟ୍ର ବିଷାଦିତ ହେଲା ତାହା ଶୁଣି ।
ଏହା କହି ଧୃତରାଷ୍ଟ୍ର ହୋଇଲା ମଉନ
ଭୂମିରେ ବସି ତଳକୁ ପୋତିଲା ଆନନ ।
ହସ୍ତିନାପୁରେ ପ୍ରଚାର ହେଲା ଏ ବାରତା
ଶୁଣ ସାବଧାନେ ଏଣେ ପାଣ୍ଡବଙ୍କ କଥା ।
ପୁତ୍ର ବଧ ହୋଇବାରୁ ଗଲେ ଚାରିଭାଇ
ଇନ୍ଦ୍ରପ୍ରସ୍ଥରେ ପ୍ରବେଶ ହୋଇଲେକ ଯାଇ ।
ମୁନି କହିଲେକ ଶୁଣ ଆହେ ନରମଣି
ଜଳଧର ବ୍ୟୂହେ ଥିଲେ କୃଷ୍ଣ ଫାଲଗୁନି ।
ଅଭିମନ୍ୟୁ ବଧ ହେବା ଜାଣି ଦେବହରି
ଘଡ଼ିକରେ ଜଳଧର ବ୍ୟୂହ ଦେଲେ ସାରି ।
ତିନିଶତ ନବସାଗର ଯେ ଅଟେ ଯୋଦ୍ଧା
ପାଞ୍ଚକ୍ଷୌଣୀ ବଳ ଏକା ଅର୍ଜ୍ଜୁନ ନିରୋଧି ।
ଅରଜୁନଙ୍କୁ ଶ୍ରୀହରି ମାୟା କରିଥିଲେ
ରକ୍ତବୀର୍ଯ୍ୟ ପ୍ରାୟ ସୈନ୍ୟ ମାରୁ ନ ସରିଲେ ।
ହୋଇଲାକ ଅଭିମନ୍ୟୁ ବଧ ଯେତେବେଳେ
ଜଳଧର ବ୍ୟୂହ ହରି ନାଶକରି ହେଲେ ।
ଜୟ ଶଙ୍ଖ ବଜାଇଲେ ପ୍ରଭୁ ଆଦିମୂଳ
ବାହୁଡ଼ା ବିଜୟ କଲେ ହୋଇ କୁତୂହଳ ।
ଜୟ ତୁ ଜଗଦୀଶ୍ୱର ଜଗନ୍ନନଈଶ
ମାୟାଧର ପୁରୁଷ ନ ଜାଣୁ ହେବ କିସ ।
ନିର୍ମଳ ଜଳେ କ୍ରୀଡ଼ନ୍ତି ଯେହ୍ନେ ହଂସପନ୍ତି
ତଥା ମୋ ହୃଦେ ବିଳସେ ଶ୍ରୀକୃଷ୍ଣ ଭାରତୀ ।
ବୁଡ଼ିଲା ମୋ ସର୍ବମୋହ କୃଷ୍ଣଭକ୍ତି ଯୋଗେ
ବାଗ୍‌ଦେବୀ ଭଣ୍ଡାରେ ବିଳସଇ ମନରଙ୍ଗେ ।
ସଂସାର ସାଗର ଅଟେ ଜନ କାଳଫାଶୀ
ଜଗଦ୍‌ବନ୍ଧୁ ନାଥ ମୋତେ ତବ ପୁର ଦେସି ।

ମାୟାର ଭଣ୍ଡାର ଯେହୁ ମାୟାଧର ନାମ
ଶ୍ରୀକୃଷ୍ଣ ଚରଣେ ମୋର ଶତେକ ପ୍ରଣାମ ।
ଅଗାଧ ସାଗରେ ମୁଁ ଯେ ଦେଖିଲି ଅନୀତି
ଚରାଚରଙ୍କର ଦେବ ତୁ ପରମ ଗତି ।
ଯୋଗେ କରନ୍ତି ତୁମ୍ଭଙ୍କୁ ଋଷି ସଦା ଚିନ୍ତା
ନାଶକର ଦଣ୍ଡରୁ ଯେ ତୁହି ଉଦ୍ଧାରନ୍ତା ।
ମନ ବଚନ କର୍ତ୍ତବ୍ୟେ ସଦା ମୁଁ ଭାବଇ
ସଂସାରସାଗରୁ ମୋତେ ତାର ରମାସାଇଁ ।
ନ ପଢ଼ିଲି ନ ଦେଖିଲି ନ ଜାଣେ ମୁଁ କିଛି
ତବପରସାଦେ ଶବ୍ଦ ମାତ୍ର ମୁଁ ଶୁଣିଛି ।
ହୃଦୟକୁ ଅଳଙ୍କାର ତବ ନାମ ଗୋଟି
ତୁମ୍ଭେ ଦୟା କଲେ ଭବମୋହ ଯିବ ତୁଟି ।
ନୀଳ ସୁନ୍ଦର ନାମରେ ଯେଉଁ ମହୀଧର
କରିଛନ୍ତି ବାସ ଯାଇଁ ତହିଁର ଉପର ।
ସର୍ବଜନ ଚିନ୍ତାମଣି ଶ୍ରୀପୁରୁଷୋତ୍ତମ
ହୃଦଗତେ ଭାବଇ ମୁଁ ଶ୍ରୀରାମ ଶ୍ରୀରାମ ।
ତୁଳସୀ ବଲ୍ଲଭଙ୍କର କମଳଚରଣେ
ଶୂଦ୍ରମୁନି ଶାରଳା ଯେ ଚିନ୍ତା କରେ ମନେ ।
ବଦନ୍ତି ଅଗସ୍ତି ଶୁଣ ବୈବସ୍ୱତ ମନୁ
ସାତ୍ୟକିକୁ ରାଇଲେ ଯେ ଦେବ ଧର୍ମସୂନୁ ।
ତୁ ମୋର ବଚନ ଏବେ ଶୁଣସିରେ ବାବୁ
ଜଳଧର ବ୍ୟୂହଯାଏ ଏହିକ୍ଷଣି ଯିବୁ ।
ନିଃଶଙ୍କରେ ଯୁଦ୍ଧକରେ ତହିଁ ଅରଜୁନ
ଚକ୍ରବ୍ୟୂହେ ଅଭିମନ୍ୟୁ ହେବାର ନିଧନ ।
ଯେବେ କି ତହିଁ ବାରତା ପାଏ ଅରଜୁନ
ପୁତ୍ରଶୋକେ ହରାଇ ନ ଦିଏ ନିଜ ପ୍ରାଣ ।
ପୁତ୍ରର ନିଧନ ହେବା ଯେବେଟି ଶୁଣିବ
ନ ପୁଣ ଇନ୍ଦ୍ରପ୍ରସ୍ଥକୁ ବାହୁଡ଼ିଣ ଯିବ ।
ହେ ଧର୍ମ ନ କହୁ କେହି ଏହା ପାର୍ଥଆଗେ
ଶୁଣିଲେ ରଣକୁ ଯିବ ସେହିକ୍ଷଣି ରାଗେ ।
ଏହା କହି ଶୋକାକୁଳ ହେଲେ ଯୁଧିଷ୍ଠିର
ସେହିକ୍ଷଣି ସାତ୍ୟକି ଯେ ହୋଇଲା ବାହାର ।
ସାତ୍ୟକି ଯାଆନ୍ତେ ଶୋକେ ଧର୍ମ ମହୀପତି
ଆହାରେ ନନ୍ଦନ କହି ପଡ଼ିଗଲେ କ୍ଷିତି ।
ଭାଇମାନଙ୍କ ଯତନେ ପୁଣି ଲଭି ଜ୍ଞାନ
ବିକଳେ କାନ୍ଦନ୍ତି ଭାଳି ପୁତ୍ର ଗୁଣମାନ ।
ତୁ ଗୁଣବନ୍ତ ନନ୍ଦନ ପ୍ରାଣ ପଞ୍ଚଭୂତ
କୁଳମଣ୍ଡନ ମୋହର ତୁହି ଆରେ ସୁତ ।
ସୋମବଂଶ ଉଦ୍ଧାରଣ ଅଟୁ ବଳବନ୍ତା
ବୁଡ଼ିଲା ସୋମବଂଶକୁ ତୁହି ଉଦ୍ଧାରନ୍ତା ।

ପୁନଃପୁନଃ ଯୁଧିଷ୍ଠିର କାନ୍ଦି ମହୀଲୋଟି
କେ ମୋହର ଲିଭାଇଲା କୁଳରୁ ଦୀପଟି ।
ଯୁଧିଷ୍ଠିଙ୍କୁ କୋଳେ ଧରି କାନ୍ଦେ ଭୀମସେନ
କାହିଁଗଲୁ ଅଭିମନ୍ୟୁ କୁଳର ମଣ୍ଡନ ।
ବୀରବର ସୁନ୍ଦର ତୁ କକ୍ଷା ଜଗଜେଠି
ଏପରି କହି ପାଷାଣେ ଶିର ଦେଲା ପିଟି ।
ନିର୍ଲ୍ଲଜ ଆତ୍ମା ମୋହର ରହିଛି କିପାଇଁ
ନିଷ୍ଟେ ବିଷ ଖାଇ ମୁହିଁ ପ୍ରାଣ ତେଜିବଇଁ ।
ପୋଡୁ ପୋଡୁ ଏ ଜୀବନ ଏହିକ୍ଷଣି ଯାଉ
ଭାଇର ଆସିବାଯାଏ ଯେସନେ ନ ଥାଉ ।
ବାଳପୁତ୍ର ନାଶଗଲା ମୋହର ଦେଖନ୍ତେ
କିସ ବୋଲିବ ଅର୍ଜ୍ଜୁନ ଆସିକରି ମୋତେ ।
କାନ୍ଦଇ ଭୀମସେନ ଯେ ଭୂମିପରେ ପଡ଼ି
ଯାଉପ୍ରାଣ ବୋଲି କହି ଶିରେ ମୁଣ୍ଡକୋଡ଼ି ।
ଆମ୍ଭର ଜୀବନ କାଳ ନିକଟ ହୋଇଲା
ତୋତେ ମରାଇବାକୁ ଏ ପ୍ରାଣ ଯା ରହିଲା ।
କିମ୍ପାଇଁ ନ ଫୁଟିଗଲା ମୋର ବେନି ଆଖି
ମୁହିଁ ଯା ବଞ୍ଚି ରହିଲି ତୋ ମରଣ ଦେଖି ।
ଲୋକେ ଯେ କିସ ବୋଲିବେ ସାଂସାରିକ ଧର୍ମେ
ପାଣ୍ଡବେ ଦେଖନ୍ତେ ପୁତ୍ର ପଡ଼ିଲା ସଂଗ୍ରାମେ ।
କୁପୁରୁଷେ ଗାଇହେବେ ଏ ଅଖ୍ୟାତି ବାଣୀ
ଆମ୍ଭ ଦେହ ସହିବ କି ଏହି କଥା ଶୁଣି ।
କିମ୍ପାଇଁ ରହିଛି ପିଣ୍ଡେ ଏ ନିର୍ଲ୍ଲଜ ଆତ୍ମା
କି ବୋଲି ବୋଲିବ ପାର୍ଥ ଶ୍ରୀକୃଷ୍ଣ ମହାତ୍ମା ।
ଉଭୟ କୁଳକୁ ଥିଲା ଏହି ପୁତ୍ର ଗୋଟି
ଭୀମର ରୋଦନ ଶୁଣି ନକୁଳ ଯେ ଉଠି ।
ପଥର ଘେନି ଆପଣା ଉର ପରେ ତାଡ଼ି
ବିକଳେ କାନ୍ଦିଲା ସେହି ଦେଇ ଘୋରରଡ଼ି ।
ଆହାରେ ନନ୍ଦନ ତୁହି ଷୋଡ଼ଶ ସୁନ୍ଦର
ଆମ୍ଭଙ୍କୁ ଛାଡ଼ିଣ ଗଲୁ ଶମନ ନଗର ।
ତୋତେ ସଙ୍ଗେ ଘେନିଗଲୁ କରିବାକୁ ରଣ
ଯମକୁ ଦେଇ ଅଇଲୁ ଆମ୍ଭେ ଚାରିଜଣ ।
ତୋ ବିନା ସବୁ ଦିଶଇ ଆମ୍ଭଙ୍କୁ ଅନ୍ଧାର
ତୋ ସମ ପୁତ୍ର ହରାଇ ରହିଛି ଶରୀର ।
ଜନଙ୍କ ମୁଖେ ପାଇବୁ ଆମ୍ଭେ ବଡ଼ ଲାଜ
କ୍ଷତ୍ରୀକୁଳକୁ ଦୂଷଣ ଜୀବନ୍ତେ କି କାର୍ଯ୍ୟ ।
ଶୋକ ବିକଳେ ପଡ଼ନ୍ତି ଭୂମିର ଉପରେ
ମହାବୃକ୍ଷ ପଡ଼େ ଯେହ୍ନେ ବାତ ଆଘାତରେ ।
ସହଦେବ କରିଥିଲେ କୋଳ ଯୁଧିଷ୍ଠିଙ୍କି
କହିଲେ କାହୁଁ ପାଇବା ଆଉ ତାକୁ ନିକି ।

ବାହ୍ୟ ସାକ୍ଷାମେ କହନ୍ତି ମନେ ଗୁରୁବ୍ୟଥା
କହିଲେ ଯେ ନ ସରିବ ଯୁଧିଷ୍ଠି ଅବସ୍ଥା ।
ମିଛେ ଦ୍ୱନ୍ଦ୍ୱରେ ପଶିଲି ରାଜ୍ୟ ପୋଡୁ ପୋଡୁ
ସୁପୁତ୍ର ହରାଇ ଆରେ ପ୍ରାଣ ଯା ନ ଛାଡୁ ।
ବିକଳେ ଯୁଧିଷ୍ଠିଙ୍କର ଦହେ ପଞ୍ଚ ଆତ୍ମା
ପୁଣି ଭୂମିରେ ପଡ଼ିଲେ ବିକଳେ ମହାତ୍ମା ।
ଅଭିମନ୍ୟୁ ସମରରେ ପଡ଼େ ଯେତେବେଳେ
ଶୂନ୍ୟଭୁବନ ଛାଡ଼ିଣ ଗଲେ ଦିଗପାଳେ ।
ଷଡ଼ଦଣ୍ଡ ଦିବା ଥାଉଁ ସୂର୍ଯ୍ୟ ଅସ୍ତଗଲା
ମେଦିନୀ ଦଲଦଲିତ ଅନ୍ଧାର ଦିଶିଲା ।
ଆକାଶରୁ ପଡ଼ିଲା କି ଖସି ନିଶାପତି
ଦିଶିଲା ଯୁଗଅନ୍ତକ ପ୍ରାୟ ବସୁମତୀ ।
ସୋମବଂଶ ଉଦ୍ଧାରଣ ଯେଉଁ ପୁତ୍ରଗୋଟି
ତାହାର ନିଧନେ ଲେଉଟିଲା ନବସୃଷ୍ଟି ।
ପୃଥିବୀର ଅଧିପତି ଯହୁଁ ନାଶଗଲା
ଉଲ୍‌କାପାତ ପ୍ରାୟ ଚଉଦିଗ ଯେ ଦିଶିଲା ।
ତେଣେ ଅନ୍ଧାର ଦେଖିଣ ପୁଚ୍ଛେ ଫାଲ୍‌ଗୁନି
ଚକ୍ରପ୍ରାୟ କିମ୍ବା ବୁଲୁଅଛି ପୁର ତିନି ।
ଆଜ ଯେ ମକର ଶୁକ୍ଳ ତ୍ରୟୋଦଶୀ ତିଥି
କିମ୍ପାଇଁ ସତେଜ ଦିଶୁନାହିଁ ଛାୟାପତି ।
ଏତେଦିନ ଥାଉଁ ଥାଉଁ କିମ୍ପା ଅଂଶୁମାଳୀ
ତେଜୋହୀନ ହୋଇକରି ଦିଶଇ ଏଭଳି ।
ଗୋବିନ୍ଦ ବୋଇଲେ ପାର୍ଥ ସମର ଗହନେ
ସ୍ୱଚ୍ଛ ନ ଦିଶନ୍ତି ରେଣୁ ଉଡ଼ି ଦିଗମାନେ ।
ବହୁ ବ୍ରାହ୍ମଣ ଚଣ୍ଡାଳ ରଣେ ହେଲେ ନାଶ
ତାହାଙ୍କ ଆତ୍ମା ସର୍ବତ୍ର କରଇ ବିଳାସ ।
ଯେଣୁକରି ସର୍ବଆତ୍ମା ଅଟେ ଅନାତୁଷ୍ଟି
ତେଣୁ ଉତପାତ ଦିଶୁଅଛି ସର୍ବସୃଷ୍ଟି ।
କୃଷ୍ଣବାକ୍ୟେ ଭ୍ରାନ୍ତି ଛାଡ଼ି ସୁଭଦ୍ରାର ନାହା
ବୋଇଲେ କୁରୁକ୍ଷେତ୍ରକୁ ରଥ ମୋର ବାହା ।
ଅର୍ଜ୍ଜୁନ ବଚନ ଶୁଣି ଦେବ ମଧୁହାରୀ
ରଣଭୂମିରେ ପ୍ରବେଶ ରାତ୍ର ଦଣ୍ଡ ଚାରି ।
ଦେଖିଲେକ ଅଶ୍ୱ ଗଜ ପଦାତିକ ପିଣ୍ଡ
ଛିନ୍ନଛତ୍ରେ ପଡ଼ିଅଛି ହୋଇ ଖଣ୍ଡ ଖଣ୍ଡ ।
ପାଞ୍ଚଯୋଜନ ପର୍ଯ୍ୟନ୍ତେ ବହେ ରକ୍ତ ମାଂସ
ବିହରନ୍ତି ନିଶାଚରୀ ଆବର ରାକ୍ଷସ ।
ବ୍ୟାଘ୍ର ଭଲ୍ଲୁକ ଆବର ଶୃଗାଳଏ ଆଦି
ଆନନ୍ଦେ ପିଅନ୍ତି ରକ୍ତ ମାଂସ ଖାନ୍ତି ଖେଦି ।
ଚାମୁଣ୍ଡା ଡାକିନୀ ଭଇରବୀ ମେଳ ହୋଇ
ଯୋଗିନୀ ବେତାଳଗଣ ସଙ୍ଗତରେ ନେଇ ।
ବିବସନୀ ବିକରାଳୀ କେଶ ଯେ ମୁକୁଳା
ମେଦ ମାଂସ ଖାଆନ୍ତି ହୋଇଣ କୁତୂହଳା ।
ଶବ୍ଦେ କମ୍ପେ ପୃଥ୍ୱୀ ଲହଜିହ୍ୱା ମତୁଆଳୀ
କ୍ଷେପି ନାଚନ୍ତି ଗାବନ୍ତି ଦ୍ୟନ୍ତି ହୁଳହୁଳି ।
ଦେଖିକରି ଆନନ୍ଦିତ ହରି ଧନଞ୍ଜୟ
ବୋଇଲେ ଭୀମ ଏ ସବୁ କରିଛନ୍ତି କ୍ଷୟ ।
ଦେଖି ଆସୁ ଆସୁ ପାର୍ଥ ବୋଲନ୍ତି ଏପରି
ଇନ୍ଦ୍ରପ୍ରସ୍ଥ ଗଲେ ଏହା ବୁଝିବା ପଚାରି ।
ଏ ସମୟେ ଫେରାଇଲେ ରଥ ଦେବସ୍ୱାମୀ
ଛାଡ଼ିଲେକ ଯହୁଁ କୃଷ୍ଣ ପାର୍ଥ ରଣଭୂମି ।
ଆସୁ ଆସୁ ଶ୍ରୀକୃଷ୍ଣଙ୍କୁ ପୁଚ୍ଛେ ଅରଜୁନ
ଘନ ଘନ ସ୍ଫୁରେ କିପାଁ ମୋ ବାମ ନୟନ ।
ହୃଦୟ ବିକଳ ଆଉ ଦହେ ପଞ୍ଚଭୂତେ
ମଙ୍ଗଳ ତ ନ ଦିଶଇ ମୋତେ ଏ ଜଗତେ ।
ବାମଭାଗେ ରାବଦ୍ୟନ୍ତି ବହୁତ ଭଲୁକ
ଆଗେ ବିକଟାଳ ରାବ ଦିଅନ୍ତି ଜମ୍ବୁକ ।
ଅଭୂତେ ନୟନୁ ମୋର ବହେ ଅଶ୍ରୁବାରି
ଶୋକରେ ଗାଣ୍ଡିବ ଧନୁ ନ ପାରଇ ଧରି ।
ପ୍ରମାଦ ଦିଶଇ ବଇକୁଲ୍ୟ ପଞ୍ଚଆତ୍ମା
କି ବିପଦ ଘଟିଲା କି କହ ହେ ମହାତ୍ମା ।
ଚାରିଗୋଟି ଭାଇ ମୋର ପଡ଼ିଲେ କି ରଣେ
ଚକ୍ରବ୍ୟୂହେ କି କପଟ କଲେ ଗୁରୁଦ୍ରୋଣେ ।
ହେ ହରି ଶୁଖିଲା ଡାଳେ ବସି ରାବେ କାକ
ସମ୍ମୁଖରେ ବିକଟାଳେ ଦେଉଅଛି ଡାକ ।
ଗୋବିନ୍ଦ ବୋଇଲେ ଶୁଣ ଦ୍ୱନ୍ଦ୍ୱରେ ପଶିଲେ
ଜୟ କି ଅଜୟ ହେଉ ଏକ ହୁଏ ଭଲେ ।
ପୁଣି ବୋଇଲେ ଯଦ୍ୟପି ବ୍ରହ୍ମା ଇନ୍ଦ୍ର ରୁଦ୍ର
ତୋ ଭାଇଙ୍କୁ ନ ପାରିବେ ଦେଇ ସେ ବିପଦ ।
ଉତପାତ କାଳ ଯେବେ ହୁଅଇଟି ପାର୍ଥ
ଲୋକଙ୍କୁ ଦେଖାଯାଏ ତ ଏପରି ବହୁତ ।
ଆଉ ଯେତେ ଅମଙ୍ଗଳ ଦେଖେ ଫାଲଗୁନି
କୂଟେ ବଞ୍ଚାଇ ଶ୍ରୀକୃଷ୍ଣ ଆସନ୍ତି ଯେ ଘେନି ।
ସାତ୍ୟକି ଡାକଇ ମହାବଳ ପର୍ବତରେ
ପାଣ୍ଡବ ବିଜୟୀ କୃଷ୍ଣ ଆସ ହେ ସତ୍ୱରେ ।
ଏହି ପରାୟେ ସଂକେତ କୃଷ୍ଣେ କହିଗଲା
ରଥେ ଥାଇ ଅରଜୁନ ଜାଣି ନ ପାରିଲା ।
ଏ ସମୟେ ଇନ୍ଦ୍ରପ୍ରସ୍ଥେ ପ୍ରବେଶିଲେ ଯାଇ
ଦେଖିଲେକ ଶିରୀହୀନ ଭୁବନ ଦିଶଇ ।
ସ୍ୱାମୀ ବିହୀନ ପରାୟେ ନାରୀଏ ଦିଶନ୍ତି
ଗତଆତ୍ମାପରି ସର୍ବ ଜନ ବସିଛନ୍ତି ।

ଯେତେକ ଜନମାନଙ୍କୁ ଦେଖେ ସବ୍ୟସାଚୀ
ଲେଶମାତ୍ର କାର ମୁଖେ ହର୍ଷ ନାହିଁ କିଛି ।
ସର୍ବଜନ ଚିନ୍ତାମଣି ପୁରୁଷ ଉତ୍ତମ
ମୋହଠାରେ କୃପାକର ହେ ଚକାନୟନ ।
ତୁଳସୀବଲ୍ଲଭ ପାଦଯୁଗ କରି ଆଶ
ଦ୍ରୋଣପର୍ବ ଲେଖଇ ଯେ ଶ୍ରୀଶାରଳା ଦାସ ।
ଜୟ ଜୟ ବାକ୍ୟଦେବୀ ଚରଣେ ଶରଣ
ପ୍ରାର୍ଥନା କରଇ ମାତ ହୁଅ ସୁପ୍ରସନ୍ନ ।



## ପାଣ୍ଡବ ଆଦିଙ୍କ କ୍ରନ୍ଦନ

ପୁନପରି ପୁଛାକଲେ ମନୁ ଦଣ୍ଡଧର
ପୁରଦ୍ୱାରେ ପ୍ରବେଶିଲେ ପାର୍ଥ ଚକ୍ରଧର ।
ତଦପରେ ଯେଉଁ କଥା ହେଲା କହ ମୋତେ
ଶୁଣିବାକୁ ଶ୍ରଦ୍ଧାମୋର ହେଉଅଛି ଚିତ୍ତେ ।
କହନ୍ତି ଅଗସ୍ତି ମୁନି କର ଅବଧାନ
ଯାହା ପଚାରିଲ ରାଜା ମନଦେଇ ଶୁଣ ।
ରଥୁ ଓହ୍ଲାଇଣ ଗଲେ ପାର୍ଥ ଯଦୁନାଥ
ଦେଖିଲେ ବାହ୍ୟମନ୍ଦିରେ ବିଜେ ଧର୍ମସୁତ ।
ଯୁଧିଷ୍ଠିରଙ୍କୁ ପ୍ରଣାମ କରିଣ ସେକ୍ଷଣି
ମନ ମଧ୍ୟରୁ ଛାଡ଼ିଲେ ଭ୍ରାନ୍ତି ଫାଲଗୁନି ।
ମସ୍ତକରେ ହସ୍ତଦେଇ ପୁଚ୍ଛେ ଧନଞ୍ଜୟ
ଚକ୍ରବ୍ୟୂହ ଜୟ କଲେ କରି କି ଉପାୟ ।
ଅସାର ପ୍ରତିଜ୍ଞା କରୁଥିଲେ ଗୁରୁଦ୍ରୋଣେ
ସଂଗ୍ରାମରେ ପଡ଼ିଲେକ କେଉଁ ରାଜାମାନେ ।
ଚକ୍ରବ୍ୟୂହ କେଉଁପରି ପାରିଲ ଯେ ଭେଦି
ରଣସ୍ଥଳେ ପଡ଼ିଛନ୍ତି ବହୁତର ଯୋଦ୍ଧୀ ।
ଏହିପରି ପୁଣି ପୁଣି ପୁଚ୍ଛେ ଧନଞ୍ଜୟ
ଶୋକଭରେ ନ ପାରନ୍ତି କହି ଧର୍ମରାୟ ।
ପୁଣି ଅର୍ଜୁନ ବୋଇଲେ ପ୍ରଥମ ଦୁଆରେ
ଦ୍ରୋଣଗୁରୁ ଜଗିଲେକ ତାଙ୍କ ସମ୍ମୁଖରେ ।
ଉଭା ହୋଇ ରଣଗୋଳ କରି କେଉଁଜନ
ତାହାଙ୍କୁ ଜିଣିଲା ଏହା କହନ୍ତୁ ଆପଣ ।
ଦ୍ୱିତୀୟ ଦ୍ୱାର ଜଗିଣ ଥିଲେ ଜୟଦ୍ରଥ
ପାଣ୍ଡବେ ଜିଣିବା ବର ଦେଲେ ବିଶ୍ୱନାଥ ।
କେହୁ ସମର୍ଥ ହୋଇଲା ତାକୁ ଜିଣିବାକୁ
ସେ ସମର୍ଥ ଭୂରିଶ୍ରବା ଆବର ଶଲ୍ୟକୁ ।
ଭୀମସେନ ବୋଇଲେକ ଶୁଣ ସବ୍ୟସାଚି
ଚକ୍ରବ୍ୟୂହ ଭେଦ ଆମ୍ଭେ ନ ଜାଣୁ ଯେ କିଛି ।
ଅଭିମନ୍ୟୁ ବୋଇଲା ମୁଁ ଏହା ପାରେ ଭେଦି
ବାହୁଡ଼ିବାବେଳେ ତୁମ୍ଭେ କରିବଟି ବୁଦ୍ଧି ।
ଆମ୍ଭେ ବିଚାରିଲୁ ଚାଲ ଯିବା ଏକାବେଳେ
କୃଷ୍ଣାର୍ଜୁନ ପ୍ରବେଶିବେ ବାହୁଡ଼ିବା କାଳେ ।
ପ୍ରଥମ ଦ୍ୱାରେ ସେ ଏକା ନାରାଚେକ ବିନ୍ଧି
ଦ୍ରୋଣଙ୍କ ରଥ ସାରଥି ହୟବର ଛେଦି ।
ହାବୋଡ଼ି ଶରେ ପଡ଼ିଲେ ଯହୁଁ ଦ୍ରୋଣଗୁରୁ
ଅନେକ ଯୋଦ୍ଧାଙ୍କୁ ପୁତ୍ର ମାଇଲା ଭିତରୁ ।
ଦ୍ୱିତୀୟ ଦ୍ୱାର ଜଗିଣ ଜୟଦ୍ରଥ ଥିଲେ
ପୁତ୍ରଶରେ ତିନିସସ୍ର ରାଜନ ପଡ଼ିଲେ ।
ଭୟକରି ଜୟଦ୍ରଥ ଦ୍ୱାର ଛାଡ଼ିଦେଲା
ପୁଣି ଜୟଦ୍ରଥ ଭୟ ତେଜିଣ ଉଠିଲା ।
ଭିତରକୁ ଅଭିମନ୍ୟୁ ପସାଇ ପଶିଲା
ଛାଡ଼ି ନ ଦେଇ ଆମ୍ଭଙ୍କୁ ରଥ ଓଗାଳିଲା ।
ଏକା କୁମର ଭିତରେ ଗଲା ରଥ ବାହି
ତୃତୀୟ ଦ୍ୱାରେ ଜଗିଣ କର୍ଣ୍ଣ ଥିଲା ରହି ।
ଅନେକ ଯୁଦ୍ଧ କଲାକ କର୍ଣ୍ଣ ତାହା ତୁଲେ
ଅଭିମନ୍ୟୁ ଶରାଘାତେ ବହୁସୈନ୍ୟ ମଲେ ।
କର୍ଣ୍ଣକୁ ବିରଥ କରି ଗଲା ଅଭିମନ୍ୟୁ
ଶଲ୍ୟ କୃପଙ୍କୁ ଜିଣିଲା ତୋହର ଯେ ସୂନୁ ।
ଭୂରିଶ୍ରବା ଅଳମ୍ବୁଷ କାଶୀ କଉଶିକ
ଦଶସସ୍ର ରାଜା ତୁଲେ ସଇନ୍ୟ ଅନେକ ।
ଏକ ଏକ ଶରେ ସର୍ବେ ପଡ଼ନ୍ତେ ଧରଣୀ
ଅଧର୍ମ ଯୁଦ୍ଧ ଆରମ୍ଭ କଲା କୁରୁମଣି ।
ପାଞ୍ଚ ସହସ୍ର ରାଜାଙ୍କୁ ଘେନି କୁରୁରାୟ
ବେଢ଼ିଣ ମାଇଲେ ବାବୁ ତୋହର ତନୟ ।
ଜୟଦ୍ରଥ ହେତୁ ପୁତ୍ର ପଡ଼ିଲା ବିପଦେ
ଅଭିମନ୍ୟୁ ପ୍ରାଣତ୍ୟାଗ ହୋଇଲାକ ହାଦେ ।
ଭୀମସେନ ମୁଖୁଁ ଏହି ବଚନକୁ ଶୁଣି
ପଡ଼ିଲା ସେ ଧନଞ୍ଜୟ ବଜ୍ରପାତ ମଣି ।
ଅସାକ୍ଷମ ହୋଇ ଯହୁଁ ପଡ଼ିଲା ବିଭସ୍ତି
ଯାଇ କୋଳରେ ଧଇଲେ ତାହାକୁ ଶ୍ରୀବତ୍ସି ।
ଜଳଘେନି ତା ମୁଖରେ ସିଞ୍ଚିଲେ ଅଚ୍ୟୁତ
ଚେତା ପାଇ ପାର୍ଥ ଶୋକ କଲେକ ବହୁତ ।
କେଣେ ଛାଡ଼ିଗଲୁ ଆରେ ମୋ ପିଣ୍ଡ ପରାଣ
ମୋ ନେତ୍ରପିତୁଳା ତୁହି ଅଟୁରେ ନନ୍ଦନ ।
କେବଣ ପାତକ ମୁହିଁ କରିଥିଲି ପୂର୍ବେ
ତହିଁକି ଏ ଶାସ୍ତି ବିହି ବିହିଲାକ ଏବେ ।
ମୁହିଁ ନିଉଛୁଣା କିମ୍ବା ନୋହିଲି ବିନାଶ
ବଂଶ ଉଦ୍ଧାରିବୁ ବୋଲି କରିଥିଲି ଆଶ ।
ଏବେ ମୁହିଁ ଜୀଇଁଅଛି ଚାଲିଗଲୁ ତୁହି
ଆଉ ଥରେ ଆସି ଯାଅ ମୋତେ ଦେଖାଦେଇ

ପୁଣ ପୁଣ ଶୋକେ ପାର୍ଥ ପଡ଼ଇ ଭୂମିରେ
ବାତାଘାତେ ରମ୍ଭାବୃକ୍ଷ ପଡ଼ିଲା ପ୍ରକାରେ ।
ଅର୍ଜ୍ଜୁନର ଶୋକ ଦେଖି ହରି ଶୋକ କଲେ
ଆରେ ଅଭିମନ୍ୟୁ କାହିଁଗଲୁ ତୁ ବୋଇଲେ ।
ଯଦୁକଳ ନନ୍ଦନ ମୋ କେହୁ ନେଲା ହରି
କେବଣ ବାପୁଡ଼ା ମୋର ହୋଇଲା ବଇରି ।
ଅକାଳ ବାରତା ଆସି ଶୁଣା ହେଲା ମୋତେ
ପୁତ୍ର ବିନାଶ ହୋଇଲା ପିଅର ଦେଖନ୍ତେ ।
ନନ୍ଦ ଯଶୋଦାଙ୍କ ମୁଖ ଚାହିଁବି କେମନ୍ତେ
ଅନେକ ଶୋକ କରନ୍ତି ଦେବ ଜଗନ୍ନାଥେ ।
ଯେ ପ୍ରଭୁ ମାୟାରେ ବଶ ହୋଇଛି ସଂସାର
ସେ ବାହ୍ୟେ କରନ୍ତି ଶୋକ ଆନନ୍ଦ ଭିତର ।
ଅର୍ଜ୍ଜୁନର ଶୋକକଥା କହିଲେ ନ ସରେ
ପୃଥ୍ୱୀ ଫାଟେ ପୁଣି ପୁଣି ପଡ଼ଇ ମୋହରେ ।
ଶୂରବନ୍ତ ସୁନ୍ଦରରେ କକ୍ଷା ଜଗଜେଠି
ତୋ ନାମ ଧଇଲେ ସ୍ୱର୍ଗେ ଚମକିଣ ଉଠି ।
ଆରେ ବାବୁ ବଡ଼ଦୁଃଖ ପଡ଼ିଲାକ ମୋତେ
ତେଣୁ ତୁହି ନାଶଗଲୁ ମୋହର ଦେଖନ୍ତେ ।
ପିଣ୍ଡର କାରଣ ତୁହି ଆଦରର ଧନ
ତୋ ବିନା କିପରି ମୁହିଁ ଧରିବି ଜୀବନ ।
କେବଣ ପାତକ ମୁହିଁ କରିଥିଲି ପୂର୍ବେ
ତହିଁପାଇଁ ଏତେ ଶାସ୍ତି ଧାତା ଦେଲା ଏବେ ।
ବାବୁ ଶରଦଚନ୍ଦ୍ରକୁ ଜିଣେ ତୋ ଆନନ
ତ୍ରିଲୋକରେ ନାହିଁ କେହି ତୋ ରୂପେ ସମାନ
କୁଞ୍ଚିତ କେଶ ତୋହର ଚିକ୍କଣ କାଳିଆ
ଓଷ୍ଠ ଦିଶେ ବିମ୍ବଫଳ ପରାଏ ନାଲିଆ ।
ଶୋଭା ଦିଶୁଥିଲା ତୋର କର୍ଣ୍ଣର କୁଣ୍ଡଳ
ତାହାଦେଖି ହେଉଥିଲା ମୋ ନେତ୍ର ସଫଳ ।
କୁନ୍ଦନ ପରାୟେ ଦିଶେ ବକ୍ଷସ୍ଥଳ ତୋର
ବିକ୍ରମସିଂହ ସମାନ ଗତି କଳେବର ।
ମୃଣାଳୁ ବଳି ସୁନ୍ଦର ତୋର ବେନି ବାହା
ଅତୁଳାଇ ପୁତ୍ର ତୋତେ ତୁଳାଇବ ତାହା ।
ରକତ କୁମୁଦ ପ୍ରାୟ ତୋ କର ପାପୁଲି
ଘଟଣ ପୋଏଳା ପ୍ରାୟ ତୋହର ଅଙ୍ଗୁଳି ।
କାଇ ପାଖୁଡ଼ା ପରାୟେ ତୋର ନଖମାନ
ଏବେ ସ୍ୱରୂପ ଦେଖିବା ହୋଇଲା ସ୍ୱପନ ।
ଆକର୍ଷଣ ବିସ୍ତୀର୍ଣ୍ଣ ବିପୁଳ ବକ୍ଷସ୍ଥଳ
ଗଜରିପୁ ପ୍ରାୟ କଟି ଦିଶଇ ସୁଢ଼ଳ ।
ଗଭୀର ନାଭି ସିଂହର ପ୍ରାୟ ମଝାଗୋଟି
ବର୍ତ୍ତୁଳ ପୀଢ଼ ସୁନ୍ଦର ଦିଶେ ତୋର ପିଠି ।
ଖେଳନ୍ତା ସିଂହ ପରାୟେ ଜଗଜ୍ଜନ ମୋହୁ
ତୋତେ ଝୁରି ମୋର ତନୁ ରହିବ କି ଆଉ ।
ଉଲଟ ରମ୍ଭା ପରାୟେ ଦିଶେ ବେନି ଜାନୁ
ତୋ ଆପଦ ନୋହିଲାରେ ମୋତେ ଅଭିମନ୍ୟୁ
ତୋ ପାଦତଳିପା ରକ୍ତ କୁମୁଦ ସମାନ
ଚାଲନ୍ତେ ପୃଥ୍ୱୀ ଦିଶଇ ଅତି ଶୋଭାବନ ।
ହସ୍ତେ ପଦ୍ମନିଧି ଭାଲେ ଶୋହେ ଶୁଦ୍ଧମଣି
ଏତେ ଲକ୍ଷଣକୁ ଧାତା ଏହା କଲା ଆଣି ।
ଚଉଦଲକ୍ଷ ଗୁଣେ ତୁ ସୁନ୍ଦର ରେ ସବୁ
ଦୟାର ସାଗର କର୍ମସିଦ୍ଧ ଅଟୁ ବାବୁ ।
ଚୌବିଂଶ ଲକ୍ଷଣ ପଞ୍ଚଦଶ ଗୁଣବନ୍ତା
କ୍ଷତ୍ରିବର କ୍ଷୋହଡ଼ରେ ପ୍ରାକର୍ମେ ଶକତା ।
ଉପୁଜିଲୁ ଏତେ ଗୁଣ ଘେନି ଆରେ ବାଳ
ଆସିଥିଲୁ କାଟିବାକୁ ମୋ ତଣ୍ଟି ଚଣ୍ଡାଳ ।
ବାଳକାଳୁ ବହୁଯତ୍ନେ ତୋତେ ପାଳିଥିଲି
ଚୌଦବର୍ଷେ ତୋ ପ୍ରତିଜ୍ଞା ଦେଖି ନ ପାରିଲି ।
କାନ୍ଦି ଫାଲଗୁନି କେଶବାସ ଅସମ୍ଭାଳ
ଭୀମକୁ ଚାହିଁ କହିଲେ ହୋଇଣ ବିକଳ ।
ତୋ ବୀରବର ପ୍ରତିଜ୍ଞା ଶୁଭେ ମହୀସ୍ଥଳେ
ଯମ ଡରେ ତୋର କୋପ ମୂରତି ଦେଖିଲେ
ତ୍ରିଲୋକ ଶଙ୍କିତ ତୁହି ଧଇଲେ ଗଦାକୁ
କିପରି ଛାଡ଼ି ଅଇଲୁ ତୁହି ବାଳକକୁ ।
ହେ ନକୁଳ କରିଥିଲୁ ତୁହି ଗଳାଗଣ୍ଠି
କେମନ୍ତେ ଛାଡ଼ି ଅଇଲୁ ସେହି ପୁତ୍ରଗୋଟି ।
ସହଦେବ ତୁ ତ ଭୂତ ଭବିଷ୍ୟତ ଜାଣୁ
ଅଭିମନ୍ୟୁ ମୃତ୍ୟୁ କିମ୍ପା ଆଗୁ ନ ବଖାଣୁ ।
ବୁଝି କହିଥାନ୍ତୁ ଯେବେ ଆଗୁ ମୋର ଆଗେ
କିମ୍ପା ପୁଅକୁ ଛାଡ଼ନ୍ତି ଯୁଦ୍ଧକୁ ଅଯୋଗେ ।
କେଉଁ ଦ୍ରୋହ ଅଭିମନ୍ୟୁ କଲା ବାବୁ ତୋତେ
ତାକୁ ଛାଡ଼ିବାକୁ ସତ ବଳିଲା କେମନ୍ତେ ।
କାହାକୁ ଭକତି ଅବା ନୋହେ ମୋ ଦୁଲାଳ
କିପରି ସତ ବଳିଲା ତାହାକୁ ଛାଡ଼ିଲ ।
ପୁଣ ନିରୀକ୍ଷି ଚାହିଁଣ ଯୁଧିଷ୍ଠିଙ୍କ ମୁଖ
ଉତ୍ତାନେ ପଡ଼ିଲା ପାର୍ଥ ଧର୍ମଙ୍କର ପାଖ ।
କୋଳ କରିଣ ଧଇଲେ ତାକୁ ଯୁଧିଷ୍ଠିର
ସାଷ୍ଟାମେ ପୁଚ୍ଛେ ସୂତକୁ ଅରଜୁନ ବୀର ।
କହରେ ସାରଥି ମୋତେ ତୁ ସତ୍ୟବଚନ
କିପରି ଜିଣିଲା ସୈନ୍ୟ ମୋହର ନନ୍ଦନ ।
ତୁ ଯେ ବାହୁଥିଲୁ ରଥ ମୋର ପୁତ୍ର ତୁଲେ
ସତ୍ୟକରି କହ କିଏ କେମନ୍ତେ ମାଇଲେ ।

ସାରଥି କହିଲା ଶୁଣ ଯା କହୁଛି ସତ୍ୟ
ଅଗୋଚର କଥା ସେହି କହି ନୁହଇତ ।
ଥିଲେ ଦ୍ରୋଣି ଜୟଦ୍ରଥ ଆଉ କୃପ କର୍ଣ୍ଣ
ଏକ ଏକ ଶରେ ହତକଲେ ତାଙ୍କ ସୈନ୍ୟ ।
ତ୍ରୈଲୋକ୍ୟ ଦୁର୍ଲ୍ଲଭ ତୁମ୍ଭ ପୁତ୍ର କ୍ଷତ୍ରୀପଣ
ଦେଖି ପ୍ରଶଂସା କରିଲେ ଶଚୀର ରମଣ ।
ଲକ୍ଷଲକ୍ଷ ଯୋଦ୍ଧା ଯହୁଁ ନୋହିଲେକ ସରି
ବହୁ ସୈନ୍ୟ ଘେନ ଆସି କୁରୁଦଣ୍ଡଧାରୀ ।
ଗୋଳଯୁଦ୍ଧ ଆରମ୍ଭ ତ କଲେ ତହିଁ ପୁଣି
ସେ ଗୋଳେ କାଟିଲେ ଅଭିମନ୍ୟୁ ଧନୁଦ୍ରୋଣୀ
ଶୂନ୍ୟହସ୍ତ ହୋଇ ପୁତ୍ର ମଲ୍ଲଯୁଦ୍ଧ କରି
ଦଶସସ୍ର ଯୋଦ୍ଧାଙ୍କୁ ସେ ପକାଇଲା ମାରି ।
ଅଧର୍ମ ଯୁଦ୍ଧ କଲେକ ସେହି ଗୋଳମାଳେ
ତେବେ ଅଭିମନ୍ୟୁ ବହୁ ସୈନ୍ୟ ପ୍ରାଣ ନେଲେ
ବିଷାଦ କରି କହିଲା ତହୁଁ କୁରୁରାୟ
ବହୁ ସୈନ୍ୟ ନାଶକଲା ହୋଇ ବାଳପୁଅ ।
ପୁଣିହିଁ ଅନେକ ରାଜା ଆସିଣ ବେଢ଼ିଲେ
ତାହାର ଖଡ଼ଗଫଳା କାଟି ପକାଇଲେ ।
ଖଡ଼ଗଫଳା ଯାଆନ୍ତେ ପୁଣ ମୁଥଘାତେ
ବିଂଶସହସ୍ର ରାଜାଙ୍କୁ ମାଇଲେ ଯୁକତେ ।
ମୁହିଁ ରଥ ଘେନି ତାଙ୍କ ପଛଭାଗେ ଥିଲି
ସମର କରି ବହୁତ ସୈନ୍ୟଙ୍କୁ ମାଇଲି ।
ବିକ୍ରମସିଂହ ସମାନ କରି ପାଦଗତି
କ୍ଷଣକେ ନିପାତ କଲା ତିନିସସ୍ର ରଥୀ ।
ଅଶୀସସ୍ର କୁନ୍ତକାର ଏକାବେଳେ ଉଠି
ଯାବଡ଼େ ପ୍ରହାର କଲେ ତାକୁ ଶର ଯାଠି ।
ସେ ଆଘାତେ ଅସ୍ଥିମାଂସ ତାର ହେଲା ଧୂଳି
ଚିହ୍ନବର୍ଣ୍ଣ ନ ରହିଲା ନୋହିଲାକ କଳି ।
ସଂକ୍ଷେପି ସାରଥି ଯହୁଁ କହିଲା ବୁଝାଇ
ତଳେ ପଡ଼ି ମୋହ ଗଲେ ତହିଁ ଚାରିଭାଇ ।
ଚେତାପାଇ ପାର୍ଥ ପୁଣି ବହୁତ କାନ୍ଦିଲେ
ପୁତ୍ର କି ତୋ ମୁଖ ଆଉ ଦେଖିବି ବୋଇଲେ ।
କିମ୍ପାଁ ମରଣ ବାବୁରେ ନୋହିଲାକ ମୋତେ
ଶୋକଜଳେ ବୁଡ଼ାଇ ତୁ ରହିଲୁ ନିଶ୍ଚିନ୍ତେ ।
କା ଆଗେ କହିବି ମୋର ମନର ସନ୍ତାପ
ଷୋହଡ଼ ସୁନ୍ଦର ତୁହି ପରାଣ ସ୍ୱରୂପ ।
ସମର ପଟୁଆରେ ତୁ ସୈନ୍ୟ ଆବୋରିଣ
ଏକାକେ ସମର କଲୁ ଧନ୍ୟ ବୀରପଣ ।
ବୀରବର ସୁନ୍ଦରରେ ମୋହର ନନ୍ଦନ
ବୀରପଣେ ମୋ ଥାଟକୁ ଥିଲୁ ଆବୋରିଣ ।

ମହାବଳବନ୍ତ ତୁହି ସମରେ ବିଜୟୀ
ପୃଥିବୀରେ ତୋ ସମାନ ନ ଥିଲାଟି କେହି ।
କହୁକହୁ କ୍ରୋଧଭରେ ହୋଇ ବୀରମଣି
କେ ମାଇଲା ମୋ ପୁତ୍ରକୁ କହ ଏହିକ୍ଷଣି ।
ଯଦ୍ୟପି ଇନ୍ଦ୍ର କୁବେର ହର ଆଉ ଧାତା
ପ୍ରଭାତ ନୋହୁ ନାଶିବି ରଖି କେ ଶକତା ।
ଭୀମସେନ କୋଳକରି ତାଙ୍କୁ ଧରିଥିଲା
କହେ ଜୟଦ୍ରଥ ହେତୁ ତୋର ପୁତ୍ରମଲା ।
ସେ ଯେବେ ଆମ୍ଭଙ୍କୁ ରଣେ ନ ଥାନ୍ତା ଓଗାଳି
ତ୍ରିଲୋକରେ କେ ଯୁକତେ ଥିଲା ଆମ୍ଭଭଳି ।
ଏକା ଜୟଦ୍ରଥ ଯୋଗୁ ତୋର ପୁତ୍ରମଲା
ସେହି ସେ ପାଣ୍ଡବ କୁଳ ଶିରୀ ନାଶ କଲା ।
ଭୀମସେନ ବାକ୍ୟେ ଅସାଷ୍ଟମ ଫାଲଗୁନି
ବୋଲେ ହୃଦୁ ପ୍ରାଣକୁ ମୋ କେହୁ ଗଲା ଘେନି
ହରି ବୋଇଲେ ଏପରି କିମ୍ପା ପାର୍ଥ ହେଉ
ଜ୍ଞାନୀ ହୋଇ ନ ଜାଣିବା ଲୋକପରି କହୁ ।
ଅନେକ ପୁଣ୍ୟ ଯେ କରେ ସ୍ୱର୍ଗକୁ ସେ ଯାଇ
ପୁଣ୍ୟକ୍ଷୟ ହେଲେ ପୁଣ ସେଠାରୁ ଖସଇ ।
ସେ ଲଭିଛି ସେ ସ୍ଥାନକୁ କିମ୍ପା ଏହା କହୁ
ଧାର୍ମିକ ଜ୍ଞାନୀ ବିବେକ ସେହୁ ମହାବାହୁ ।
ମାତାରଜ ପିତାବୀର୍ଯ୍ୟ ସଙ୍ଗମ ଯେ କାଳେ
ଜୀବ ଘେନି ବିଶ୍ରାମଇଁ ଗର୍ଭର ଭିତରେ ।
ଅନେକ କଷ୍ଟ ପାଇଣ ଗର୍ଭେ ଧରେ ମାତ
ନବମେ ଦଶମେ ଏକାଦଶେ ପୁତ୍ର ଜାତ ।
ଶୁଭବେଳେ ବୀର୍ଯ୍ୟ ଯେବେ ଦେଇଥାଏ ପିତା
ନ ଚାହେଁ ଅକାଳେ ତାକୁ ଶମନ ଦେବତା ।
ଅଶୁଭ ବେଳରେ ଯେବେ ବୀର୍ଯ୍ୟେ ପଡ଼ିଥାଇ
ସେ ପୁତ୍ର ଅଯୋଗ୍ୟ ହୋଇ ଅଳ୍ପାୟୁ ହୁଅଇ ।
ପୂର୍ଣ୍ଣମୀ ପଞ୍ଚମୀ ଦଶମୀ ଏ ତିନିତିଥି
ଏଥି ବୀର୍ଯ୍ୟଦେଲେ ପୁତ୍ର କେଭେ ନ ବଞ୍ଚନ୍ତି ।
ପ୍ରତିପଦା ଚତୁର୍ଦ୍ଦଶୀ ଏକାଦଶୀ ଦିନ
ଏଥି ବୀର୍ଯ୍ୟଦେଲେ ରୋଗୀ ହୁଅଇ ନନ୍ଦନ ।
ମତ୍ତଭରେ ନ ମାନଇ ଏହା ଯେ ପୁରୁଷ
ତାର ନାଶଯାଏ ପୁତ୍ର ହୁଏ ଅଳ୍ପାୟୁଷ ।
ଦ୍ୱିତୀୟା ଦ୍ୱାଦଶୀ ତ୍ରୟୋଦଶୀ ତିନିଦିନ
ଏଥି ବୀର୍ଯ୍ୟଦେଲେ ପୁତ୍ର ହୁଏ କର୍ମହୀନ ।
ସଙ୍କରାନ୍ତି ଅମାବାସ୍ୟା ଗ୍ରହଣ ଏ ତିନି
ଖଣ୍ଡିଆ କୁବୁଜା ଖଞ୍ଜ ହୁଅନ୍ତି ଜନମି ।
ଆପଣା କଥା ନ ଜାଣି ପରେ ଦେଉ ଦୋଷ
ତୋ କପାଳେ ଏହା ଥିଲା ଭ୍ରାତେ କରୁ ରୋଷ

ଏ ମର୍ତ୍ତ୍ୟ ମଣ୍ଡଳେ ଯେହୁ ଜନମ ହୁଅଇ
କାଳବଳେ ମୃତ୍ୟୁ ତାକୁ ଅବଶ୍ୟ ଘଟଇ ।
ପାପପୁଣ୍ୟ ଯୋଗେ ମରେ କେହୁ ଆଗ ପଛ
ଏଥକୁ ସନ୍ତାପ କିମ୍ପା କରୁଛୁ ବିବସ୍ତ ।
ଏଥି ଜନମ ହୋଇଲେ ଚିର ନୋହେ କାୟ
ମୁହିଁ ଏହା ମଣଇ ଯେ ପଥିକର ପ୍ରାୟ ।
ଅଇଲାକ ଅଦଭୂତେ ଗଲା ଅଦଭୂତେ
ସ୍ନେହ ଲଗାଇଲା କେତେ ଦିନର ନିମନ୍ତେ ।
ପାଣିରେ ଫୋଟକା ସମ ଅଟେ ଏ ଶରୀର
ନ ଜାଣିଣ ସର୍ବେ କହୁଥାନ୍ତି ମୋର ମୋର ।
ପଥିକ ଯେପରି ତରୁମୂଳେ ବିଶ୍ରାମନ୍ତି
କାହାରି କେ ନୁହେ ଯେଝା କାର୍ଯ୍ୟରେ ଗମନ୍ତି
କେ ଅଟେ କାହା କୁମର କେ କାହା ପିଅର
ଏହି ସଂସାର ଅଟଇ ମାୟାର ଭଣ୍ଡାର ।
ଚୂତବୃକ୍ଷେ ଫଳ ଫଳେ ତାର ସଂଖ୍ୟା ନାହିଁ
କେତେକ ବୃକ୍ଷରେ ଥାଇ କେତେକ ଝଡ଼ଇ ।
ଯେ ଝଡ଼େ ତାହା ସଙ୍ଗେ କି ଯାଏ ତରୁବର
ସେହି ପରକାରେ ପାର୍ଥ ସଂସାର ବେଭାର ।
ଚକ୍ରୀ ଚକ୍ରେ ମୃତ୍ତିକାର ଭାଣ୍ଡ ଗଢୁଥାଏ
କେତେ ଭାଣ୍ଡ ତଳେ ପଡ଼ି ଭାଙ୍ଗିଣ ଯେ ଯାଏ
କେତେକ ଭାଣ୍ଡ ପୋଡ଼ିବା ବେଳରେ ଭାଙ୍ଗଇ
ଭାଙ୍ଗି ଯିବା ଭାଣ୍ଡ ସଙ୍ଗେ କୁମ୍ଭାର କି ଯାଇ ।
ହାଟେ ବଣିକ ପସରା ଘେନି ବସିଥାନ୍ତି
ଭାଇ ପ୍ରାୟେ ସର୍ବେ ବିକାକିଣା କରୁଥାନ୍ତି ।
ଯାର ଦ୍ରବ୍ୟ ଶେଷ ହୁଏ ସେହି ଚାଲିଯାଏ
ଯାହାର ସରି ନ ଥାଏ ସେହି ରହିଥାଏ ।
ହେ ଅର୍ଜ୍ଜୁନ ତା ବେପାର ହୋଇଲାକ ଶେଷ
ତେଣୁ ଚାଲିଗଲା ତୁହି କିମ୍ପା କରୁ ରୋଷ ।
ବୃଷ୍ଟିକାଳେ ନଦୀ ପୂରି ଜଳ ଯେ ବହଇ
ବନେ ପଶି କାଠମାନ ଭସାଇ ନିଅଇ ।
ଦୁଇଖଣ୍ଡ ଯୋଡ଼ି ହୋଇ ଯାଉଥାଏ ଭାସି
ଖଣ୍ଡକୁ ଲତା ଯେବେଟି ଧରଇ ଆକର୍ଷି ।
ସେ ଖଣ୍ଡକ ତହିଁ ରହେ ଆରଖଣ୍ଡ ଯାଏ
ଏହିପରି ସବୁ କଥା ଶୁଣ ଧନଞ୍ଜୟେ ।
ଆମ୍ଭେ ଆସିଅଛୁ ଏକା ଯିବୁ ଏକା ହୋଇ
ମିଛେ ମିଛେ ତୁ ରୋଦନ କରୁ କାହିଁପାଇଁ ।
ଲୋଭ ମୋହ ଅହଙ୍କାର ହିଂସା ଅପବାଦେ
ସଂସାର ସାଗରେ ପଡ଼ି ଭାସୁଥାଏ ହାଦେ ।
ହିଂସା ଅହଙ୍କାରେ ମାତି କୁକ୍ରିୟା କରଇ
ସେ ହେତୁରୁ ନାନା ପାପେ ଆୟୁ କ୍ଷୀଣହୋଇ

ଆପଣା ଦୋଷେ ମରନ୍ତି ନ ଜାଣନ୍ତି ଆନ
ଚିନ୍ତା କରିବା ତହିଁରେ ନାହିଁ ପ୍ରୟୋଜନ ।
ଅର୍ଜ୍ଜୁନ ବୋଇଲେ ହରି ଅଭିମନ୍ୟୁ ମୋର
ନିର୍ଦ୍ଦୋଷେ ଲକ୍ଷଣବନ୍ତ ଆବର ସୁନ୍ଦର ।
ଭାଗ୍ୟବନ୍ତ ଦୟାବନ୍ତ ପରଦୁଃଖେ ଦୁଃଖୀ
ଅହିଂସାରେ କାର୍ଯ୍ୟ କରେ ଧର୍ମେ କରି ସାକ୍ଷୀ
ଗୋବିନ୍ଦ ବୋଇଲେ ଏହି ସଂସାର ଅନିତ୍ୟ
ଜନ୍ମ ହୋଇ ନିଷ୍ପାପୀ କେ ନର ଅଛି ଏଥ ।
ପାପଆତ୍ମା ରହିଅଛି ସବୁରି ଶରୀରେ
ନିଷ୍ପାପୀ ହୋଇଣ କେହି ନାହିଁ ଏ ମହୀରେ ।
ଏହି ସଂସାର ଅଟଇ ପରୀକ୍ଷାର ସ୍ଥଳ
ଧାର୍ମିକ ପ୍ରାଣୀ ବଞ୍ଚଇ ବହୁତର କାଳ ।
ଯମର ଅଧୀନ ଅଟେ ନଶ୍ୱରଶରୀର
ଏହି କଥା ନ ଜାଣଇ ଯେହୁ ମୂର୍ଖ ନର ।
କେ କାହାର ପିତା କେହୁ କାହାର କୁମର
ମନ୍ଦପଣ କରିଣ ସେ ଯାଏ ଯମଘର ।
କେ କାହାର ସୋଦର ଯେ କେ କାହାର ବନ୍ଧୁ
ଜ୍ଞାନୀ ହୋଇ ପାର୍ଥ କିମ୍ପା ଧର୍ମପଥ ନିନ୍ଦୁ ।
ହଜିଲା ମାଲକୁ ପାର୍ଥ କିମ୍ପା ବାଟଚାହୁଁ
ଭସ୍ମ କାହୁଁ ଅଙ୍କୁରିବ କାନ୍ଦିଲେ ତୁ ଆଉ ।
ତୁ କିମ୍ପାଇଁ ମଲା ବୋଲି କାନ୍ଦୁ ଅକାରଣେ
କ୍ଷତ୍ରୀ ପୁଣ କ୍ଷତ୍ରୀପଣେ ପଡ଼ିଲାକ ରଣେ ।
କ୍ଷତ୍ରୀହୋଇ ମରଇ ଯେ କରେ ଶସ୍ତ୍ରଧରି
ନିଶ୍ଚୟ କରି ଜାଣ ସେ ବସେ ସ୍ୱର୍ଗପୁରୀ ।
ରଣ ଯାଗ କରେ ଯେବେ ବଂଶରୁ ଗୋଟିଏ
ଇହ ପରଲୋକ ତାର ସ୍ୱର୍ଗକୁ ସେ ଯାଏ ।
ଭାଗ୍ୟବନ୍ତ ପୁରୁଷକୁ ଦିଶେ ସ୍ୱର୍ଗବାଟ
ହୀନଜନଙ୍କୁ ଦିଶଇ ସେ ପଥ ସଙ୍କଟ ।
ଲୋଭ ମୋହେ କହୁଥାନ୍ତି ମୋର ମୋର ବୋଲି
କେ ଆଗପଛେ କେ ଅବା ଯିବେ ଆଜିକାଲି ।
ଗଲାର କଥାକୁ ମନେ ନ କର ଶୋଚନା
ସଂସାର ସାଗର ଦେଖ ଦଇବ ରଚନା ।
ବୋଲଇ ଅର୍ଜ୍ଜୁନ ଶୁଣ ଦେବ ଦଇତ୍ୟାରି
ମୋ ପୁତ୍ରକୁ ମରାଇଲେ ମୋର ଭାଇ ଚାରି ।
ପୁତ୍ରକୁ ସଙ୍ଗରେ ନେଲେ ଚକ୍ରବ୍ୟୂହ ଯୁଦ୍ଧେ
କର୍ଣ୍ଣ ଦ୍ରୋଣ ଅପରସି ଗଲେ ରଣମଧ୍ୟେ ।
ଯାର ଭୀମମୂର୍ତ୍ତି ଦେଖି ଯମ କରେ ଶଙ୍କା
ତାକୁ ଓଗାଳିଲେ ଛାର ଜୟଦ୍ରଥ ଏକା ।
ହେଳାକରି ମରାଇଲେ ମୋର ପୁତ୍ରଗୋଟି
ଚାରିଙ୍କ ଶିର କମଳ ପକାଇବି କାଟି ।

ଶୁଣି ହରି ବିଚାରନ୍ତି ପାର୍ଥ ଆଜି କ୍ରୋଧେ
ନ ପୁଣ ଭାଇମାନଙ୍କୁ ନାଶେ ବିନାଯୁଦ୍ଧେ ।
ଯାଜ୍ଞାଳି ବୋଇଲେ ହରି କାର ନାହିଁ ଦୋଷ
ସ୍ୱର୍ଗକୁର କଲା ଉଦେକବନ୍ଧ ରାକ୍ଷସ ।
ତାର ଭୟେ ଦେବତାଏ ରହି ନ ପାରିଲେ
ସ୍ୱର୍ଗପୁର ଛାଡ଼ିକରି ପଳାଇଣ ଗଲେ ।
ଅନେକ ସମର କଲେ ମଘବା ବରୁଣ
କୁବେର ଯେ ମହେଶ୍ୱର ଆବର ପବନ ।
ଏମାନେ ଯୁଦ୍ଧେ ହାରିଣ ପଳାଇଣ ଗଲେ
ବ୍ରହ୍ମା ଇନ୍ଦ୍ରଙ୍କ ପାଶରେ ସକଳ କହିଲେ ।
ଶୁଣି ବୋଇଲେ ଅଣାଅ ପାର୍ଥର କୁମର
ତାହା ହସ୍ତରେ ମରିବ ଅସୁର ପାମର ।
ପିତାମହଙ୍କ ବଚନ ଶୁଣି ସୁରପତି
ପୁଷ୍ପକେ ବସାଇ ନେଲେ ତୋହର ସନ୍ତତି ।
ବହୁ ରତ୍ନ ଅଳଙ୍କାର ତାକୁ ପିନ୍ଧାଇଲେ
ଏବେ ସେ ଯୁଦ୍ଧ କରଇ କବନ୍ଧର ତୁଲେ ।
ପାର୍ଥ ବୋଲେ ନ ଦେଖିଲେ ନ ଯାଏ ପରତେ
ବ୍ରହ୍ମ ଅସୁର ନାଶିବ ଦେଖିବି କେମନ୍ତେ ।
ସେ ଅସୁର ନାଶଯିବ ଅଭିମନ୍ୟୁ ହସ୍ତେ
ମୋ ପୁତ୍ରକୁ ଦେଖାଅ ହେ ହରି ଆଜ ମୋତେ
ଶୁଣି କେଶବ ପୁଷ୍ପକ ବିମାନ ଆରୋହି
ଶୂନ୍ୟ ଭେଦିଗଲେ ପାର୍ଥ ସଙ୍ଗତରେ ନେଇ ।
ଦେଖିଲେ ଆକାଶେ ହୁଏ ରଣ ଗୁରୁତର
ଅଭିମନ୍ୟୁ ସଙ୍ଗେ ରଣ କରେ ସେ ଅସୁର ।
ଅନୁକ୍ଷଣେ ବାଣ ଯେ ବିନ୍ଧଇ ଅଭିମନ୍ୟୁ
ଦୂରେ ଥାଇଣ ଦେଖନ୍ତି କୃଷ୍ଣ ଇନ୍ଦ୍ରସୂନୁ ।
ଜଟୀ ବଟତଳେ କୃଷ୍ଣାର୍ଜୁନେ ହୋଇ ଉଭା
ଦେଖନ୍ତି ଶର ଆଘାତେ କମ୍ପେ ସୁରଦେବା ।
ଆକାଶେ ତ୍ରାସ କରନ୍ତି ରହି ବେଦବ୍ରହ୍ମା
ଅଭିମନ୍ୟୁ ବୋଲେ ପାର୍ଥ ଯାଅ ହେ ମହାତ୍ମା
ଅନୁକ୍ଷଣେ ଶରମାନ ହେଉଅଛି ବୃଷ୍ଟି
ପ୍ରାଣେ ନାଶଯିବ ତୁମ୍ଭେ ନର ଦୁଇ ଗୋଟି ।
ହତ ହେବାର ପୁତ୍ରକୁ ଦେଖି ସେହିକ୍ଷଣି
କୋଳରେ ଧରିବା ପାଇଁ ଲୋଡ଼େ ଫାଲଗୁନି
କହନ୍ତି ଶ୍ରୀହରି ପାର୍ଥ ନୁହଇ ଏମନ୍ତ
ସେ ତୋତେ ତ ନ ଚିହ୍ନିଲା ତୁ କି ତାରତାତ ।
ଅର୍ଜୁନ ବୋଇଲେହରି କହଇ ତୁମ୍ଭଙ୍କୁ
ବାଳକାଳୁ ପାଳିଥିଲି ମୁହିଁ ଯେ ଏହାଙ୍କୁ ।
ମୁହିଁ ଯେ ଏହାର ତାତ ଏ ମୋହର ସୁତ
ଦିନେ ଅନ୍ତର ହେଲାକୁ ନ ଚିହ୍ନେ ଆମ୍ଭନ୍ତ ।

ହରି ବୋଇଲେ ବୋଇଲୁ ତୁ ଯେ ମୋରବାଳ
ମାୟା ମୋହେ ହୋଇଛନ୍ତି ସକଳେ ବାତୁଳ ।
ପାର୍ଥ ବୋଲେ ଏ ବିଚାର ଯେବେ ଅଛି ସ୍ୱର୍ଗେ
ଏ ନିଶାଚର ଭୁବନୁ ଚାଲ ଯିବା ବେଗେ ।
ଶୁଣ ହେ ମନୁ ରାଜନ ମାୟା କୃଷ୍ଣଙ୍କର
ମୋହ ଛାଡ଼ିଲା ପାର୍ଥର ଆସିଲା ସତ୍ୱର ।
ହରି ଅର୍ଜୁନଙ୍କୁ ଦେଖି ଦ୍ରୌପଦୀ ଯେ କୁନ୍ତୀ
ଆବର ସୁଭଦ୍ରା ଶୋକେ କାତର ହୁଅନ୍ତି ।
କୁନ୍ତୀ ବୋଇଲେକ ତୁମ୍ଭେ ଶୁଣ ଜନାର୍ଦ୍ଦନ
କରାଇଲ ପାଣ୍ଡବଙ୍କ କୁଳ ନିଶୋଧନ ।
ତୋତେ ଆଶ୍ରା କରି ମୋର ବଞ୍ଚୁଛନ୍ତି ପୁତ୍ରେ
ଶେଷେ ବୁଡ଼ିଲେ ସେମାନେ ଶୋକଜଳ ସ୍ରୋତେ
ଅଳ୍ପୟଳ ତ ଅଭିମନ୍ୟୁ ସର୍ବଗଳାଗଣ୍ଠି
ତୁମ୍ଭେ ତ ଅଇଲ ତାକୁ ଛାଡ଼ିଣ କେଉଁଠି ।
ଆହେ ଜଗନାଥ ମଲା ମୋହର ପ୍ରପୌତ୍ର
ଏଥି ତୋର ଦୋଷ ନାହିଁ ଧାତା ଘଟସୂତ୍ର ।
ବାବୁ ଯେବେ ପଡ଼ିଥାନ୍ତୁ ବନେ ପାଞ୍ଚଜଣ
କନ୍ଦମୂଳ ଖାଇ ସୁଖେ ହରୁଥାନ୍ତୁ ଦିନ ।
ତୁହି ଶିଖାନ୍ତେ ଯେ କଲେ ରାଜ୍ୟଧନେ ଆଶ
ବଂଶ ବୁଡ଼ାଇ ସେମାନେ ହୋଇଲେ ନିରାଶ
ଅନବରତରେ ଧାରା ବହେ ବେନି ଆଖି
ଦ୍ରୌପଦୀ ଦେବୀ କାନ୍ଦନ୍ତି ହୋଇଣ ନିର୍ମାଖୀ
ଅଭିମନ୍ୟୁ ଅଭିମନ୍ୟୁ ଉଚ୍ଚସ୍ୱରେ ଡାକି
ଧବଳି ରଥରେ ଯାଉ କି ଯୁଦ୍ଧ ଭୂମିକି ।
ଆମ୍ଭମାନେ ବସି ଲୋଡୁଛୁ କି ନିଯୋଗମାନ
କି ଅବା ଗଜ ଅଶ୍ୱଙ୍କୁ କରୁ ସମାର୍ଜନ ।
କି ଅବା ଯମୁନା ଜଳେ କରୁଅଛୁ ସ୍ନାନ
ଦେବ ବିପ୍ରେ ଚିନ୍ତାକରି ଦେଉ ଅବା ଦାନ ।
କି ଅବା ଆମ୍ଭମାନେ ବସି ପାଳୁ ଜନପ୍ରଜା
କି ଅବା ଟିକେ ଚିନାଏ ଘେନିଅଛୁ ସଞ୍ଜା ।
କିବା ହେଉଅଛୁ ଜନପ୍ରଜା ଦୁଃଖେ ଦୁଃଖୀ
କିମ୍ବା ଶୋକ କରୁଅଛୁ ପରଦୁଃଖ ଦେଖି ।
ଦୁଃଖୀ ସୋଦର ତୁ ଜଗଜନ ହିତକାରୀ
ସର୍ବଦା ଶୁଣୁ ତୁ ଦୁଃଖୀଜନଙ୍କ ଗୁହାରି ।
ଶସ୍ତ୍ରହୀନ ଯୋଦ୍ଧାକୁ ତୁ ନ କରୁ ନିଧନ
ଆମ୍ଭହୁଁ ଅଧିକେ ରଖୁ ଯେ ପଶେ ଶରଣ ।
ଲକ୍ଷ ଲକ୍ଷ ଯୋଦ୍ଧା ମଧ୍ୟେ ପଡ଼େ ତୋର ନାମ
ପୃଥ୍ୱୀରେ କରନ୍ତି ତୋତେ ସର୍ବେ ଧନ୍ୟ ଧନ୍ୟ
ସବୁରୂପେ ଥିଲୁ ମୋର କୁଳକୁ ଭୂଷଣ
ତୋ ବିନା କିପରି ମୋର ରହିବରେ ପ୍ରାଣ ।

କୃଷ୍ଣଙ୍କ ମୁଖକୁ ଚାହିଁ କାନ୍ଦଇ ପାଞ୍ଚାଳୀ
ଅଭିମନ୍ୟୁକୁ କାହାକୁ ଦେଲେ ବନମାଳୀ ।
ସଂସାରେ ବୋଲନ୍ତି ତାକୁ କୃଷ୍ଣଙ୍କ ଭଣଜା
ଯଦୁ ଭୋଜ କୃଷ୍ଣ ବଂଶକୁ ଏ ହେଲା ଲଜ୍ଜା ।
ଉଚ୍ଚସ୍ୱରେ କାନ୍ଦିକରି କହେ ଯାଜ୍ଞସେନୀ
ଧନ୍ୟରେ କୌରବ ତୁମ୍ଭେ ଅଟ ବୀରମଣି ।
ଅର୍ଜ୍ଜୁନ ଯା ପିତା ମାମୁଁ ହରି ବଳରାମେ
ତାକୁ ମାରିବାକୁ ଶକ୍ୟ ହୋଇଲେ ସଂଗ୍ରାମେ
ଉତ୍ତରା ରୋଦନ କଥା କହିଲେ ନ ସରେ
ଶୁଣ ବସୁଦେବ ସୁତ ପଡ଼ିଲେ ମୋହରେ ।
କୁନ୍ତୀ ଦ୍ରୌପଦୀ ଧଇଲେ ତାହାକୁ କୋଳରେ
ଅଜ୍ଞାନ ହୋଇ ପଡ଼ିଲା ଯହୁଁ ସେ ଭୂମିରେ ।
ଥର ଥର କଳେବର ନ ସ୍ଫୁରେ ବଚନ
କେଶ ବାସ ଅସମ୍ଭାଳ ନ ଫିଟେ ନୟନ ।
ମୁଖେ ଜଳ ସିଞ୍ଚି ପଙ୍ଖା ଘେନିଣ ବିଞ୍ଚନ୍ତି
ଘଡ଼ିକେ ଚେତନା ପାଇ ଉଠିଲା ଯୁବତୀ ।
ବାତୁଳୀ ପ୍ରାୟ ହୋଇଣ ଦରାଣ୍ଡଇ କ୍ଷିତି
କାହିଁ ବସିଛୁରେ ମୋର ମଦନ ନୃପତି ।
ମୁହିଁ ତୋତେ ଧରିଥିଲି ଗର୍ଭେ ଦଶମାସ
ବାଳଭାବ ଛାଡ଼ି ହେଲା ତୋ ଯୁବା ବୟସ ।
ଅକଳଙ୍କ ଚନ୍ଦ୍ର ପ୍ରାୟେ ତୋର ମୁଖ ଗୋଟି
ମୁନିଏ ଦେଖିଲେ ତୋତେ ଚାହାନ୍ତି ଲେଉଟି ।
ଅଚିହ୍ନିତ ଯେ ଦେଖଇ ତୋ ରୂପ ମାଧୁରୀ
ସେହି ମଧ ଚାହୁଁଥାଏ ନେତ୍ରେ ଫେରି ଫେରି ।
ଭାବୁକ ଫଳଦାୟକ ସଜ୍ଜନ ବାନ୍ଧବ
ଯୋଗୀଜନ ପୂଜାକରୁ ବହି ନମ୍ର ଭାବ ।
ବଡ଼ଭାଇ ଭାଙ୍ଗୁଥିଲେ ପାର୍ଥକୁ ଦେବାକୁ
ସାନଭାଇ ବିଭା ଦେଲେ ବଂଶ ରହିବାକୁ ।
ସୋମବଂଶ ରଖିବାକୁ ତୁହି ଥିଲୁ ମୂଳ
ତୁହି ଉଦେକରିଥାନ୍ତୁ ସୋମବଂଶ କୁଳ ।
ଏହା ବିଚାରି ପାଣ୍ଡବେ ମୋତେ ଦେଲ ଭାଇ
ସର୍ବେ ଏକତ୍ରେ ଅଇଲ ଅଭିମନ୍ୟୁ କାହିଁ ।
କିବା ଅର୍ଜ୍ଜୁନ ତୁମ୍ଭଙ୍କୁ ସମରେ ଜିଣିଲା
ସେ ରାଗରୁ କରି ମୋର ଅଭିମନ୍ୟୁ ମଲା ।
ତ୍ରିଭୁବନରେ ଅତୁଲ୍ୟ ମୋର ପୁତ୍ରଗୋଟି
ଦୁଃଖୀର ସଙ୍ଖାଳି ମୋର ଗଳାହାର ଗଣ୍ଠି ।
ଅଭିମନ୍ୟୁ ମାତା ବୋଲି ସର୍ବେ ମୋତେ ଭାଷି
ହେ ଭାଇ ଦଇବ ଯୋଗେ ହୋଇଲି ନିରାଶୀ
ମୋତେ ମରଣ କିମ୍ପାଇଁ ନୋହିଲା ତୋ ଆଗେ
କିପରି ପ୍ରାଣ ଧରିବି ତୋହର ବିୟୋଗେ ।

ଏହା କହି କାନ୍ଦେ ବସୁଦେବର ଦୁଲଣୀ
କେଶ ବାସ ଅସମ୍ଭାଳ ଲୋଟଇ ଧରଣୀ ।
କପଟରେ ଜଳଧର ବ୍ୟୂହ ଗୋଟି ରଚି
ମୋ ପୁତ୍ରକୁ ମରାଇଲା ଏକା ସେ ଶ୍ରୀବସ୍ତି ।
ଏହା ଆଗରେ ମରିବି ମୁହିଁ ତଣ୍ଟି କାଟି
ଯେଣୁ ମରାଇଲା ମୋର ବାଳପୁତ୍ର ଗୋଟି ।
ଆହାରେ ନନ୍ଦନ ତୁହି କୁଳଶ୍ରେଷ୍ଠ ସାର
କେସନେ ସମରେ ତୁହି ହେଲୁ ଅପହାର ।
ବିଷ୍ଣୁ ସମାନ ଅଟଇ ତୋ ଦେହର ତେଜ
ବିକ୍ରମସିଂହ ସମାନେ ତୋହର ପହିଜ ।
ଯଦୁବଂଶ ମଧ୍ୟେ ତୁହି ଥିଲୁରେ ସୁନ୍ଦର
କିପରି ଦେହ ଧରିବି ବିହୀନେ ତୋହର ।
ମେରୁ ଟାଳିବାକୁ କେହୁ ହେଲା ସାମରଥ
ବିନ୍ଧ୍ୟମାଳାକୁ ପକାଇ କେ ପାତିଲା ମାଥ ।
ବ୍ରହ୍ମାଙ୍କୁ ଜିଣିବାକୁ କେ ସମର୍ଥ ହୋଇଲା
କେ ସମର୍ଥ ହେଲା ମୋର ପୁତ୍ରକୁ ମାଇଲା ।
ଆଦିତ୍ୟଙ୍କୁ କରାଇଲା ଉଦୟ ପର୍ଶ୍ଚିମେ
କେ ସମର୍ଥ ହେଲା କାଳକୂଟର ଭକ୍ଷଣେ ।
ଅମରାସନେ ବସି କେ ହେଲା ସାମରଥା
କ୍ଷୀରୋଦ ମନ୍ଥିବାକୁ କେ ହୋଇଲା ଶକତା ।
କିଏ ସେ ପୁତ୍ରକୁ ମୋର ଜିଣିଲାକ ରଣେ
ଏକପାଦେ ମାପିଲା କେ ପୃଥ୍ୱୀକୁ ପ୍ରୟାଣେ ।
ଏତେବଡ଼ ଦକ୍ଷ କିଏ ଜନ୍ମିଛି ସଂସାରେ
ରଣକରି ମୋ ପୁତ୍ରକୁ ମାଇଲା ପ୍ରାଣରେ ।
ତୋପରି ନ ଥିଲା ମଲ୍ଲ ପୃଥିବୀ ଭିତର
ରିପୁ ଗଞ୍ଜିପାରୁ ହସ୍ତେ ଥିଲେ ଧନୁଶର ।
ସର୍ବଗୁଣେ ସୁନ୍ଦର ତୁ ଅଟୁ ଗୁଣନିଧି
ବୃହସ୍ପତି ସମ ବିଦ୍ୟା ଧାର୍ମିକ ସୁବୁଦ୍ଧି ।
ପର୍ଶୁରାମଠାରୁ ବଡ଼ ଗାରିମା ତୋହର
ସମୁଦ୍ର ପରି ଅଟଇ ତୋ ହୃଦ ଗଭୀର ।
ଚନ୍ଦନ କର୍ପୂରକୁ କି ସରି ଗନ୍ଧରାଜ
ବାଳଅର୍କ ପ୍ରାୟ ତୋର ବିରାଜଇ ତେଜ ।
ନାନା ପୁଷ୍ପରେ ଭୂଷିତ ହୁଏ ତୋର ଅଙ୍ଗ
ଏବେ ରକତରେ ଦିଶୁଥିବୁ ତୁ ସୁରଙ୍ଗ ।
ହଂସୁଲୀ ତୁଳୀ ଉପରେ ପୁଷ୍ପର ସୁପାତି
ତହିଁରେ ତୋତେ ଯେ ନିଦ୍ରା ନ ମାଡ଼ଇ ରାତି
ସହସ୍ରେକ ପରିବାରୀ ସେବୁଥାନ୍ତି ତୋତେ
ଏବେ ଭୂମିଶଯ୍ୟାରେ ତୁ ଶୋଇଲୁ କେମନ୍ତେ
ଆଲଟ ଚାମର ଧରି ଖଟୁଥାନ୍ତି ବାଳୀ
ଏବେ ଖଟୁଥିବେ ତୋତେ ଶାଗୁଣା ଶୃଗାଳୀ

କୌତୁକ କ୍ରୀଡ଼ା କରିବୁରେ କୁମରମଣି
ଭୂତ ପ୍ରେତଙ୍କ ସଙ୍ଗରେ ଆଜର ରଜନୀ ।
ବହୁତ ଶୋକ ସନ୍ତାପ ଗଲୁମୋତେ ଦେଇ
ଶ୍ମଶାନେ ଶୋଇଲୁ ବଳା ତୁ ନିଶ୍ଚିନ୍ତ ହୋଇ ।
ନିର୍ଲ୍ଲଜ ଆତ୍ମା ମୋହର ଯାଉ କିନା ଜଳି
କାହାକୁ ଚାହିଁକି ପୁତ୍ର ମୁହିଁ ମୁଖତୋଳି ।
ଭୋ ଦୈବପୁରୁଷ ତୁହି ଅଟୁ ବଡ଼ ନଷ୍ଟ
ପ୍ରାଣ ନ ନେଇ କିମ୍ପାଇଁ ଦେଲୁ ପୁତ୍ର କଷ୍ଟ ।
ଅଭିମନ୍ୟୁ ଅଭିମନ୍ୟୁ ଡାକି ଉଚ୍ଚସ୍ୱରେ
ଚେତନା ହାରି ପଡ଼ିଲା ସେକ୍ଷଣି ଭୂମିରେ ।
କ୍ଷଣକେ ଚେତନା ପାଇ ଉଠିଣ ବସିଲା
ପୁତ୍ର ପୁତ୍ର କହି ଉଚ୍ଚସ୍ୱରରେ କାନ୍ଦିଲା ।
ପୂର୍ବେ କାରେ ଆଶାଦେଇ କଲଇଁ ନିରାଶ
ତେଣୁକରି ନ ପାଇଲି ପୁତ୍ର ତୋର ଆଶ ।
କେହୁ ମାଗନ୍ତେ କାହାକୁ ନାସ୍ତି କରିଥିଲି
କାହା ପୂର୍ଣ୍ଣଘରେ ମୁହିଁ ଯୁଇ ଲଗାଇଲି ।
କେବଣ ଗୁରୁଜନର ପଡ଼ିଲାକ ଶାପ
ତେଣୁକରି ଛାଡ଼ିଗଲୁ ମୋତେ ଆରେ ବାପ ।
ଗଇଣ ଦୁଦୁରା ଦେଇ ସେବିଥିଲି ହର
କିମ୍ପାଇଁ ଷୋଳ ବରଷେ ମଲା ମୋ କୁମର ।
ନାଟ ଖେଳୁଅଛୁ ପୁତ୍ର ବସି କେଉଁଠାରେ
ନ ବସୁ କିମ୍ପାଇଁ ଆସି ମୋହର କୋଳରେ ।
କାଖରେ ବସାଇ ତୋତେ ବୁଲେ କିନା ଦାଣ୍ଡ
ପୁରୁ ମୋର ମନୋବାଞ୍ଛା ଥଣ୍ଡା ହେଉ ପିଣ୍ଡ ।
ବଂଶ ବୁଡ଼ିଲା ମୋହର ତୋହର ଅଭାବେ
ପରାଣ ଧରି ରହିବେ କେମନ୍ତେ ପାଣ୍ଡବେ ।
ରୋଦନ୍ତେ ସୁଭଦ୍ରା ଦିଗ ଦିଶିଲା ଅନ୍ଧାର
ଆଉ ତୋ ସମ ପୁତ୍ର କି ଧରିବି ଗର୍ଭର ।
କାନ୍ଦଇ ଉତ୍ତରା ଭାଲେ ମାରି ବେନିକର
ବଜ୍ରାଘାତ ହେଲା ପ୍ରାୟ ପଡ଼ିଲା ମହୀର ।
ପୁଣି ଉଠି ଉରେ କର ମାରିଣ କାନ୍ଦିଲା ।
ଆହା ପ୍ରାଣନାଥ କହି ଭୂମିରେ ପଡ଼ିଲା
ମୂଳ କଟିଗଲେ ବୃକ୍ଷ ଯେପରି ପଡ଼ଇ
ତେହ୍ନେ ଉତ୍ତରା ପଡ଼ିଲା ଭଦ୍ରାମୁଖ ଚାହିଁ ।
କୋଳକରିଣ ଅନେକ ଯୁବତୀ ତୋଳିଲେ
ମୁଖରେ ପାଣି ସିଞ୍ଚିଣ ସଚେତ କରିଲେ ।
ଚେତି ଉତ୍ତରା କାନ୍ଦଇ ଶିରେ ମାରି କର
କାହିଁ ଛାଡ଼ିଗଲ ମୋତେ ହେ ପ୍ରାଣ ଈଶ୍ୱର ।
ହେ ସ୍ୱାମୀ ଗୁଣସାଗର କ୍ଷଣେହେଁ ନ ଛାଡୁ
ଜଳୁଛି ମୋହର ଆତ୍ମା କର୍ମ ମୋର ପୋଡୁ ।

ମୋଠାରୁ ପାପିନୀ ଆଉ ନ ଥିବ କେ ନାରୀ
ଏ ବୟସେ ବିଧବା ମୁଁ ହେଲି ହତଶିରୀ ।
ବାଳଭାବ ଛାଡ଼ି ନାଥ ହେଲି ନବଯୁବା
ମୋତେ ଏକାକରି ନାଥ କେଣେ ଗଲ ଅବା ।
ଏପରି କହି ସନ୍ତାପ ଉତ୍ତରା କରଇ
ଏ ଯୁବାବୟସେ ମୋତେ ଛାଡ଼ିଗଲ କାହିଁ ।
ପ୍ରାଣହୁଁ ଅଧିକ ନାଥ କରିଥିଲ ମୋତେ
କେମନ୍ତେ ମନୁ ମୂର୍ଚ୍ଛିବି ତୁମ୍ଭ ଗୁଣ ଯେତେ ।
ଭୋଜନେ ଶୟନେ ରାତ୍ର ଦିବା ଅନୁବ୍ରତେ
ଭୂମିରେ ନ ବସାଇଣ ଧର ହୃଦଗତେ ।
ହାସ ପରିହାସ କ୍ରୀଡ଼ା କଉତୁକ ରଙ୍ଗେ
ରଜନୀ ନ ଅଣ୍ଟେ ନାଥ ଥିଲେ ତୁମ୍ଭ ସଙ୍ଗେ ।
ଶରଣ ସୋଦର ନାଥ ଅଟ ଗୁଣନିଧି
ତୁମ୍ଭ ମୁଖକୁ ନିଉନ ପୂର୍ଣ୍ଣ କଳାନିଧି ।
ତୁମ୍ଭ ସମ ଧନୁର୍ଦ୍ଧର କେ ଅଛି ଜଗତେ
ଭୀଷ୍ମ ଦ୍ରୋଣଙ୍କୁ ଜିଣିଲ ଏ ମହାଭାରତେ ।
କାମିନୀ ମନମୋହନ ତୁମ୍ଭ ରୂପଗୋଟି
କାହିଁ ଲୁଚିଲା ଏବେ ସେ ଲାବଣ୍ୟ ମୂର୍ତ୍ତିଟି ।
ସ୍ୱାମୀ ନବଦ୍ୱୀପେ ଯୋଦ୍ଧା ରହିଛନ୍ତି ଯେତେ
ତୁମ୍ଭେ ଧନୁ ଧରୁ ଭୟ କରନ୍ତି ସମସ୍ତେ ।
ମୁହିଁ ଶୁଣିଅଛି ନାଥ ତୁମ୍ଭର ମହିମା
ସୈନ୍ୟଙ୍କ ସହିତେ ଜିଣିଅଛ କୃପବର୍ମା ।
ଇନ୍ଦ୍ର ବରୁଣ କୁବେର ଚନ୍ଦ୍ର ସୂର୍ଯ୍ୟ ଆଦି
ଏମାନେ ହାରିବେ ହେଲେ ତୁମ୍ଭର ବିବାଦୀ ।
ଧନୁ ଗଦା ଅସିପତ୍ର ଥିଲେ ତୁମ୍ଭ ହସ୍ତେ
ଯୁଦ୍ଧେ ରହି ନ ପାରେ କେ ତୁମ୍ଭର ସାକ୍ଷାତେ ।
କି ଅପରାଧେ ତୁମ୍ଭଙ୍କୁ ଘେନିଗଲା ଯମ
ସୁନ୍ଦର ଦେଖି ତୁମ୍ଭଙ୍କୁ ନେଲା ହୋଇ ବାମ ।
କାହାକୁ ମୁଁ ଦୋଷ ଦେବି ପୋଡୁ ମୋରକର୍ମ
ମୋହର କପାଳେ ଏହା ଲିହିଥିଲା ଧର୍ମ ।
ଅଳପ ବୟସେ ମୁହିଁ ହୋଇଲହିଁ ରାଣ୍ଡ
ଆଦି ଦେବତାଙ୍କୁ କି ନ ଦେଲି କ୍ଷୀରଖଣ୍ଡ ।
କାହାର ଯଜ୍ଞକୁଣ୍ଡ ମୁଁ ଅନ୍ୟାୟେ ନାଶିଲି
କି ଅବା ପୂଜିତ ଶମ୍ଭୁଲିଙ୍ଗ ଭଗ୍ନକଲି ।
କେଉଁ ଗୁରୁଜନ ମୋତେ ଦେଲା ଏଡ଼େ ଶାପ
ଜୀବ ଥିବାଯାଏ ଅରଜିଲି ଏ ସନ୍ତାପ ।
ସ୍ତିରୀକୁଳେ ଜାତହୋଇ ମୁଁ ମହାପାପିନୀ
ବିଧବା ଯନ୍ତ୍ରଣା ଭୋଗକଲି ନିଲକ୍ଷଣୀ ।
ମୁହିଁ ମୂଢ଼ୀ କରି ନାହିଁ କିଛି ବ୍ରତ ଓଷା
ତେଣୁକରି ସ୍ୱାମୀରେ ମୁଁ ହୋଇଲି ନିଆଶା ।

ଭୋ ଦଇବ ସ୍ତିରୀଜନ୍ମ ଦେଲୁ କାହିଁପାଇଁ
ସ୍ୱାମୀ ବିନା ସ୍ତିରୀଙ୍କର ଅନ୍ୟଗତି ନାହିଁ ।
ପୁରୁଷ ସ୍ତିରୀ ଦୁଇଟି କରିଅଛୁ ଜାତ
ପରପୁଅ ପରଝିଅ କରୁ ଘଟସୂତ୍ର ।
ଏପରି କରି ଲଗାଇ ଅଛୁ ମୋହମାନ
ସୁଖୀ ହେଉ ଦୁଃଖୀ ହେଉ କାଟୁଥାନ୍ତି ଦିନ ।
ଅଭେଦ ପ୍ରାଣପିତୁଳା ମୋହର ଭାଙ୍ଗିଲୁ
ସୁଖୀଲୋକେ ଦୁଃଖ ଦେଇ କନ୍ଦର୍ପେ ଗଞ୍ଜିଲୁ ।
ବିରାଟ କୁମାରୀ ଘେନି ଦର୍ପଣ ସ୍ୱକରେ
ଅଲକ୍ଷଣ ଚିହ୍ନମାନ ଦେଖିଲା କାୟାରେ ।
ବହୁ ଅଳଙ୍କାର ଶୋଭା ନି ଦିଶେ ଦେହକୁ
ସ୍ୱାମୀ ଅଳଙ୍କାର ଏକା ନାରୀ ଶରୀରକୁ ।
ଏତେ ଅଳଙ୍କାର ମୋର ବିରାଜଇ କାୟେ
ସବୁ ଦିଶଇ କନ୍ଦର୍ପ ଭଗ୍ନ ହେଲା ପ୍ରାୟେ ।
ଭୋ ସ୍ୱାମୀ ଛାଡ଼ିଣ ମୋତେ ଗଲୁ ଏକା କାହି
ମୋଠାରୁ ସୁହୃଦ ତୋର ନ ଥିଲା ଯେ କେହି
ସ୍ୱାମୀ ତୋହର ମୋହର ରତିରଙ୍ଗବେଳେ
ଅଳଙ୍କାରମାନ ନ ଥାଇ ମୋ ବକ୍ଷସ୍ଥଳେ ।
ହୃଦୟକୁ ହୃଦୟ ନ ଲାଗେ ନାଥ ବୋଲି
ପରିହିତ ବସନକୁ ପକାଅ ଯେ ପେଲି ।
ଥିଲାମୋର ଯେତେ ସ୍ନେହ କାହାକୁ ତା ଦେଇ
ମରି ଶୋଇଲ ଯାଇଣ ଏବେ ରଣଭୂଇଁ ।
ଗଜଦନ୍ତ ପଲ୍ୟଙ୍କରେ ତୂଳିକାର ଶେଯ
ତାପରେ ଯେ ସିଞ୍ଚୁଥିଲ କର୍ପୂରର ରଜ ।
ଆଲଟ ଚାମର ବିଞ୍ଚୁଥିଲେ ଯେ ନାୟିକା
ଏହା ଛାଡ଼ି କେଉଁପରି ଶୋଇଲ ହେ ଏକା ।
ସ୍ୱାମୀ ତୁମ୍ଭ ଗୁଣ ଯେତେ କହିବଇଁ କିସ
ବଦନ ଦିଶେ ଶରଦ ଚନ୍ଦ୍ରମା ସଦୃଶ ।
ହୀରା କଣିକା ସମାନ ଦିଶେ ଦନ୍ତପନ୍ତି
ବସନ୍ତ କୋକିଳ ଜିଣି ତୁମ୍ଭର ଭାରତୀ ।
ଅଳପ ବୟସେ ତୁମ୍ଭେ ମହାଯୋଦ୍ଧା ବୀର
ସମାନ ନୁହେଁ ତୁମ୍ଭଙ୍କୁ ମହୀରେ କେ ବୀର ।
ଦିନେ ମୋହର ପ୍ରତି କ୍ରୋଧ ହୋଇନାହିଁ ଦେବ
ତୁମ୍ଭ ଗୁଣମାନ ସ୍ୱାମୀ କେ କହି ପାରିବ ।
ହା ହା ନାଥ ବୋଲିଣ ଯେ ପଡ଼ିଲା ଭୂମିରେ
ନାଥ ନାଥ ବୋଲି କର ମାରେ କପାଳରେ ।
ଗତ ଗୁଣମାନ କେତେ କହିବି ବାହୁନି
ଦେଉଳେ ଚଢ଼ାଇ କାଢ଼ିଦେଲା କେ ନିଶୁଣୀ ।
ଅନାଥର ନାଥ ମୋର ଅନ୍ଧର ଲଉଡ଼ି
ଭିକ୍ଷାପାତ୍ର ଗୋଟି ମୋର କେହୁ ନେଲା କାଢ଼ି

ସ୍ୱାମୀର ମରଣେ ପ୍ରାଣ ଛାଡ଼ୁ ମୋ ଶରୀରୁ
କରିବି ସତୀର କାର୍ଯ୍ୟ ଶୋକ ମୋର ସରୁ ।
ଯେଉଁ ସ୍ତିରୀ ସ୍ୱାମୀ ସଙ୍ଗେ ନ ଦିଅନ୍ତି ଝାସ
ଜୀବିତେ ହୀନ ହୁଅନ୍ତି ମଲେ ନର୍କେ ବାସ ।
ଯେଉଁ ସ୍ତିରୀ ସ୍ୱାମୀ ସଙ୍ଗେ ନାଶ ହୋଇଥାନ୍ତି
ସ୍ୱାମୀକୁଳ ପିତାକୁଳ ଉଦ୍ଧାର କରନ୍ତି ।
ଆହେ ଗୁରୁ କହ ଯାଇ ମୋ ପିତାଙ୍କ ଆଗ
ସ୍ୱାମୀ ଯେ ମୋହର ମଲେ କରି ରଣ ଯାଗ ।
ସ୍ୱାମୀଙ୍କ ସଙ୍ଗତେ ମୁହିଁ ହୋଇବି ଦହିର୍ଯ୍ୟ
ସତୀ ହୋଇ କରିବି ମୁଁ ସ୍ୱାମୀଙ୍କର କାର୍ଯ୍ୟ ।
ଏସନ ବଚନ ଶୁଣି ଚକ୍ରଧର ଆପେ
ବିଜେ ଦେବରାଜ ଭଗ୍ନୀବଧୂର ସମୀପେ ।
ସେ ସମୟେ ମାନ୍ୟଧର୍ମ ନ ରହିଲା ତହିଁ
କେଶବ ବୋଲନ୍ତି ନିଜେ ଉତ୍ତରାକୁ ଚାହିଁ ।
ମାଗୋ ଶୋକ ଜଳେ ପଡ଼ି କିମ୍ପା ହେଉ ବାଇ
ରଣ ଯଜ୍ଞରେ ପଡ଼ିଲେ ତୁମ୍ଭ ସ୍ୱାମୀ ଯାଇ ।
ପୂର୍ବର ଏହି ବିଧାନ କରିଛି ବିଧାତା
ନାଶ କରିବାକୁ ଅଛି ଶମନ ଦେବତା ।
ମର୍ତ୍ତ୍ୟରେ ଜନମ ହେଲେ ଅବଶ୍ୟ ମରିବ
ଶମନ ଦାଢ଼ରୁ ମାତ୍ର ଉବୁରି ନୋହିବ ।
ଅଦଭୁତେ ଆସଇ ଗୋ ଅଦଭୁତେ ଯାଇ
ଦେଶ ବିଦେଶ ଯେ ଯହିଁ ଥାଉ ମୃତ୍ୟୁ ହୋଇ ।
ମାଗୋ ମର୍ତ୍ତ୍ୟମଣ୍ଡଳକୁ ସଞ୍ଚିଅଛି ବିହି
ଏଥିରେ ଜନ୍ମି ଅମର କେହି ହୋଇନାହିଁ ।
ପୂର୍ବରୁ ଏମନ୍ତ ଅଛି ନ ଜାଣୁ କି ମାତ
ସ୍ୱାମୀ ଶୋକେ ମରିବାକୁ ନ ବଳାଅ ଚିତ୍ତ ।
ସବୁକାଳେ ଯମଦେବ କରେ ଅବିଚାର
ପିତା ମାତା ଥାଉଁ ପୁତ୍ରେ ନିଅଇ ଆଗର ।
ଶୁଣି କ୍ରୋଧେ ବୋଲେ ତହୁଁ ଏପରି ଉତ୍ତରା
ମାୟାଧର ପୁରୁଷ ତୁ ପୃଥ୍ୱୀ ଚିନ୍ତାହରା ।
ସ୍ୱାମୀ ମୋର ଅଟନ୍ତି ତ ତୁମ୍ଭର ଭଣଜା
ତାହାଙ୍କୁ ମରାଇ ଟିକେ ନ ପାଉଛ ଲଜ୍ଜା ।
ଛାଡ଼ିଲି ଶୋକକୁ ମୁହିଁ ତୁମ୍ଭର ବଚନେ
କରିବି ସ୍ୱାମୀଙ୍କ କାର୍ଯ୍ୟ ସତୀଙ୍କର ଯେହ୍ନେ ।
ଗୋବିନ୍ଦ ବୋଇଲେ ମାଏ କେହ୍ନେ ଦେବଝାସ
ଆମ୍ଭେ ତ ଶୁଣିଲୁ ତୁମ୍ଭ ଗର୍ଭ ବେନିମାସ ।
ଆତ୍ମହତ୍ୟା ଆବର ଯେ ବାଳହତ୍ୟା ଦୋଷ
ପରମ ସାଧବୀ ତୁମ୍ଭେ ବୁଝାଇବା କିସ ।
ମାତା ତୁମ୍ଭ ଗର୍ଭେ ଅଛି ଯେଉଁ ପୁତ୍ରଗୋଟି
ଇହଲୋକ ପରଲୋକ ଉଦ୍ଧରିବ ସେଟି ।

ସୋମବଂଶ ଉଦ୍ଧାରିବ ତୁମ୍ଭର ଯେ ପୁତ୍ର
ତୁମ୍ଭେ ଶୋକ ନିବାରଣ କର ଆଗୋ ମାତ ।
ସୁଭଦ୍ରାକୁ ବୁଝାଇଲେ ପୁରୁଷ-ଉତ୍ତମ
ଛାଡ଼ ମନରୁ ସନ୍ତାପ ନ କର କ୍ରନ୍ଦନ ।
ଅଭିମନ୍ୟୁ ପାଇଁ ଯେବେ ସମସ୍ତେ ମରିବ
ତଥାପିହିଁ ସେ କି ଆଉ ବାହୁଡ଼ି ଆସିବ ।
ଏହି ପରକାରେ ହରି ବୁଝାନ୍ତେ ବହୁତ
ସର୍ବେ ତାଙ୍କ ବାକ୍ୟେ ହେଲେ ଶୋକରୁ ନିବୃତ୍ତ
ଶ୍ରୀକୃଷ୍ଣ ବୋଲି ଅଟନ୍ତି ଯେବଣ ପୁରୁଷ
ସମସ୍ତଙ୍କ ହୃଦୟରେ ସେହୁ ପରକାଶ ।
ମାୟା କରି ସଂସାର ଯେ କରିଛି ବନ୍ଧନ
ତେଣୁ ମାୟାଧର ବୋଲି ଅଟେ ତାଙ୍କ ନାମ ।
ଅକ୍ରୋଧୀ ପୁରୁଷ ତୁହି ଦେବ ଯେ ଶ୍ରୀବସ୍ତି
ସମସ୍ତ ବିଷୟ ନାଥ ତୁହି ଅଛୁ ସଞ୍ଚି ।
ଯାବତ କାର୍ଯ୍ୟରେ ଶୁଭ ନାମ ଅନୁକୂଳେ
ଶେଷ ହୁଅଇ ନିର୍ବିଘ୍ନେ ପରମ ମଙ୍ଗଳେ ।
ଅପରାପର ତୋହର କେହି ନାହିଁ ନାଥ
ତୋ ନାମ ସ୍ମରଣେ କଳିପାପୁଁ ହୁନ୍ତି ମୁକ୍ତ ।
କାରଣ ଯେ ଉଦ୍ଧାରଣ ସବୁ ଅଟୁ ତୁହି
ଦୁରନ୍ତ ନାଶନେ ଦେବ ଚକ୍ର ଅଛୁ ବହି ।
ସ୍ୱାମୀ କଉତୁକେ ଧ୍ୱଂସ କଲୁ ମହୀଭାର
ଯୋଗୀଜନମାନଙ୍କର ହୃଦ ରତ୍ନହାର ।
ପଶିଛି ଅଗାଧଜଳେ ନରଜନ୍ମ ହୋଇ
କି ଅବା ମୋହର ଜ୍ଞାନ ତୋହ ମାୟା କହି ।
ସ୍ୱାମୀ ମୁଁ ମୂରୁଖ ଅଟେ ବାଆଷଠି ଜନ୍ମେ
ତବ ନାମକୁ ଲେଖିଲି ମୋ ସମାନ୍ୟ ଜ୍ଞାନେ ।
ତୁ ନାଥ ଜାତ କରାଉ ପୁଣି ଅନ୍ତ କରୁ
ଏ ଚରିତ ଲେଖିଲି ମୁଁ ତୁମ୍ଭର କୃପାରୁ ।
ସଂସାର ଚରିତ ମୁହିଁ ବୁଝିଲି ଏଥର
କୃପାକରି ଏଥୁଁ ମୋତେ ତାର ଚକ୍ରଧର ।
ଜଗତ ବୋଧ ନିମନ୍ତେ ନାମ ଜଗନ୍ନାଥ
ସମସ୍ତ ଜୀବକୁ ତୁହି କରୁ ଆତଯାତ ।
ନିର୍ମଳ ଜଳରେ ଯେହ୍ନେ ପଦ୍ମବନ ଗୋଟି
ସୌରଭକୁ ବିସ୍ତାରିଣ ନାଡ଼େ ଥାଇ ଫୁଟି ।
ତେହ୍ନେ ବିକଶିତ କରୁ ଯୋଗୀଜନ ହୃଦେ
ମାୟା ମୋହ କି ବୁଝିବୁ ତୋ ବିନା ପ୍ରସାଦେ
ନମୋ ନମୋ ନାରାୟଣ ଚଉବର୍ଗଦାତା
ତିନି ଭୁବନରେ ପ୍ରଭୁ ତୁମ୍ଭେ ହର୍ତ୍ତା କର୍ତ୍ତା ।
ସଦା ଭାସୁଛି ସଂସାର ମୋହଜଳେ ପଶି
ଏଥିରୁ ଉଦ୍ଧାର କର ତୁମ୍ଭେ ବ୍ରହ୍ମରାଶି ।
ଏ ଭବସାଗରୁ ହରି ବାରେକ ଉଦ୍ଧର
ଶୂଦ୍ର ଶାରଳାଦାସ ଯେ ଭାବେ ନିରନ୍ତର ।

■ ■ ■

## କୃଷ୍ଣଙ୍କ ସହିତ ପାଣ୍ଡବଙ୍କ ମନ୍ତ୍ରଣା ଓ ଜୟଦ୍ରଥ ବଧାର୍ଥେ ଅର୍ଜ୍ଜୁନଙ୍କର ପ୍ରତିଜ୍ଞା

ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ସୁଭଦ୍ରା ଉତ୍ତରା ଶୋକ ହୋଇଯାନ୍ତେ ଶାନ୍ତି ।
ପୁଣ ପାଣ୍ଡବେ ଏକତ୍ରେ ବିଚାରନ୍ତି ବସି
ଦେଖ ରଜନୀ ଅର୍ଦ୍ଧେକ ହୋଇଲାଣି ଆସି ।
ରାଜ୍ୟଲୋଭେ ଆମ୍ଭେମାନେ କଲୁ ଏ ବିବାଦ
ଜୀବନେ ତ ଆଶା ନାହିଁ କି ଛାର ସମ୍ପଦ ।
ଯାହାପାଇଁ ଦ୍ୱନ୍ଦ୍ୱ କରୁ ସେହି ଗଲା କାହିଁ
କେ ପଡ଼ିବ କେ ରହିବ କିଛି ଜଣା ନାହିଁ ।
କ୍ଷଣେ କ୍ଷଣକେ ପ୍ରମାଦ ଅଛଇ ଆବୋରି
କାଲି ପ୍ରାତେଃ ସର୍ବେ ଯିବା ରଣସଜ୍ଜା କରି ।
ତୁହି ଯେବେ ପୁତ୍ରଶୋକେ ନ ଯିବୁଟି ରଣେ
କୌରବେ ଲାଗିବେ ଆମ୍ଭ ସହ ପ୍ରାଣପଣେ ।
ଶତ୍ରୁର ଚାରଗଣେ ଯେ ଥାଆନ୍ତି ଗୁପତେ
ବାରତା କହିବେ ମାନଗୋବିନ୍ଦ ସାକ୍ଷାତେ ।
ଶୋକାନଳେ ପାଣ୍ଡବ ଯେ ଯାଉଛନ୍ତି ଭାସି
ଦଣ୍ଡକୁ ସାଜି ନ ପୁଣ ବୋଲନ୍ତି ସେ ଆସି ।
ତୋହର ନନ୍ଦନକୁ ସେ ବଧକଲେ ରଣେ
କେମନ୍ତେ କୌରବେ ଏବେ ମରିବେକ ପ୍ରାଣେ
ତହିଁକି ଉପାୟ କର ଯେ ଅଛି ତୋ ବୁଦ୍ଧି
ଶତ୍ରୁକୁ ଜିଣିଲେ ସିନା କାର୍ଯ୍ୟ ହେବ ସିଦ୍ଧି ।
ଲୋଡ଼ିଲେ ପାଇବା ନାହିଁ ଆଉ ଅଭିମନ୍ୟୁ
କି ହେବ କାଟିଲେ ଟିକିଟିକି କରି ତନୁ ।
ଚିନ୍ତା କଲେ ଏ ଶରୀର ହେବ ଅତି କ୍ଷୀଣ
ସର୍ବେ ଉଠ ଚାଲ ଯାଇଁ କରିବା ସ୍ନାହାନ ।
ଅର୍ଜ୍ଜୁନ ବୋଇଲେ ସ୍ୱାମୀ ମୋର ସ୍ନାନ ନାହିଁ
ଜୟଦ୍ରଥ ନ ମାରିଲେ ନ ଭୁଞ୍ଜିବି ମୁହିଁ ।
ଏହି ନିୟମ ମୋହର ଶୁଣ ଦାମୋଦର
କାଲି ଯୁଦ୍ଧେ ଜୟଦ୍ରଥ କରିବି ସଂହାର ।
ତାହା ଯୋଗରୁ ପଡ଼ିଲା ପୁତ୍ର ଅଭିମନ୍ୟୁ
ତିରଣ ପ୍ରମାଣ କରି କାଟିବି ତା ତନୁ ।
ବନବାସେ ଦ୍ରୌପଦୀକି ହରିଲା ଯୁକତେ
ସେ ଦୋଷ ନ ଧରିଲି ମୁଁ ଭଗ୍ନୀର ନିମନ୍ତେ ।
ବନ୍ଧୁଭାବ ଧରି ତାର ନ ଛେଦିଲି ଶିର
ତାହା ହେତୁ ନାଶଗଲା ମୋହର କୁମର ।

ମୁଁ ଯେବେ ଜୟଦ୍ରଥକୁ ନ ମାରିବି କାଲି
ଧିକ୍ କ୍ଷତ୍ରିପଣ ଦଶ ନାମକୁ ବହିଲି ।
ନ ଚଢ଼ିବି ନନ୍ଦିଘୋଷେ ନ ଧରିବି ଧନୁ
କପଟରେ ମରାଇଲ ପୁତ୍ର ଅଭିମନ୍ୟୁ ।
ଧ୍ୱଜରେ କପିକେତନ କୃଷ୍ଣ ଯାର ରଥେ
ତା ପୁତ୍ର ଯେ ନାଶଗଲା ଏତେ ବଳଥାନ୍ତେ ।
ଭାରତ ସମରେ ଶୁଭେ ମୋର ବୀରପଣ
ଜୟଦ୍ରଥେ ନ ମାଇଲେ ପୋଡୁ ମୋର ଟାଣ ।
ପଶ୍ଚିମେ ଉଦୟ ଯେବେ ହେବ ଦିନକର
ନଳିନୀ ଫୁଟିବ ଯେବେ ପର୍ବତ ଶିଖର ।
ଯଦି ଆବୋରିବେ ବ୍ରହ୍ମା ରୁଦ୍ର ପୁରନ୍ଦର
ଜୟଦ୍ରଥକୁ ମାରିବି ଏ ସତ୍ୟ ମୋହର ।
ଅକୀର୍ତ୍ତି କର୍ମରେ ଯେବେ ବଞ୍ଚୁଥାନ୍ତି ଜନ
ଦେବ ପିତୃଙ୍କୁ ନିଆଶା କରେ ଯେ ଅଜ୍ଞାନ ।
ଯେବଣ ଜନ ବର୍ତ୍ତନ୍ତି ଏପରି ସ୍ୱଭାବେ
ଦେବଙ୍କ ବିତ୍ତ ହରନ୍ତି ଯେଉଁମାନେ ଲୋଭେ ।
ଶକ୍ତି ଅନୁସାରେ ଯେହୁ ନ ଦିଅନ୍ତି ଦାନ
ଗ୍ରହଣ ସମୟେ ଯେହୁ ଭୁଞ୍ଜଇଟି ଅନ୍ନ ।
କୁଜନ ସଙ୍ଗତେ ଯେହୁ କରଇଟି ଗୋଷ୍ଠି
ଯୋଗ୍ୟମାନ ହୋଇ ଯେହୁ ହେଉଥାଇ କଷ୍ଟୀ
ପର ଦୁଃଖ ଦେଖିଣ ଯେ ଦୟା ନ କରଇ
ଗୁରୁଜନ ଦେଖିଣ ଯେ ନିର୍ଭୟ ହୁଅଇ ।
ଏତେଲୋକଙ୍କ ସଙ୍ଗେ ମୁଁ ଗଣିତା ହୋଇବି
କାଲି ଯେବେ ଜୟଦ୍ରଥ ମାରି ନ ପାରିବି ।
ବିଶ୍ୱାସଘାତକ ଯେହୁ ହୁଅଇଟି ଜନ
ହରିହର ମୂର୍ତ୍ତିକି ଯେ ନ କରେ ଦର୍ଶନ ।
ଧନୀ ହୋଇଣ ଯେ କରେ ପରଧନେ ଆଶା
ପରଦ୍ରବ୍ୟ ହରିବାକୁ ଯେ କରେ ଭରସା ।
ଦାତବ୍ୟ ନିବାରନ୍ତି ଯେ ଦାନ ଦେବାକାଳେ
ପରସ୍ତିରୀ ପରଦ୍ରବ୍ୟ ହରନ୍ତି ଯେ ବଳେ ।
ନିଜକର୍ମ ଅନୁସାରେ ହୁଅଇ ଯେ ରୋଗୀ
ବିଷୟ ନ ବୁଝି ଯେହୁ ପରେ ହୋଇ ଭୋଗୀ ।
ଗୋଚର ଭୂମିରେ ଯେହୁ କରନ୍ତିଟି ଚାଷ
ଜ୍ଞାନ ଜନ ହୋଇ କରେ ନୀଚେ ସହବାସ ।
ଜୟଦ୍ରଥେ କାଲି ଯେବେ ନ ମାରେ ସମରେ
ଗଣିତା ହୋଇବି ଏହି ଲୋକଙ୍କ ସଙ୍ଗରେ ।
ବିବାହ ସ୍ତିରୀକି ପରିତ୍ୟାଗ ଯେ କରଇ
ଆପଣୀ ଥାଉଁ ତା ଭାର୍ଯ୍ୟା ଅପରେ ନିଅଇ ।
ଗୋ ଜୀବମାନଙ୍କୁ ଯେହୁ ପ୍ରାଣେ କରେ ଘାତ
ସୁଭୋଜନ ପାଇ ଯେହୁ କରନ୍ତି ଅସ୍ୱାର୍ଥ ।
ଚତୁର୍ଥ ଦଶମୀ ଏକାଦଶୀ ଯେ ସପ୍ତମୀ
ଆମିଷ ଭୁଞ୍ଜନ୍ତି ଯେହୁ ଆବର ପଞ୍ଚମୀ ।
ଗ୍ରହପୀଡ଼ା କାଳେ ଯେହୁ ନ କରନ୍ତି ପୂଜା
ଶୟନ କରନ୍ତି ଯେହୁ ବକ୍ର କରି ଶଯ୍ୟା ।
ଏତେ ଲୋକମାନଙ୍କର ଯେତେ ମହାପାପ
ଲଭିବି ଜୟଦ୍ରଥେ ନ କଲେ କାଲି ଲୋପ ।
ଏକା ସୂର୍ଯ୍ୟଲୋକରେ ଯେହୁ ଭୁଞ୍ଜେ ଦୁଇବେଳ
ନୀଚ ନାରୀଟାରେ ବୀର୍ଯ୍ୟ ଦିଏ ହୋଇ ଭୋଳ
ଧନ ଘେନିଣ ବିକନ୍ତି ଯେହୁ ସ୍ତିରୀଲିଙ୍ଗ
କୁଜନମାନଙ୍କୁ ଯେହୁ ବୁଝାନ୍ତି ସୁସଙ୍ଗ ।
କର୍ମହୀନେ ଯେହୁ ବିପ୍ର କାଳ ବଞ୍ଚୁଥାନ୍ତି
ଯେଉଁ ବିପ୍ର ଧନ ଆଶେ ପ୍ରମାଦ ବାଞ୍ଛନ୍ତି ।
ବ୍ରାହ୍ମଣ ହୋଇଣ ଯେହୁ ହୁଅନ୍ତି ଅଶାନ୍ତି
ମତ୍ତଗର୍ବ ଭାବେ ହରେ ଯେ ବିପ୍ର ସମ୍ପତ୍ତି ।
ଗଉରବ ସ୍ତିରୀଠାରେ ଯେ କରଇ ଆଶା
ପରଧନକୁ ହରିବା ଯାହାର ମନୀଷା ।
ଏ ସର୍ବ ଲୋକଙ୍କ ସଙ୍ଗେ ମୁଁ ହେବି ସମାନ
ଯେଉଁ ରାଜା ବନ୍ଦୀ କରେ ବୃଥା ପ୍ରଜାଜନ ।
ପିତାମାତା ଅନାଦର କରେ ଯେ ଅଜ୍ଞାନ
ପଣ୍ଡିତମାନଙ୍କୁ ଯେହୁ କରନ୍ତି ଅମାନ୍ୟ ।
ଶାସ୍ତ୍ର ନ ବୁଝି ନ ଶୁଣି ନିନ୍ଦେ ଧର୍ମ କଥା
ଏତେ ଲୋକଙ୍କର ପାପ ନେବି ମୁଁ ସର୍ବଥା ।
ଆଶା ଦେଖାଇଣ ଯେହୁ କରଇ ନିରାଶା
ସଦା ଠକି ନେବାପାଇଁ ଯାହାର ମନୀଷା ।
ଲେଖାହେବି ମୁହିଁ ପ୍ରଭୁ ଏହାଙ୍କର ତୁଲେ
ସୂର୍ଯ୍ୟଅସ୍ତ ଯାଏ ଜୟଦ୍ରଥ ନ ମାଇଲେ ।
ବଞ୍ଚୁଥାନ୍ତି କ୍ରିୟାଭ୍ରଷ୍ଟ ହୋଇ ଯେତେ ନର
ଅତିଥି ମାଗେ ଫେରାନ୍ତି ଯେଉଁ ଯେଉଁ ଘର ।
ପଞ୍ଚପର୍ବେ ମତ୍ସ୍ୟ ମାଂସ ଖାଏ ଯେଉଁଜନ
ବ୍ରତ ଉପବାସେ ରହି ଯେ କରେ ମୈଥୁନ ।
ସ୍ନାନାନ୍ତେ ପାଲଟା ବସ୍ତ୍ର ଯେ ନର ପିନ୍ଧଇ
ପାକାମ୍ବରଣ ସ୍ତିରୀକି ବଳେ ଯେ ରମଇ ।
ପଡ଼ିଶା ସମ୍ପତ୍ତି ଯେହୁ ଦେଖି ନ ପାରନ୍ତି
ମିଥ୍ୟାକଥା କହି ଯେହୁ ପରକୁ ରଞ୍ଜନ୍ତି ।
ଯେ ଜନ ଚିତ୍ତ ଅଶୁଦ୍ଧ କରି ଦ୍ୟନ୍ତି ଦାନ
ଏତେଲୋକ ସଙ୍ଗେ ମୁହିଁ ହୋଇବି ଗଣନ ।
କାଲି ଯଦି ଜୟଦ୍ରଥେ ମୁହିଁ ନ ମାରଇ
ଜାଣ ହରି ନିଶ୍ଚେ ସତ୍ୟଭଗ୍ନ ହେବି ମୁହିଁ ।
ଧନଲୋଭେ ଯେଉଁ ନର ବିକେ ମାଘିତିଳ
ବେଳକାଷ୍ଟେ ପୁଣି କ୍ଷଣେ କରନ୍ତି ଯେ ହଳ ।

ଯେ ଦୁହେଁ ପଞ୍ଚାଶଦିନ ବତ୍ସା ନ ପିଆଇ
ଶରଣ ପଶିଲେ ଯେହୁ ରକ୍ଷା ନ ଲଭଇ ।
ସମ୍ପଦେ ଥାଉ କୁଟୁମ୍ବ ଧନେ ନ ପୋଷନ୍ତି
ଅଦୟା ମନ ହୋଇଣ ସର୍ବଦା ବଞ୍ଚନ୍ତି ।
ଏକାଦଶୀ ଶିବରାତ୍ରି ଗ୍ରହଣ କାଳରେ
ଯେ ନର ଭୁଞ୍ଜନ୍ତି ଅନ୍ନ ଏ ତିନି ଦିନରେ ।
ସମରେ ପଶି ଯେ କ୍ଷତ୍ରୀ ହୁଅଇ ନିସତ
ବ୍ରାହ୍ମଣ ହୋଇ ଜଳକୁ ହୁଅନ୍ତି ଯେ ଭୀତ ।
ସ୍ତିରୀ ହୋଇ ଅନଳକୁ ଯେବେ କରେ ଭୟେ
ଏହି ପାପୀଙ୍କ ସଙ୍ଗତେ ସଙ୍ଗୀ ଦେବରାୟେ ।
ଯେବଣ ଜନ କରନ୍ତି ଗର୍ବେ ଗୋରୁହତ୍ୟା
ବ୍ରାହ୍ମଣଙ୍କୁ ମାରି ଯେହୁ ଭାଙ୍ଗନ୍ତି ଦେବତା ।
ସ୍ତିରୀଙ୍କୁ କ୍ରୋଧରେ ନାଶ କରେ ଯେଉଁ ଜନ
ଆତ୍ମଘାତୀ ହୋଇଣ ଯେ ହରାନ୍ତି ଜୀବନ ।
ମାନିତା ନାରୀ ହରଣ କରେ ଯେଉଁ ନର
ନିଜଭାର୍ଯ୍ୟା ଉପେକ୍ଷି ଯେ କରେ ପରଦାର ।
ଅସ୍ୱାର୍ଥ ଭାବେ ବଞ୍ଚୁଣ ଥାନ୍ତି ଯେଉଁଜନ
ଆପଣା ଜାତି ଲୁଚାନ୍ତି ଯେ ମୂଢ଼ ଅଜ୍ଞାନ ।
ବିଧବା ବ୍ରାହ୍ମଣୀ କି ଯେ ହରେ କୁତୂହଳେ
ସେ ପାପ ଭୋଗିବି ଜୟଦ୍ରଥେ ନ ମାଇଲେ ।
ଧନ ଘେନି ବିକଇ ଯେ ନିଜର ଆବାସ
ପ୍ରୀତି ଉପୁଜାଇ ଯେହୁ ତାକୁ କରେ ନାଶ ।
ପରେ ଚାଟୁ କହି ଯେହୁ ହରୁଥାନ୍ତି ଦିନ
ବଡ଼ଶୀ ଥୋପ ପକାଇ ମାରନ୍ତି ଯେ ମୀନ ।
ଯେବଣ ଜନ ନ କରେ ବ୍ରତ କିବା ଓଷା
କନ୍ୟା ଦେବାକୁ କରିଣ କରଇ ନିଆଶା ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଚାରିଜାତି
ଏଥେ ଜନ୍ମହୋଇ ଯେହୁ ମଦିରା ଖାଆନ୍ତି ।
ତୀର୍ଥ ଜଳେ ଯାଇ ଯେହୁ ନ ବୁଡ଼ାନ୍ତି ଶିର
ଆତ୍ମ ବଡ଼ିବାରେ ନିନ୍ଦା କରନ୍ତି ପରର ।
ଖଣ୍ଟା ଖୋଳିଣ କଣ୍ଟାକୁ ପକାନ୍ତି ଯେ ବାଟେ
ଅନ୍ନ ସହିତେ ଜହର ଯେ ଦିଏ କପଟେ ।
ଜୟଦ୍ରଥ ନ ମାଇଲେ କାଲିର ସମରେ
ମୋତେ ଗଣିବ ଯେ ଏହି ପାପୀଙ୍କ ସଙ୍ଗରେ ।
ଭଲ ପଦାର୍ଥ ଖାଇ ସେ କୁଟୁମ୍ବେ ଲୁଚାଇ
ଶରଧା କରିଣ ଯେହୁ ଯାଚି ନ ଦିଅଇ ।
ରାଗେଣ ପୋଡ଼ନ୍ତି ଯେହୁ ପରର ଆବାସ
ଯତି ବ୍ରାହ୍ମଣ ବୈଷ୍ଣବେ ଯେ କରେ ଝିଙ୍ଗାସ ।
ପରରେ କପଟ କରୁଥାନ୍ତି ଯେଉଁ ଜନ
ପରନିଦ୍ରା ଅକାରଣେ ଯେ କରେ ଭଙ୍ଗନ ।
ଶୂକର ମାଂସ ସୁଜାତି ହୋଇଣ ଭକ୍ଷନ୍ତି
ପରର ଯେ ନିନ୍ଦାବାଦ ସର୍ବଦା କରନ୍ତି ।
ଏହି ଲୋକଙ୍କର ତୁଲେ ହୋଇବି ଗଣନ
କାଲି ଜୟଦ୍ରଥ ମୁହିଁ ନ କଲେ ଛେଦନ ।
ଆପଣା ଭାରିଯା ପାକାମ୍ବରଶର ପାଣି
ପିତୃଲୋକଙ୍କୁ ତର୍ପଣ କରଇ ତା ଆଣି ।
ହେ ଚନ୍ଦ୍ରସୂର୍ଯ୍ୟ ବରୁଣ ଦଶଦିଗପାଳେ
ଚାରିଦିଗ ଚାରିଯୁଗ ଏ ମହୀମଣ୍ଡଳେ ।
ବିହନ୍ତା ପୁରୁଷମାନେ ଆଉ ବିଶ୍ୱଦେବା
ରଣକାଳେ କାଲି ସର୍ବେ ସପକ୍ଷ ହୋଇବା ।
ଯଦି ମୁହିଁ ଜୟଦ୍ରଥେ ନ ମାରଇ କାଲି
ଅଗ୍ନିରେ ଝାସି ମରିବି ଏହି ବ୍ରତ କଲି ।
ଗୋବିନ୍ଦ ବୋଇଲେ ବହୁପାତକ ତ ଅଛି
ବିସ୍ତାରିଣ କେତେ ତୁହି କହିବୁ ବିବସ୍ଥି ।
ଶୁଣି ଅତ୍ୟନ୍ତ କ୍ରୋଧରେ କହନ୍ତି ଅର୍ଜ୍ଜୁନ
ଆବର କଥାଏ ମୋର ଶୁଣ ଭଗବାନ ।
ବହିଯିବା କଥାକୁ ଯେ ବସିଣ ଝୁରଇ
ପରର କଥାକୁ କାନ ଡେରିଣ ଶୁଣଇ ।
ବାଟରେ ଥିବା ବୃକ୍ଷକୁ ଯେ ଜନ କାଟନ୍ତି
ନିର୍ଦ୍ଦୋଷ ଜନଙ୍କୁ ଯେହୁ ଦଣ୍ଡମାନ ଦ୍ୟନ୍ତି ।
ଏତେ ଲୋକଙ୍କର ତୁଲେ ଜାଣ ମୁହିଁ ଜଣେ
ଯଦି ଜୟଦ୍ରଥକୁ ନ ମାରେ କାଲି ରଣେ ।
ଅର୍ଜ୍ଜୁନର ଏହିପରି ପ୍ରତିଜ୍ଞାକୁ ଶୁଣି
ହସିଣ କହନ୍ତି ତହୁଁ ଦେବ ଚକ୍ରପାଣି ।
ଦୁଃସହ ପ୍ରତିଜ୍ଞା ତୁହି କଲୁ ଧନଞ୍ଜୟ
ତୋ ପ୍ରତିଜ୍ଞା ଶୁଣି ମୋତେ ଲାଗୁଅଛି ଭୟ ।
ଅଛନ୍ତି ଭରଦ୍ୱାଜଙ୍କ ପୁତ୍ର ଦ୍ରୋଣଗୁରୁ
ସେନାପତି ହୋଇଛନ୍ତି ଭୀଷ୍ମଙ୍କ ଉତ୍ତାରୁ ।
ପର୍ଶୁରାମ ବଚନେ ସେ ମହା ଶୂରବନ୍ତ
ଶସ୍ତ୍ରମାନ ଯେପରି ତୁ ଜାଣୁ ତା ସମସ୍ତ ।
ତାହାଙ୍କର ନନ୍ଦନ ଯେ ଅଟେ ଅଶ୍ୱତ୍ଥାମା
ଚିରଜୀବୀ ତାହାକୁ ସରି ନୁହେଁ ଇନ୍ଦ୍ରବ୍ରହ୍ମା ।
ବାଳକାଳେ ଶର ବିନ୍ଧୁ ଅନିଳ ପର୍ବତେ
ପଞ୍ଚଯୂଣ ସେହି ଗିରି ଫୁଟେ ଶରାଘାତେ ।
କୃପାଚାର୍ଯ୍ୟ ଅଟନ୍ତି ଯେ ଦ୍ରୋଣଙ୍କର ଶଳା
କୃପଙ୍କର ଜ୍ୟେଷ୍ଠ ଅଶ୍ୱତ୍ଥାମାର ମଉଳା ।
ଯାହାର ଧନୁ ଧିଇଲେ କମ୍ପି ଉଠେ ସ୍କନ୍ଧ
ଭୟେ ଗୁରୁ ହୋଇ ଶିଖାଇଲେ ସଦାନନ୍ଦ ।
ମାଦ୍ରୀଙ୍କ ଭ୍ରାତା ଅଟନ୍ତି ମହାରଥୀ ଶଲ୍ୟ
ଭାରତ ସମରରେ ସେ ଅଟେ ମହାମଲ୍ଲ ।

ସେ ହସ୍ତେ ଧନୁ ଧଇଲେ ମୁହିଁ କରେ ଭୟ
ଶଲ୍ୟ ଛାମୁରେ ଯୁଝିବ ଅଛି କା ଉପାୟ ।
ତୁମ୍ଭର ସୋଦର ସେହୁ ରାଧାର ନନ୍ଦନ
ଡରି ତାକୁ ପୃଥ୍ୱୀ ଦିଏ ଲକ୍ଷେ ଭାର ସ୍ୱର୍ଣ୍ଣ ।
ଆଣ୍ଠରେ ପାଦକୁ ମହୀପରେ ପକାଇଲେ
ବସୁନ୍ଧରୀର ମୁଖରୁ ରୁଧିର ଯେ ଗଳେ ।
ଭାରତେ ଭାରୋଇମଲ୍ଲ କ୍ଷତ୍ରି ଶିରୋମଣି
ତାହାର ସାକ୍ଷାତେ ରହି କେ ଯୁଝିବ ପୁଣି ।
ଧନୁଗୁରୁ ମନ୍ତ୍ରଗୁରୁ ଦେବ ବିଦ୍ୟାଗୁରୁ
ଶସ୍ତ୍ରଗୁରୁ ଶାସ୍ତ୍ରଗୁରୁ ସର୍ବ ଦୀକ୍ଷାଗୁରୁ ।
ସୋମବଂଶ ମଣ୍ଡନ ଯେ ପିତାମହ ଦେବା
ଶାନ୍ତନୁ ସାନୁଜ ସାର ରଥି ଭୂରିଶ୍ରବା ।
ଅଳମ୍ବୁଷ ଅଳାୟୁଧ କୈଶିକ ଏ ତିନି
ଏମାନେ ଧନୁ ଧଇଲେ କମ୍ପଇ ମେଦିନୀ ।
ଭୂତ ଭବିଷ୍ୟତଜ୍ଞାତା ମନ୍ତ୍ରୀ ଯେ ଶକୁନି
ଚାହିଁଲେ ତାକୁ ଦିଶଇ ଏ ବ୍ରହ୍ମାଣ୍ଡ ତିନି ।
ମାନଗୋବିନ୍ଦ ଯେ ଏକା କ୍ଷତ୍ରୀ ମହୀତଳେ
ତୁମ୍ଭ ସମ୍ପତ୍ତି ହରିଲା ସେହୁ ବୁଦ୍ଧବଳେ ।
ନିର୍ଝର ଦେଶର ବୀରବର ମହୀପତି
ନବସସ୍ର ଯୋଦ୍ଧା ତାଙ୍କ ସନ୍ନିଧେ ଅଛନ୍ତି ।
ଗତ ଆଗତ ଜାଣଇ ମନ୍ତ୍ରୀ ଯେ ସଞ୍ଜୟ
କଳିଙ୍ଗସେନ ଜାଣଇ ବହୁତ ଉପାୟ ।
ଶତେକ ସୋଦର ଘେନି ମାନଚକ୍ରବର୍ତ୍ତୀ
ଏକଭାଇ ତୁଲେ ଛନ୍ତି ମର୍ଭୂତେକ ହସ୍ତୀ ।
ତିନିସାଗର ମୁକୁଟ ବନ୍ଧା ରଥୀ ଛନ୍ତି
ତ୍ରିପରାର୍ଦ୍ଧ ଶଲ୍ୟ ତୁଲେ କାଣ୍ଡ ବିନ୍ଧା ରଥୀ ।
ଦୁଃଶୀଳାର ବଲ୍ଲଭ ଯେ ଅଟେ ଜୟଦ୍ରଥ
ଈଶ୍ୱରଙ୍କୁ ସେବି ବର ପାଇ ସେ ଶକତ ।
ପିନାକ ସମାନେ ତାର ହସ୍ତେ ଅଛି ଧନୁ
ପ୍ରତ୍ୟକ୍ଷ ପ୍ରତିଜ୍ଞା ତାର ତୁହି କି ନ ଜାଣୁ ।
କିମ୍ପା ଏଡ଼େ ପ୍ରତିଜ୍ଞା ତୁ କଲୁ ଅକାରଣେ
ମାରି ପାରିବୁ କି ତୁହି ଜୟଦ୍ରଥେ ରଣେ ।
ମୃତ୍ୟୁଭେଦ କହିକରି ଭୀଷ୍ମ ନାଶଗଲା
ତେବେ ନ ମରି ଇଚ୍ଛାରେ ଶରଶଯ୍ୟା କଲା ।
ତୋ ପ୍ରତିଜ୍ଞା ଶୁଣୁ ମୋର ନ ସ୍ଫୁରଇ କିଛି
କେହ୍ନେ ଜୟଦ୍ରଥକୁ ତୁ ମାରିବୁ ବିବସ୍ତି ।
କୃଷ୍ଣଙ୍କ ବଚନ ଶୁଣି ବୋଲନ୍ତି ଅର୍ଜ୍ଜୁନ
ଏକମାତ୍ର ତୁମ୍ଭେ ମୋତେ ହୋଇଲେ ପ୍ରସନ୍ନ ।
ତାହାକୁ ରକ୍ଷା କରିବ କେ ଅଛି ଜଗତେ
କାଲି ନିଶ୍ଚୟ ମାରିବି ମୁହିଁ ଜୟଦ୍ରଥେ ।
ଯଦି ସପକ୍ଷ ହୋଇବେ ବ୍ରହ୍ମାରୁଦ୍ର ଇନ୍ଦ୍ରେ
ଜୟଦ୍ରଥକୁ ମାରିବି ତୁମ୍ଭର ପ୍ରସାଦେ ।
ଅର୍ଜ୍ଜୁନ ମୁଖୁ ଏପରି ବଚନକୁ ଶୁଣି
ସ୍ନେହେ ଆଲିଙ୍ଗନ କଲେ ଦେବ ଚକ୍ରପାଣି ।
ତୁହି ମୋର ପ୍ରାଣସଖା ବୀର ଫାଲଗୁନି
ଜୟଦ୍ରଥେ କେ ରଖିବ କାଲି ମହୀ ତିନି ।
ଯେବେ ସେହିଠାରୁ ସେହି ବଳିଯିବ ରଣେ
ଚକ୍ର ପେଷି ନାଶିବଇଁ ଭଗ୍ନିଜାଭିମାନେ ।
ଏହା କହି ପାର୍ଥକର ଧରି ଜଗନ୍ନାଥ
କାହାକୁ କିଛି ନ କହଇ ଉଠିଲେ ତ୍ୱରିତ ।
କପିଧ୍ୱଜ ରଥେ ଦୁହେଁ କରି ଆରୋହଣ
କଇଳାସେ ଗଲେ ଯହିଁ ହରଙ୍କ ଭୁବନ ।
ପାର୍ବତୀ ସହିତେ ବସିଛନ୍ତି ବିଶ୍ୱନାଥ
ଦେଖି କୃଷ୍ଣାର୍ଜ୍ଜୁନ ହେଲେ ତାଙ୍କୁ ପ୍ରଣିପାତ ।
କହନ୍ତି ଶ୍ରୀକୃଷ୍ଣ ହସ୍ତଯୋଡ଼ି ସ୍ତୁତିବାଣୀ
ଦେବ ଦେବ ମହାଦେବ ଦେବ ଶୂଳପାଣି ।
ସମୁଦ୍ର ମନ୍ଥନେ ଘୋର ଗରଳ ଉଠିଲା
ବିଶ୍ୱ ସଂସାର ଦହନ ସେହି କରୁଥିଲା ।
ସୃଷ୍ଟି ନାଶ ଦେଖି ଦେବଗଣ କଲେ ସ୍ତୁତି
ଦେବଗିରେ ସନ୍ତୁଷ୍ଟ ତୁ ହୋଇ ପଶୁପତି ।
ଗଣ୍ଡୁଷେ ତା ପାନକରି ରଖିଲ ଜଗତ
ସେ ଯଶ ସଂସାରେ ତବ ହୋଇଲା ଘୋଷିତ
ସୃଷ୍ଟି ସ୍ଥିତି ପ୍ରଳୟର ତୁମ୍ଭେ ଆଦିମୂଳ
ନିବେଦନ କରେ ନାଥ ହୁଅ ଅନୁକୂଳ ।
ଗୋବିନ୍ଦଙ୍କ ସ୍ତୁତି ଶୁଣି ଦେବ ଗଙ୍ଗାଧର
ମୃଦୁ ହାସ୍ୟେ ତାଙ୍କୁ ଦେବ କରିଲେ ଉତ୍ତର ।
ମୋହର ବିଧାତା ତୁମ୍ଭେ ବିଶ୍ୱର ପାଳକ
ଯେ ନ ଜାଣେ ସେହି କହେ ନନ୍ଦର ବାଳକ
ଭୂଭାର ନାଶନେ ତୁମ୍ଭେ ହେଲ ଅବତାର
ଅର୍ଜ୍ଜୁନକୁ ଘେନି ସୁଖେ କରୁଛ ବିହାର ।
ଯାହା ଆଜ୍ଞା କରିବ ତା କରିବି ପାଳନ
କି କହୁଛ କହ ଶୀଘ୍ର ଦେବ ନାରାୟଣ ।
ଗୋବିନ୍ଦ ବୋଇଲେ ଦେବ କର ଅବଧାନ
କୌରବ ପାଣ୍ଡବ ଯୁଦ୍ଧ ନୁହେଁ ସମାଧାନ ।
ଅନ୍ୟାୟ ସମରକରି ଅଭିମନ୍ୟୁ ବୀରେ
ବେଢ଼ିକରି ମାଇଲେ ଯେ କୌରବ ପାମରେ
ବିପକ୍ଷ ବିନାଶ ପାଞ୍ଚି କରିଅଛି ପଣ
କାଲି ନ ମାଇଲେଁ ନିଶ୍ଚେ ହୋଇବ ଦହନ ।
ଏହିହେତୁ ନିବେଦୁଛୁଁ ଶୁଣ ଗଙ୍ଗାଧର
ଜୟଦ୍ରଥେ ଜୟ ପାର୍ଥ କରିବ ସମର ।

ଶଙ୍କର ବୋଇଲେ ହରି ଶୁଣ ସାବଧାନେ
ଅର୍ଜ୍ଜୁନ ବିଜୟୀ ହେବ ଜିଣି ଶତ୍ରୁଗଣେ ।
ତାହାର ସହାୟ ମୁହିଁ ହୋଇବଇଁ ରଣେ
ନିଷ୍ଟେ ନିଧନ କରିବି କାଲି କୁରୁଗଣେ ।
ପୁଣି ବନ୍ଦନା କରିଣ ଶଙ୍କରୀ ଚରଣ
କଲେ ଶ୍ରୀକୃଷ୍ଣ ଅର୍ଜ୍ଜୁନ ବହୁତ ସ୍ତବନ ।
ପାର୍ବତୀ ବୋଇଲେ ଶୁଣ କୃଷ୍ଣ ଧନଞ୍ଜୟ
ମୋହବରେ କର ଯାଇ ଶତ୍ରୁକୁଳ କ୍ଷୟ ।
ଈଶ୍ୱର ପାର୍ବତୀ ବର ପାଇ କୃଷ୍ଣାର୍ଜ୍ଜୁନ
ହେଲେ ହୃଷ୍ଟ ଦୀନ ଯଥା ପାଏ ବହୁଧନ ।
ସେହିପରି ମହାନନ୍ଦେ ପ୍ରଫୁଲ୍ଲ ଅନ୍ତରେ
ନମସ୍କାର କରି ଦୁହେଁ ଶଙ୍କରୀ ଶଙ୍କରେ ।
ବିଦାୟ ହୋଇ ପ୍ରବେଶ ହେଲେ ନିଜପୁରେ
କେ ନ ଜାଣେ ରଥ ଅଶ୍ୱ ରଖି କେଉଁଠାରେ ।
ତୃତୀୟ ପ୍ରହର ଯହୁଁ ହୋଇଥିଲା ନିଶି
ଅର୍ଜ୍ଜୁନକୁ ଶୁଆଇଣ ଦେବ ବ୍ରହ୍ମରାଶି ।
ନନ୍ଦିଘୋଷ ରଥେ ଚାରି ଅଶ୍ୱଙ୍କୁ ସେ ଯୋଚି
ଦାରୁକକୁ ରଖାଇଣ ଦ୍ୱାରେ ଶିରୀବତ୍ସି ।
ବୋଇଲେ ଅର୍ଜ୍ଜୁନ ବ୍ୟସ୍ତଅଛି ପୁତ୍ର କ୍ରୋଧେ
ନ ପୁଣ ରାତ୍ରରେ ଉଠି ଚାଲିଯାଏ ଯୁଦ୍ଧେ ।
ବାହାର ହୋଇଲେ ତୁମ୍ଭେ ବସାଇଣ ରଥେ
ଧୀରରେ ବାହିବ ରାତ୍ର ପାହିବା ପର୍ଯ୍ୟନ୍ତେ ।
ବିଳମ୍ବରେ ପରବେଶ ହେବ ବ୍ୟୁହ ଦ୍ୱାରେ
ମୁହିଁ ପ୍ରବେଶିଲେ ସର୍ବେ ପଶିବା ସମରେ ।
ଭୀମସେନ ନକୁଳ ଯେ ସହଦେବ ତିନି
ଦ୍ୱିତୀୟଦ୍ୱାରେ ରହିବେ ନିଜ ବଳ ଘେନି ।
ଏହା କହି ଗରୁଡ଼ରେ ବସି ଜଗନ୍ନାଥ
ଦ୍ୱାରକା ଭୁବନେ ଯାଇ ହେଲେ ଉପସ୍ଥିତ ।
ରୁକ୍ମିଣୀ ଯେ ଜାମ୍ବବତୀ ଆଉ ସତ୍ୟଭାମା
ଅର୍ଘ୍ୟ ଦେଇ ପ୍ରଣମିତ ହେଲେ ସର୍ବବାମା ।
କହିଲେ କିମ୍ପା ବିଳମ୍ବ ହେଲା ଆଜ ରାତି
ଜଳଧର ବ୍ୟୁହ କଥା କହିଲେ ଶ୍ରୀପତି ।
ପାର୍ଥେ ନେଇ ଜଳଧର ବ୍ୟୁହେ ଗଲୁ ରଣେ
ଚକ୍ରବ୍ୟୁହ ରଚିଲେ ଯେ ଦ୍ରୋଣଗୁରୁ ଏଣେ ।
ତହିଁ ଦଶସସ୍ର ରାଜା ମାରି ଅଭିମନ୍ୟୁ
ଆହୁରି କେତେ ଯେ ମଲେ ତାହା କିଏ ଗଣୁ ।
ତାହା ଦେଖି କଉରବେ ହୋଇ ଏକମେଳ
କପଟ ଯୁଦ୍ଧେ ନାଶିଲେ ସୁଭଦ୍ରାର ବାଳ ।
ବହୁତ ଗୁଣ କହନ୍ତେ ତାର ଚକ୍ରପାଣି
ରୁକ୍ମିଣୀ ଆଦି କାନ୍ଦିଲେ ସମସ୍ତ ତରୁଣୀ ।

କୃଷ୍ଣ ହୋଇଲେ ତୁମ୍ଭେ ନ ଜାଣ ଶକ୍ରାବତୀ
କାଲିକି ଥିଲେ ଅର୍ଜ୍ଜୁନ ସହ ମୁଁ ମରନ୍ତି ।
ପୂର୍ବୁଁ ଏପରି ବିଧାନ ଥିଲୁ ଆମ୍ଭେ ଜାଣି
ସେହି ବେଳ ଜାଣି ସ୍ୱର୍ଗେ ନେଲେ ବଜ୍ରପାଣି ।
ସ୍ୱାମୀଠାରୁ ଏହିକଥା ଶୁଣି ସର୍ବ ସତୀ
ରୋଦନ ତେଜିଣ ସର୍ବେ ହୋଇଲେକ ଶାନ୍ତି ।
ଆହା କି ଦୁର୍ଦ୍ଦଶା ଥିଲା ସମସ୍ତେ କହିଲେ
ରୋଦନ ଛାଡ଼ି ସମସ୍ତେ ନିବର୍ତ୍ତି ହୋଇଲେ ।
ବିସ୍ତାରି କହିଲେ ସର୍ବକଥା ଦଇତ୍ୟାରି
ଅରୁଣ ପ୍ରକାଶେ ଶେଷହେଲା ବିଭାବରୀ ।
ଦେବକୀ ଯଶୋଦା ଅଭିମନ୍ୟୁ ମୃତ୍ୟୁ ଶୁଣି
ରୋଦନ କଲେ ସକଳେ କରି ଉଚ୍ଚବାଣୀ ।
ରୋଦନ କଲେ ସମସ୍ତେ ଉରେ କର ମାରି
ସୁଭଦ୍ରା ଅଭିମନ୍ୟୁର କଷ୍ଟକୁ ସୁମରି ।
ଗୋବିନ୍ଦ ବୋଇଲେ ତହୁଁ ଶୋକଛାଡ଼ ମାୟେ
କ୍ଷତ୍ରୀକୁଳେ ଜାତହେଲେ ପଡ଼ନ୍ତି ନିଶ୍ଚୟେ ।
ପାର୍ଥସହ ଆମ୍ଭଙ୍କୁ ଯେ ପେଶିଲେ ଅମରେ
ଭାରା ନିବାରଣ ଅର୍ଥେ ଜନ୍ମିଲୁ ମହୀରେ ।
ମହାଭାରତ ଯୁଦ୍ଧ ଯେ ହୋଇଲା ଯୁକତେ
ପାର୍ଥ ମୋହବଶ ହେଲେ କୁଟୁମ୍ବ ଦେଖନ୍ତେ ।
ବୋଇଲେ ସେ ଭୂରିଶ୍ରବା ଭୀଷ୍ମ ମୋର ଅଜା
ଦ୍ରୋଣ ମୋର ଗୁରୁ ମାମୁଁ ଶଲ୍ୟ ମହାରାଜା
କର୍ଣ୍ଣ ମୋର ଜ୍ୟେଷ୍ଠଭ୍ରାତ ଭାଇ ଅଶ୍ୱଥାମା
ଶକୁନି ମୋର ମାତୁଳ ଗୁରୁ କୃତକର୍ମା ।
ଧୃତରାଷ୍ଟ୍ର ଗାନ୍ଧାରୀଙ୍କ ନନ୍ଦନ ସେ ଶତେ
ଜ୍ୟେଷ୍ଠ କନିଷ୍ଠ ହୋଇଣ ସୋଦର ସମସ୍ତେ ।
ସଂଗ୍ରାମ କରି ମାରିବି କାହାକୁ ମୁଁ ରଣେ
ଏହା ଦେଖି ଚିନ୍ତା କଲେ ସ୍ୱର୍ଗେ ଦେବଗଣେ ।
ଖଳକୁ ଡାକି ପେଶିଲେ ଚତୁର ଆନନ
କୌରବ ପାଣ୍ଡବ ତୁହି କରା ଭିନ୍ନ ଭିନ୍ନ ।
ଅଭିମନ୍ୟୁ ପଡ଼ିବାରୁ ପାର୍ଥ ହୋଇ କ୍ରୋଧ
ପୁତ୍ରକଷ୍ଟେ କୌରବଙ୍କୁ କରିବ ନିଶୋଧ ।
ଗୋବିନ୍ଦ ବୋଇଲେ ମାତ ନ କର ଶୋଚନା
ଭାରା ନିବାରଣେ କୂଟ ଦେବଙ୍କର ସିନା ।
ତୁମ୍ଭେ ଏତେ ଶୋକକଲେ ହୋଇବ ବା କିସ
ମର୍ତ୍ତ୍ୟେ ଦେବ ଜନ୍ମି ମଧ୍ୟ ହୁଅନ୍ତି ବିନାଶ ।
ଯେଉଁ ପ୍ରଭୁର ମାୟାରେ ସର୍ବ ଅଛି ରୁନ୍ଧି
ସମସ୍ତଙ୍କୁ ଶାନ୍ତକରେ ସେହି କୂଟବୁଦ୍ଧି ।
ଏହିପରି କହୁଁ କହୁଁ ରାତ୍ରି ଶେଷ ହେଲା
ପୂର୍ବ ଆକାଶ ଲୋହିତ ବରଣ ଦିଶିଲା ।

ଏ ସମୟେ ଗରୁଡ଼ରେ ବସି ଜଗନ୍ନାଥ
ସତ୍ୱରେ ଯାଇଁ ପ୍ରବେଶ ହେଲେ ଇନ୍ଦ୍ରପ୍ରସ୍ଥ ।
ପାଣ୍ଡବଙ୍କୁ ସଙ୍ଗେ ଘେନି ଯମୁନାରେ ପଶି
ସ୍ନାନସାରି ଆବାସରେ ପ୍ରବେଶିଲେ ଆସି ।
ଯେ ବିଧିରେ ନିତ୍ୟକର୍ମ ସାରି ଦାମୋଦର
ନନ୍ଦିଘୋଷ ରଥେ ଚଢ଼ି ଯୁଦ୍ଧେ ଆଗୁସାର ।
ଶଙ୍ଖ ଶ୍ୱେତ ଗୋକ୍ଷୀର ଯେ କାମପାଳ ହୟ
କପିକେତନ ଧ୍ୱଜରେ ମାରୁତି ବିଜୟ ।
ପାଣ୍ଡବ ସୁନ୍ଦର ପାର୍ଥ ନିତ୍ୟକର୍ମ ସାରି
ଶତେସସ୍ର ପ୍ରଣମିଲେ ଗଗନ ବିହାରୀ ।
ଜୟ ଜୟ ମାରତଣ୍ଡ ଜୟ ତୁ ବିରଞ୍ଚି
ନବଗୋଟି ପୃଥିବୀକି ତୁହି ଦେବ ସଞ୍ଚି ।
ମହାଉତ୍ସବ ତୋହର ଯେ କୋଣାର୍କ ତୀର୍ଥ
ମହୋଦଧି ଅଗ୍ନି କୋଣେ ହୋଇଛି ସ୍ଥାପିତ ।
ମାଡ଼ିବସି ଅର୍କ ଦୈତ୍ୟ ନାଶିଲୁ ସେଠାର
ତେଣୁକରି ଯେ କୋଣାର୍କ ନାମ ହେଲା ତାର
ପୃଥ୍ୱୀ ଐଶାନ୍ୟେ ଉଦୟ ନାମେ ଅଛି ଗିରି
ଉଦୟ କାଳରେ ଆସୁ ପ୍ରଦକ୍ଷିଣ କରି ।
ନବଦ୍ୱୀପ ସପ୍ତସିନ୍ଧୁ ପରେ ତୁହି ଭ୍ରମି
ଦିନଶେଷେ ପର୍ଶ୍ଚିମକୁ ଯାଉ ଦେବ ସ୍ୱାମୀ ।
ପଞ୍ଚଲକ୍ଷ ଯୋଜନରେ ତୋର ତେଜକାନ୍ତି
ସେହି ତେଜୁ କଣାମାତ୍ର ଜୀବଜନ୍ତୁ ପାନ୍ତି ।
ସ୍ୱାମୀ ମହାରଶ୍ମି ତୋର କେ ପାରିବ ସହି
ଦୟାକରି ସମସ୍ତଙ୍କୁ ପାଳୁଅଛୁ ତୁହି ।
ସପ୍ତଅଶ୍ୱ ରଥେ ବସୁ ଉଜ୍ଜ୍ୱଳ ତୋ ତନୁ
ସମସ୍ତେ ତୋତେ ପୂଜନ୍ତି ତୋର ନାମ ଭାନୁ ।
ଅନନ୍ତ ପୟୋଧି ଜୟ ଜୟ ତୁ ମାର୍ତ୍ତଣ୍ଡ
ତୋର ପାଦତଳେ ନବକୋଟି ଯେ ବ୍ରହ୍ମାଣ୍ଡ ।
ଅଣାକାର ପୁରୁଷ ତୁ ଦେବ ଚିନ୍ତାମଣି
ଘୋରତମ ନାଶ କରେ ଦେବ ଦିନମଣି ।
ତୋ ମହିମା କି ବର୍ଣ୍ଣିବି ନରଦେହ ଘେନି
କାଳଦଣ୍ଡ ଭୟରୁ ତୁ ଉଦ୍ଧାର ହୋ ସ୍ୱାମୀ ।
ଦୟାକର ଚିନ୍ତାମଣି ରବିନାରାୟଣ
ମୋହର ପ୍ରତିଜ୍ଞା ପ୍ରଭୁ କରିବ ପୂରଣ ।
ଜୟ ତୁ ଅପରାଜିତା ଅନଳୁ ବିରାଜ
ତ୍ରିଅମ୍ବକ ଭାବିନୀ ତୋ ସହସ୍ରେକ ଭୁଜ ।
ବାଳଅର୍କ ପରି ଶୋଭା ତନୁ ଦିଶେ ତୋର
ଦେବଗଣେ ରଖୁ ଦୈତ୍ୟ କରିଣ ସଂହାର ।
ଶ୍ରୀଭୁଜରେ ଶୋଭାବନ ସକଳ ଆୟୁଧ
ବସୁଧା ନିମିତ୍ତେ ଦୈତ୍ୟତୁଲେ କଲୁ ଯୁଦ୍ଧ ।

ଅକାଳ ଅକାମ ତୋର ଅନିବାର କାୟା
ଡାକିନୀବଳ ଘେନିଣ ଭ୍ରମୁ ମହାମାୟା ।
ପ୍ରଥମରେ ଚଣ୍ଡ ମୁଣ୍ଡ ବିନାଶ କରିଲୁ
ଦ୍ୱିତୀୟେ ଶୁମ୍ଭ ନିଶୁମ୍ଭ ଜୀବନ ଘେନିଲୁ ।
ଚାଣୁର ବଧି ତୃତୀୟେ ଚତୁର୍ଥେ ବ୍ୟୋମାଳେ
ବିନାଶି ଦେବଗଣଙ୍କୁ ତାରିଲୁ ନିଶ୍ଚଳେ ।
ପଞ୍ଚମରେ କାଳଘଣ୍ଟ ଷଷ୍ଠେ ରକ୍ତବୀର୍ଯ୍ୟ
ଅଗ୍ନିସମ ମୂର୍ତ୍ତି ଧରି କରିଲୁ ଦହିର୍ଯ୍ୟ ।
ସପ୍ତମରେ ବଧକଲୁ ଅଷ୍ଟେ କାଳଦକ୍ଷ
ନବମେ ଭାସ୍କର ଅନ୍ଧକ ଯେ ବିରୂପାକ୍ଷ ।
ଧୂମ୍ର ଲୋଚନ କୋଟିଏ କ୍ଷୌଣୀ ଏହାତୁଲେ
ରକ୍ତର ନଦୀ ବହିଲା ମୈଷା ଯୁଦ୍ଧକାଳେ ।
ତିନି ଯୋଜନ ଉଚ୍ଚର୍ଗ କଣୟ ଯେ ଗିରି
ତା ପରେ କାଳାନ୍ତ ବଟ ଉଚ୍ଚ ଯୂଣ ଚାରି ।
ସେ ବଟ ଉପରେ ଦୈତ୍ୟ ଜଟାସୁର ବସି
ଊର୍ଦ୍ଧ୍ୱମୁଖେ ପିଉଥିଲା ରକ୍ତନଦୀ ଶୋଷି ।
ତାହାଜାଣିପାରି ମାତ ତହିଁ ପ୍ରବେଶିଲୁ
ଖଡ଼ଗ ଘାତରେ ତାର ଜୀବନ ଘେନିଲୁ ।
ଦଣ୍ଡଭଗ୍ନ ଦେଖି ରାଗେ ଧାଇଁଲା ମହିଷା
ଏକାଦଶ ଦିନେ ମୃତ୍ୟୁ କଲାକ ସେ ଆଶା ।
ସୋଦର ବନ୍ଧୁ ଏ ମଲେ କେହି ନାହିଁ ସଖା
ତା କୁଟୁମ୍ବ ନିଶୋଧନେ ହେଲା ସେ ନିରେଖା
ମହାମହେଶ୍ୱର ତାର ମେରୁତୁଲ୍ୟ କାୟ
ସପ୍ତଦ୍ୱୀପା ପୃଥିବୀକି ଘୋଟିଲା ତା ଦେହ ।
ଅନ୍ଧାରି ବିଜୟ କରି ଧାଏଁ ମହାବଳୀ
କଣୟ ଗିରିର ଶୃଙ୍ଗ ପକାଇଲା ଟାଳି ।
ଧାତିକାରେ ଅଦୃଶ୍ୟ ତୁ ହେଲୁ ମହାମାୟା
ଶୂନ୍ୟେ ଗୋପ୍ୟହେଲୁ ଯେହ୍ନେ ବିଜୁଳିର ଛାୟା
ବିଜୟ କର୍ଣ୍ଣକଟାରି ଘେନି ଅନ୍ତରୀକ୍ଷେ
ମହିଷା ବକ୍ଷେ ମାଇଲୁ ଆସିଣ ପ୍ରତ୍ୟକ୍ଷେ ।
କୁଠାରକୁ ପ୍ରହାରନ୍ତେ ହେଲା ବେନିଖଣ୍ଡ
ଦୁଇ ଚରଣେ ମର୍ଦ୍ଦିଲୁ ତାର ଗଣ୍ଡିମୁଣ୍ଡ ।
ଯହୁଁ କ୍ଷୟ ନୋହିଲା ସେ ମହିଷାର ମୂର୍ତ୍ତି
ନିଜ ଶରୀରୁ ରୂପେକ କରିଲୁ ଉତ୍ପତ୍ତି ।
ବାମକରେ କୁଠାର ଯେ ଡାହାଣରେ ପାଶୀ
ବାଳଅର୍କ ପରି ଚକ୍ଷୁ ବର୍ଣ୍ଣ ପରକାଶି ।
ରଟ ରଟ ମଟ ମଟ କରେ ଦନ୍ତପାଟି
ଲହ ଲହ ଜିହ୍ୱା ତାର ଭ୍ରମେ କାଳଦୃଷ୍ଟି ।
ବିକରାଳ ବଦନ ତା ଦିଶେ ବକ୍ଷସ୍ଥଳ
ପଞ୍ଚାଶ ଯୋଜନ ଉଚ୍ଚ ଦିଶେ ତା ଶରୀର ।

ବେଳୁଁ ବେଳ ବଢ଼ିଯାଏ ଅସୁରର କାୟେ
ଦେଖିଣ ଶୂଳ ମାଇଲେ ସେହି ମହମାୟେ ।
ପଞ୍ଚକୋଟି ଯୋଗ୍ନୀ ଘେନି ମାଇଲେ ତ୍ରିଶୂଳ
ଅସୁରର ନାସା ଛେଦି ବାନ୍ଧିଲେ ଯେ ବାଳ ।
ଦେବୀଙ୍କ ବାହନ ନବସାଗର ଯେ ବ୍ୟାଘ୍ର
ବେଢ଼ି ଆକର୍ଷି ଧଇଲେ ଯାଇଁ କଟିଭାଗ ।
ଦୁର୍ଗାର ବାହନ ସିଂହ ବଳୀ ମହାବଳ
ଆକର୍ଷି କାମୁଡ଼ିଲା ଯେ ମହିଷାର ଗଳ ।
ଚୌଷଠି ଡାକିନୀ ନବକୋଟି କାତ୍ୟାୟିନୀ
ପାଞ୍ଚପଦ୍ମ ଯୋଗ୍ନୀ ଶତେପଦ୍ମ ପିଶାଚୁଣୀ ।
ଚନ୍ଦ୍ରାୟଣୀ ମୂରତି ଯେ ଚଉଷଠି କୋଟି
ବ୍ରହ୍ମାୟଣୀ ମୂରତି ଯେ ପାଞ୍ଚପଦ୍ମ ହେଟି ।
ନାରାୟଣୀ ମୂରତି ଯେ ଛପ୍ପକୋଟି ଦେବୀ
ବ୍ୟାଘ୍ରମୁଖୀ ସାତପଦ୍ମ ପଦ୍ମେକ ଭୈରବୀ ।
ତିନିପଦ୍ମ ଚିରିଗୁଣୀ ଭୟଙ୍କର କାୟା
ଦୁର୍ଗାର ତୁଲେ ଏତେକ ହୋଇଛନ୍ତି ସାହା ।
ଉଗ୍ରତାରା ଚାତେଶ୍ୱରୀ ଚାଚେକୀ ବାସେଳୀ
ମାହେଶ୍ୱରୀ କାଳିକା ଯେ କଙ୍କାଳୀ ବେତାଳୀ
ଅହିମୁଖୀ ଜମ୍ବୁକୀ ଯେ ପାଞ୍ଚକୋଟି ବାଳୀ
ମନ୍ଦାରବଦନୀ ଦେବୀ ଆଉ ବିକରାଳୀ ।
ଏତେକ ଦେବୀ ସଙ୍ଗରେ ଘେନି କୁତୂହଳେ
ଯେ ଯାହାର ପରାକ୍ରମେ ମାରିଛନ୍ତି ଶୂଳେ ।
ରାଗରେ ମହିଷ ଉଲସାଇ ରୋମାବଳି
ଝାଡ଼ିହ୍ୱନ୍ତେ ଉଠିଗଲେ ଗଗନକୁ ବାଳୀ ।
କେ ଶତ ଯୋଜନ କେହୁ ସହସ୍ର ଯୋଜନେ
କେ ସାଗରେ ପଡ଼ିଲେ କେ ପର୍ବତ କାନନେ ।
କା ଚରଣ ଭାଙ୍ଗିଲା କା ହାତ ଭାଙ୍ଗିଗଲା
ମୁଣ୍ଡ ମୋଡ଼ିହୋଇ କାର ମୁଖ ବଙ୍କା ହେଲା ।
ବେକ ବଙ୍କାହେଲା କାର କୁଜହେଲା ପିଠି
ହେଠମୁଣ୍ଡ ହୋଇ କାର ଆଖି ଗଲା ଫୁଟି ।
ଯେ ଯେଉଁଠାରେ ପଡ଼ିଲେ ସେ ତହିଁ ରହିଲେ
କାଳବଶରୁ ସେମାନେ ପୂଜାକୁ ପାଇଲେ ।
ଏପରି ତୋର ଚରିତ କହୁଁ ସେ ସରଇ
ତୁମ୍ଭର ଅଂଶ ସେମାନେ ଅନ୍ୟ କେହି ନୋହି ।
କିଏ କାହିଁ ରହି ବକ୍ରମୁଖୀ ସେ ହୋଇଛି
ମହୀରେ କା ଅର୍ଦ୍ଧଦେହ ପୋତି ହୋଇଅଛି ।
ସିଦ୍ଧେଶ୍ୱରୀ ନାମେ ପୂଜା ପାଉଅଛି କାହିଁ
ତୁମ୍ଭର ମହିମା ମାତ କହୁ ନ ସରଇ ।
ଏରୂପେ ତୋହର ସୈନ୍ୟ ହୋଇବାରୁଭଙ୍ଗ
ପୁଣି ମହିମା ମାତିଲା କରି ରଣରଙ୍ଗ ।
ତାହର ପ୍ରତାପେ କମ୍ପି ଉଠେ ମହୀସ୍ଥଳୀ
ପୁଣି ଶୂଳମାରି ଦେବୀ ନ ପାରି ସମ୍ଭାଳି ।
ବିସ୍ମାବିତା ହୋଇ ତୁମ୍ଭେ ବିଚାରିଲ ମନ
ଛାଡ଼ିବି ମୈଷାସୁରକୁ ଯାଉ ଏ ଗଗନ ।
ଖାଉ ଦେବତାମାନଙ୍କୁ ନ ଥାନ୍ତୁ ସ୍ୱର୍ଗର
ଏମନ୍ତ କରି ଯେବେ ସେ ଦେଇଛନ୍ତି ବର ।
ଏପରି ତୁମ୍ଭ ବିମନ ଜାଣି ଦେବତାଏ
କାକୁସ୍ଥ ହୋଇ ବୋଇଲେ ଶୁଣ ଆଗୋ ମାଏ
ତୁ ଯେବେ ଏ ମହିଷାକୁ ଛାଡ଼ିବୁ ଗୋ ମାତ
କୋଟିକଳ୍ପ ରହିବଟି ଦାନବର ଗାତ୍ର ।
ତେତ୍ରିଶକୋଟି ଦେବଙ୍କୁ ଭକ୍ଷିବ ଏକ୍ଷଣି
ଦେବସ୍ତିରୀମାନଙ୍କୁ ଯେ ନ ରଖିବ ପୁଣି ।
ଦେବଙ୍କର ବଇକୁଲ୍ୟ ଅସୁର ପ୍ରତାପ
ଉଭୟ ସଙ୍କଟେ ପଡ଼ି ପୁଣି ହେଲେ କୋପ ।
ରାଗେ ବୁଦ୍ଧି ନ ସ୍ଫୁରଇ ଚାହିଁ କୋପାନଳେ
ଶରୀରରୁ ଜାତ କଲେ ସେ ସର୍ବମଙ୍ଗଳେ ।
ସେହି ଦେବୀ ପଦ୍ମାସନୀ ସ୍ୱରୂପ ଅଭୟା
କୁଙ୍କୁମବର୍ଣ୍ଣ ଦିଶଇ ତାହାଙ୍କର କାୟା ।
ସେହି ପଦ୍ମାସନୀ ଦେବୀ କହିଲେ ତୁମ୍ଭଙ୍କୁ
ତୁହି ମାତା ନ ଛାଡ଼ ଗୋ ମହିଷାସୁରକୁ ।
ଏହାର ବଧାର୍ଥେ ତୋତେ ଦେବେ କଲେଜାତ
ଆପଦ ଖଣ୍ଡିଣ ତୁହି କର ତାଙ୍କୁ ଶାନ୍ତ ।
ପୂର୍ବରୁ ଏହି ମହିଷା ତୋଷନ୍ତେ ଧାତାଙ୍କୁ
ଦୂରନ୍ତ ବର ସେ ଦେଇଅଛନ୍ତି ତାହାକୁ ।
ଦୈତ୍ୟଙ୍କୁ ବିଷ୍ଣୁ ବଧନ୍ତି ଜାଣି ସର୍ବକାଳେ
ପୁରୁଷେ ବଧ ନୋହିବ ମାଗିଲା ସେ ବଳେ ।
ଯେବଣ ସ୍ତିରୀର ହସ୍ତେ ମୁଁ ବଧ ହୋଇବି
ଜାନୁ ମର୍ମସ୍ଥାନ ତାର ବିରଳେ ଦେଖିବି ।
ଏସନ ବର ଧାତାଙ୍କୁ ମାଗିଅଛି ପୂର୍ବେ
ତୁ ମାତା ଉଲଗ୍ନ ହୋଇ ବଧକର ଏବେ ।
ଏସନକ ବାକ୍ୟ ଯହୁଁ ମଙ୍ଗଳା କହିଲେ
ବିବିସନା ହେଲୁ ଦେବୀ ତାର ଯୁଦ୍ଧକାଳେ ।
ଚାମୁଣ୍ଡା ରୂପରେ ତୁମ୍ଭେ ବ୍ରହ୍ମାଣ୍ଡକୁ ଘୋଟି
ପ୍ରକାଶିଲ ମହାବିଶ୍ୱରୂପ ନବସୃଷ୍ଟି ।
ବସ୍ତ୍ରହୀନେ ସ୍ତନ ଜାନୁ ତୋହର ଦିଶିଲା
ତାହାକୁ ଚାହିଁଣ ଦୈତ୍ୟ ମୋହେ ବଶହେଲା
ଭଗକୁ ଦେଖି ସାନନ୍ଦ ହୋଇଲା ଦୁରାତ୍ମା
ବୋଇଲା ତ୍ରୈଲୋକ୍ୟେ ଧନ୍ୟ ତୁହି ଏକବାମା
ତିନିଲୋକ ଅପୂରୁବ ଅଟେ ଯେଉଁ ଛବି
ମୁଁ ତାହା ଦେଖିଲି ଆଜ ଜ୍ଞାନ ନେତ୍ରେ ଭାବି ।

ଯଉବନ ଦେଖି ଦୈତ୍ୟ ମୋହେ ବଶହେଲା
ପଞ୍ଚଭୂତ ଆତ୍ମା ତାର ଶରୀରୁ ଛାଡ଼ିଲା ।
ଶୂଳରେ ମାଇଲୁ ଦେବୀ ନାରାୟଣୀ ରୂପେ
ଦେବଙ୍କ ରିପୁ ମାରିଣ ଚାମୁଣ୍ଡା ସ୍ୱରୂପେ ।
ବୋଇଲୁ ଦୈତ୍ୟଙ୍କୁ କିମ୍ପା ଦେବେ ଦ୍ୟନ୍ତିବର
ଦେବାତଙ୍କୁ ନ ରଖିବି ଆଜି ଏ ସ୍ୱର୍ଗର ।
ମହାଭୟଙ୍କର ରୂପ ତୋହର ଦେଖିଣ
ପଳାଇଲେ ଦେବତାଏ ଛାଡ଼ି ନିଜ ସ୍ଥାନ ।
ଦିଗପାଳମାନେ ସର୍ବେ ପଳାଇଲେ ଡରେ
ଭୟରେ ଲୁଚିଲେ ଯାଇ ସାଗର ଭିତରେ ।
ପଳାନ୍ତେ ସେ ସଦାଶିବ ଉଲଗନ ହୋଇ
ଯାଇ ନ ପାରି ତୋ ପାଶେ ନୃତ୍ୟକଲେ ରହି
ତାଙ୍କୁ ଦେଖି ଭୋଳ ହେଲୁ ତୁହି ଜଗନ୍ମାତ
ଲଲାଟ ଭୃଗଟ ହୋଇ କରନ୍ତି ସେ ନୃତ୍ୟ ।
ତୁହି ବୋଇଲୁ ହରଙ୍କୁ ତୋ ଇଷ୍ଟ ସୁମର
ନୋହିଲେ ଏକ୍ଷଣି ତୋତେ କରିବି ଆହାର ।
ଈଶ୍ୱର ବୋଇଲେ ତୁହି ମୋର ପିତାମାତା
ତୋତେ ସୁମରୁଛି ମୁହିଁ ତୁ ଇଷ୍ଟଦେବତା ।
ଆପଦ ଖଣ୍ଡିନୀ ଜଗନ୍ମାତ ଅଟୁ ତୁହି
ମାର ଅବା ରଖ ତୋର ତହୁଁ ଆନ ନାହିଁ ।
କାର୍ପଣ୍ୟ ବଚନ ଶୁଣି ତୋଷହେଲୁ ମାୟେ
ବୋଇଲୁ ଆଜ ତୁ ଶିବ ରହିଥା ନିର୍ଭୟେ ।
ବର ମାଗ ତୋତେ ମୁହିଁ ହୋଇଲି ପ୍ରସନ୍ନ
ଯେମନ୍ତ ଇଚ୍ଛା ତୋହର ବର ମାଗି ଘେନ ।
ଦୁଇ କର ଯୋଡ଼ି ପୁଣ ବୋଇଲେ ଶଙ୍କର
ଭୋ ଦୁର୍ଗା ହୋଇବୁ ତୁହି ଭାରିଯା ମୋହର ।
ଦୁର୍ଗା ବୋଇଲେ ହୋଇଛି ମୁହିଁ ଯେ ଉଲଗ୍ନ
କିପରି ତୋ ଭାର୍ଯ୍ୟା ହେବି କହ ମୋର ଆଗ
ଏପରି ଶୁଣନ୍ତେ ହର ଧରି ତୋର ହସ୍ତ
ଆଗ୍ରହରେ ବସାଇଲେ ନେଇ ହୃଦଗତ ।
ତୋର ଅଙ୍ଗ ଘୋଡ଼ାଇଲେ ଜଟା ଦେଇ ହର
ଏକ ଆସନେ ବସିଲେ ଉମା ମହେଶ୍ୱର ।
ତ୍ରିଦଶ ଦେବେ ଆସିଣ ଛାମୁରେ ମିଳିଲେ
ସ୍ତୁତି କରିଣ ସମସ୍ତେ ପାଦରେ ବନ୍ଦିଲେ ।
ଜୟ ଆପଦ ଖଣ୍ଡିନୀ ତ୍ରିଲୋକ ତାରିଣୀ
ସୁରସିଦ୍ଧ ମୁନିଗଣ ତୋ ପାଦେ ଦଇନୀ ।
ଅଭୟା ମାହେଶ୍ୱରୀ ଗୋ ତୁ ସର୍ବମଙ୍ଗଳେ
ତୋ ଚରଣ ଆରାଧଇ ମୁହିଁ ସର୍ବକାଳେ ।
ଆଦି ଅବତାରେ ମାତ ତୁହି ଖେଳୁ ଖେଳୁ
ଗଣ୍ଡୁଷେକ ସିନ୍ଧୁଜଳ କରିଦେଲୁ ଚଳୁ ।

ଦୁର୍ଦ୍ଦାନ୍ତ ଅସୁର ନାଶକରି କଉଶଳେ
ଦେବଙ୍କ କଷ୍ଟ ଖଣ୍ଡିଲୁ ତୁହି ବୁଦ୍ଧିବଳେ ।
ଦୁର୍ଗତିରୁ ତାରିବାକୁ ତୋ ନାମ ତାରିଣୀ
ମହିଷ ନାଶନ୍ତେ ନାମ ମହିଷମର୍ଦ୍ଦିନୀ ।
ମଙ୍ଗଳବାରେ ତୁମ୍ଭଙ୍କୁ ଯେ ଜନ ଆରାଧି
ପରମ ମଙ୍ଗଳ ହୁଏ ସର୍ବକାର୍ଯ୍ୟ ସିଦ୍ଧି ।
ବରୁଣ କୁବେର ଚନ୍ଦ୍ର ସୂର୍ଯ୍ୟ ହର ବ୍ରହ୍ମା
ବର୍ଣ୍ଣି ନ ପାରିଲେ କେହି ତୋହର ମହିମା ।
ମୁଁ ଛାର ମାନବ ମୋର କିସ ଅବା ବୁଦ୍ଧି
ପ୍ରସନ୍ନ ହୋଇ ସକଳ କାର୍ଯ୍ୟକର ସିଦ୍ଧି ।
ଜନ୍ମେ ଜନ୍ମେ ସେବଇ ମୁଁ ତୋର ପାଦପଦ୍ମେ
ଲଭିବି ପରମ ଗତି ତୋହର ପ୍ରସାଦେ ।
ମହୋଦଧିର ଉତ୍ତର ଜମ୍ବୁଦ୍ୱୀପ ମହୀ
ଭାରତ ଖଣ୍ଡରେ ଓଡ଼ରାଷ୍ଟ୍ର ଅଛି ରହି ।
ତା ମଧ୍ୟେ ପୁରେକ ଅଛି ନାମ ଯାଜପୁର
ବିରଜା ନାମରେ ପୂଜା ପାଅ ମା ସେଠାର ।
ସମ୍ବଲପୁରରେ ସମଲାଈ ତୁ ବୋଲାଉ
ସେଠାରେ ରହିଣ ମାତ ନାନା ପୂଜାପାଉ ।
ଏହିରୂପେ ପୂଜାପାଉ ରହି କେତେ ସ୍ଥାନେ
କି ଶକ୍ତି ମୋହର ମାତ ତୋ ଗୁଣ ବର୍ଣ୍ଣନେ ।
ବହଇ ଈଶାନ କୋଣେ ଭାରଗବୀ ନଦୀ
ଆବର ଚିତ୍ରଉତ୍ପଳା ଆସନ୍ତି ଏ ଭେଦି ।
ବିଜୟ ମାହେଶ୍ୱରୀ ତୁ ସେହି ନଦୀକୂଳେ
ଅଭୟା ବରଦାୟିନୀ ଶ୍ରୀଚଣ୍ଡୀ ଶାରଳେ ।
ଋଷିଶାପେ ରକ୍ତପାନେ ହେଉ ତୁ ତୃପତି
ମୋହଠାରେ କୃପାକର ମାତ ଭଗବତୀ ।
ମହାଭାରତ ଚରିତ ମୁହିଁ ଗୀତ ଯୋଗେ
କରନ୍ତେ ମୋତେ ଦିଶିଲା ତୋର ଅନୁରାଗେ
ଏ ଦ୍ରୋଣପର୍ବ ଶକଟ ବ୍ୟୂହ କଥାମାନ
କହିବା ପାଇଁ ମୋହର ବଳିଅଛି ମନ ।
ଜନ୍ମରୁ ମୂରୁଖ ମୁହିଁ ନ ଜାଣେ ଅକ୍ଷର
ଦେଖିନାହିଁ ଶୁଣିନାହିଁ ଲେଖେ କି ପ୍ରକାର ।
ତୋ ଅଭୟ ପାଦକୁ ମୁଁ ସେବୁଅଛି ନିତ୍ୟେ
ମୋଠାରେ ପ୍ରସନ୍ନ ହୁଅ ମାତ ଦୟାଚିତ୍ତେ ।
ଆହେ ବୁଧଜନେ ମୁହିଁ ନୁହଇ ପଣ୍ଡିତ
ଶ୍ରୀକୃଷ୍ଣ ନାମକୁ ଲୟ କରିଛି ମୋ ଚିତ୍ତ ।
ତାହାଙ୍କ ଦୟାରୁ ମୁହିଁ ଲେଖୁଅଛି ଗୀତେ
ମୁନିମାନେ ଭାବୁଛନ୍ତି ଯାଙ୍କୁ ଅନୁବ୍ରତେ ।
ବ୍ରହ୍ମବେତ୍ତା ଘଟଋଷି ସୁତ ମୁନିବର
ଗଣ୍ଡୁଷ କରିଥିଲେ ଯେ ସପ୍ତସିନ୍ଧୁ ନୀର ।

ଶ୍ରୀଚଣ୍ଡୀ ଶାରଳା ପାଦେ ସର୍ବଦା ଦଇନୀ
କହଇ ଶାରଳା ଦାସ ଗ୍ରନ୍ଥ ଶୂଦ୍ରମୁନି ।

■■■

## ଦ୍ରୋଣଙ୍କ ଶକଟବ୍ୟୂହ ନିର୍ମାଣ

ବଦନ୍ତି ଅଗସ୍ତି ଶୁଣ ବୈବସ୍ୱତ ମନୁ
ଚକ୍ରବ୍ୟୂହ ଯୁଦ୍ଧେ ଯହୁଁ ମଲା ଅଭିମନ୍ୟୁ ।
କଠୋର ପ୍ରତିଜ୍ଞା କଲା ବୀର ଫାଲଗୁନି
ଇନ୍ଦ୍ରପ୍ରସ୍ଥ ନଗ୍ରେ ହେଲା ଏହି କଥା ଧ୍ୱନି ।
ମାନଗୋବିନ୍ଦର ଥିଲେ ଗୁପ୍ତଚରଗଣ
ରାତ୍ରକାଳେ ଜଣାଇଲେ କୁରୁଥାଟେ ଜାଣ ।
ବୋଲେ ଅବଧାନ ହେଉ ମାନଚକ୍ରବର୍ତ୍ତୀ
ଜୟଦ୍ରଥ ନାମରେ ଯେ ନେଲା ଅପଖ୍ୟାତି ।
କଠୋର ପ୍ରତିଜ୍ଞା କଲା ବୀର ସବ୍ୟସାଚୀ
ଜୟଦ୍ରଥ କାଲି ଆଉ ନ ପାରିବ ବଞ୍ଚି ।
ଡଗର ମୁଖୁ ପାଇଣ ବାରତା ଏମନ୍ତ
ଦୁର୍ଯ୍ୟୋଧନ ସଙ୍ଗତରେ ଘେନି ଜୟଦ୍ରଥ ।
ଦୁଃଶାସନ ଶଲ୍ୟ ଆଉ ଶକୁନି ଯେ ଗଲେ
ଦ୍ରୋଣଙ୍କ ଛାମୁରେ ଯାଇ ସମସ୍ତେ ମିଳିଲେ ।
ବିନୟ ଭାବେ କହିଲେ ତାଙ୍କୁ କୁରୁନାଥ
ଗୋଳଯୁଦ୍ଧେ ଅଭିମନ୍ୟୁ ହୋଇଲା ନିପାତ ।
ସିନ୍ଧୁରାଜା ଉଗାଳିଲା ଚାରି ପାଣ୍ଡବଙ୍କୁ
ତେଣୁ ଅପଖ୍ୟାତି ଦେଲେ ସେ ଜୟଦ୍ରଥକୁ ।
କଠୋର ପ୍ରତିଜ୍ଞା କରିଅଛି ଅରଜୁନ
ଜୟଦ୍ରଥେ ନ ମାଇଲେ ହୋଇବ ଦହନ ।
ଅର୍ଜ୍ଜୁନ ଦହନ ହେଲେ କାଲି ଦିବା ଶେଷେ
ତା ବିନା ପାଣ୍ଡବେ ପ୍ରାଣ ଧରିବେ ନ ଦିଶେ ।
ଯେବେ ଜୟଦ୍ରଥ ପାର୍ଥ ନ ମାରିବ ରଣେ
ସେ ତ ମରିବ ତାହାର ପ୍ରତିଜ୍ଞା କାରଣେ ।
କିନ୍ତୁ କଦାପି ଶ୍ରୀକୃଷ୍ଣ ନିଶ୍ଚିନ୍ତ ନୋହିବ
ବିଚାରଇ ଜୟଦ୍ରଥ ରହି ନ ପାରିବ ।
ଦେବକୀସୁତ କରିବ ମାୟା ବହୁତର
ଉପାୟ କରି ଛେଦିବ ନିଶ୍ଚେଁ ତାର ଶିର ।
ମୋ ବିଚାରେ ସିନ୍ଧୁରାଜା ସମରେ ନ ଥାଉ
ଯେବେ ବର୍ତ୍ତିବ ଏ ରାଜ୍ୟ ଛାଡ଼ିଣ ପଳାଉ ।
ଭରଦ୍ୱାଜ ପୁତ୍ର ତୁମ୍ଭେ କକ୍ଷା ଜଗଜ୍ଜେଠି
ଯେପରି ମାରି ନ ପାରେ ତାହାକୁ କିରୀଟୀ ।
ଆଜ୍ଞାଦିଅ ମହାତମା ଉଦ୍ଦାଳକ ଗୋତ୍ରୀ
ଦୁଃଶୀଳା ବିଧବା ହେଲେ ହେବ ଅପଖ୍ୟାତି
ମୁହିଁ ବିଚାରଇ ମନ୍ଦ କପାଳ ଏହାର
ଏହି ବର୍ତ୍ତିଥିଲେ ଧର୍ମ ହେବ ବହୁତର ।

ଦ୍ରୋଣବୋଲେ ମାରିନାହିଁ ଏହି ଅଭିମନ୍ୟୁ
ଅଦୋଷେ ନାଶିବ ପାର୍ଥ କେବଣ କାରଣୁ ।
ରାଜାବୋଲେ ଦିଅ ଆଜ୍ଞା ପଳାଉ ଏ ଦୂର
ଏହାକହି ଶୋକ କଲେ କୁରୁ ଦଣ୍ଡଧର ।
ଜୟଦ୍ରଥ ପଡ଼ିଲା ଯେ ଦ୍ରୋଣଙ୍କ ପୟରେ
ବୋଲେ ଅର୍ଜ୍ଜୁନ ଭୟରୁ ରକ୍ଷାକର ବାରେ ।
ଦ୍ରୋଣଗୁରୁ ରାଜାଙ୍କର ଏହି ଦୁଃଖ ଦେଖି
ଶୋକେ ଅଶ୍ରୁପୂର୍ଣ୍ଣ ହେଲା ତାଙ୍କ ବେନି ଆଖି ।
ଉଠାଇଲେ କୋଳକରି ଭୁଜେ ଦ୍ରୋଣଗୁରୁ
ଛାଡ଼ ଏହି ଚିନ୍ତା ରାଜା କିମ୍ପା ଶୋକକରୁ ।
କଠିନ ପ୍ରତିଜ୍ଞା କଲା ବୀର ଧନଞ୍ଜୟ
କାଲି ନିଶ୍ଚେ କରିବି ମୁଁ ତା ପାଇଁ ଉପାୟ ।
ଶତ ପାର୍ଥ ଘେନି ଯେବେ ଆସିବେ ଶ୍ରୀହରି
ତେବେ ସୁଦ୍ଧା ଜୟଦ୍ରଥେ ନ ପାରିବେ ମାରି ।
କାଲି ଦେଖିବା ପାର୍ଥର କେତେ ଅଛି କକ୍ଷା
ତାହା ଭୟୁ ନିଶ୍ଚେଁ ତୋତେ କରିବି ମୁଁ ରକ୍ଷା ।
ଏରୂପେ ଦୃଢ଼ ପ୍ରତିଜ୍ଞା କଲେ ଦ୍ରୋଣଗୁରୁ
ଦେଖିବା କାଲି ସମରେ କେହୁ ତାକୁ ମାରୁ ।
କରୁଛି ପ୍ରତିଜ୍ଞା ସୂର୍ଯ୍ୟ ହେବାଯାଏ ଅସ୍ତ
ଜୟଦ୍ରଥ ନାଶେ କେହି ନୋହିବେ ସମର୍ଥ ।
ଏହାଶୁଣି ବୋଇଲା ସେ ଗାନ୍ଧାରୀର ବାଳ
ଦୃଢ଼ ଯେବେ ତୋ ପ୍ରତିଜ୍ଞା ନିଶ୍ଚୟ ତା ପାଳ ।
ଯଦି ଜୟଦ୍ରଥ କାଲି ଦିନ ରକ୍ଷା ହେବ
ନିଶ୍ଚେଁ ଜାଣ ଦୁର୍ଯ୍ୟୋଧନ ନିଷ୍କଣ୍ଟକ ହେବ ।
ଅର୍ଜ୍ଜୁନ ନିଧନେ ନ ବଞ୍ଚିବ ବାସୁଦେବ
ତାଙ୍କ ବିନା ନ ବର୍ତ୍ତିବେ ଚାରି ଯେ ପାଣ୍ଡବ ।
ଦ୍ରୋଣକୁ ଗୁପ୍ତେ ପୁଚ୍ଛଇ କୃପ ଅଶ୍ୱତ୍ଥାମା
କିପରି ବୋଲ ବର୍ତ୍ତିବେ ଏହି ମହାତମା ।
ଅର୍ଜ୍ଜୁନ ଯେବେଟି କାଲି ହୋଇବ ଦର୍ହ୍ୟ
ଚକ୍ରରେ ଶିର ଛେଦିବ ନିଶ୍ଚେଁ ଦେବରାଜ ।
ଏତେ ବିକଳ କିପାଇଁ ହୁଅ କୁରୁରାଜ
ଜୟଦ୍ରଥ ପଳାଇଲେ ଆମ୍ଭଙ୍କୁ କି ଲାଜ ।
ପାଣ୍ଡବଙ୍କ ତୁଲେ ଏହୁ ବହୁତ ଅପ୍ରାଧି
ନ ଜାଣି କି ଏହାଙ୍କର ଅଛି ମନ୍ଦ ବୁଦ୍ଧି ।
ଶୁଣି ସେ ଦୁହିଁଙ୍କୁ ଚାହିଁ ବୋଲେ ଦୁର୍ଯ୍ୟୋଧନ
ତୁମ୍ଭେମାନେ ଏହିପରି ନ କହ ବଚନ ।
ଏହି ଭରଦ୍ୱାଜ ସୁତ ଯୁଦ୍ଧେ ଜଗଜ୍ଜିତା
ବ୍ରହ୍ମା ରୁଦ୍ର ଇନ୍ଦ୍ର ହେଲେ ତହିଁ କେ ଜିଣନ୍ତା ।
ଦ୍ରୋଣ ବୋଲେ ଜୟଦ୍ରଥେ ଘେନିଯାଅ ରାଜା
ଯେ ଯାହାର ଦଣ୍ଡ ଘେନି କର ଯୁଦ୍ଧ ସଜ୍ଜା ।

କ୍ଷତ୍ରିୟ ବୃତ୍ତିରେ ନାହିଁ ଏସନକ କର୍ମ
ରଣ ଛାଡ଼ି ପଳାଇଲେ ହୋଇବ ଅଧର୍ମ ।
ଦ୍ରୋଣଙ୍କ ବଚନ ଶୁଣି ସାନନ୍ଦ ନୃପତି
ବୋଇଲେ ପୃଥ୍ୱୀରେ ତୁମ୍ଭେ ଅଟ ଏକ କ୍ଷତ୍ରୀ
ନିଶ୍ଚୟ କହୁଛି ତୁମ୍ଭେ ନାରାଚ ଧଇଲେ
ତ୍ରିଲୋକ ଜିଣିପାରିବ କହୁଅଛି ଭଲେ ।
ଚଳିଲା ମାନଗୋବିନ୍ଦ ଜୟଦ୍ରଥେ ଘେନି
କୁରୁଥାଟରେ ଶୁଭିଲା ନାନାବାଦ୍ୟ ଧ୍ୱନି ।
ରଜନୀ ପ୍ରଭାତ ହୋଇ ଉଠୁଁ ଦିନକର
ଦଣ୍ଡ ସାଜି ଦ୍ରୋଣଗୁରୁ ହୋଇଲେ ବାହାର ।
ଶକଟ ଆକାର ଏକ ବ୍ୟୂହ ସେ ରଚିଲା
ବିଷମ ମାର୍ଗ କାହାକୁ ଗୋଚର ନୋହିଲା ।
ପାଞ୍ଚଲକ୍ଷ ରଥ ଦୁଇଲକ୍ଷ ମତ୍ତହସ୍ତୀ
ତ୍ରିଂଶଲକ୍ଷ ରଥୀ ନବ ପରାର୍ଦ୍ଧ ପଦାତି ।
ଢୋଲ ଟମକ ମର୍ଦ୍ଦଳ ଦମା ବିଜିଘୋଷ
ବଜାଇ ସମ୍ଭ୍ରମେ ସୈନ୍ୟ ଯୁଦ୍ଧେ ପରବେଶ ।
ନବସାଗର ସଇନ୍ୟ ବିଶାଶତେ ହସ୍ତୀ
ତିରିଶ ସାଗର ସୈନ୍ୟ ପରାର୍ଦ୍ଧେ ପଦାତି ।
ଏତେକ ସୈନ୍ୟ ଘେନିଣ ରାୟ ଗୁରୁଦ୍ରୋଣ
ପ୍ରଥମ ଦ୍ୱାର ଆବୋରି ରହିଲେ ଆପଣ ।
ଦଶପଦ୍ମ ରଥ ଆଉ ତ୍ରିଂଶପଦ୍ମ ହସ୍ତୀ
ପଞ୍ଚାଶ ଅର୍ବୁଦ ଅଶ୍ୱ ପାଞ୍ଚଖର୍ବ ରଥୀ ।
ଏତେକ ସୈନ୍ୟ ଘେନିଣ ବୀର ଦୁଃଶାସନ
ଯାଇ ଦ୍ୱିତୀୟ ଦ୍ୱାରକୁ ରହିଲେ ଜଗିଣ ।
ଦଶପଦ୍ମ ରଥୀ ଆଉ ଯୋଦ୍ଧା ଅଗଣନ
ଅଶ୍ୱାରୋହୀ ପାଞ୍ଚପଦ୍ମ ସାଗର ସଇନ ।
ବଜାଇଣ ବୀରତୂର ଟମକ ମର୍ଦ୍ଦଳ
ତୃତୀୟ ଦ୍ୱାରେ ଜଗିଲେ କୃପ ଆଉ ଶଲ୍ୟ ।
ପଞ୍ଚଅକ୍ଷୌହିଣୀ ସୈନ୍ୟ ଘେନି ଭୂରିଶ୍ରବା
ଚତୁର୍ଥଦ୍ୱାରେ ରହିଲେ ଯେସନେ ମଘବା ।
କଳିଙ୍ଗସେନ ଆବର ଅଳମ୍ବୁଷ ବୀର
ହଳାୟୁଧ ଅନନ୍ତକ ଚାରି ଦଣ୍ଡଧର ।
ପାଞ୍ଚସସ୍ର ରାଜା ତୁଲେ ସଇନ ଅନେକ
ଘେନି ଆବୋରି ରହିଲେ ଅଖ ବୈନିଚକ ।
ପଞ୍ଚମଦ୍ୱାରେ ରହିଲେ ଏମାନେ ଜଗିଣ
ଷଷ୍ଠଦ୍ୱାର ରକ୍ଷା କଲେ ଯେହ୍ନେ ରାଜା ଶୁଣ ।
ଯମନିକ ସୋମଦତ୍ତ ବାହ୍ଲିକ ଏ ଆଦି
ଆବୋରିଲେ ଅଖ ନବସସ୍ର ରାଜଯୋଧୀ ।
ପଞ୍ଚସସ୍ର ରାଜା ପଞ୍ଚପରାର୍ଦ୍ଧ ଯେ ରଥୀ
ଜଗି ରହିଲେ ଶକଟ ଦଣ୍ଡା ଚଉକତି ।
ସେହି ସପ୍ତମ ଦ୍ୱାରରେ ସେନାପତି ଦ୍ରୋଣୀ
ସେ ଦ୍ୱାରକୁ ରକ୍ଷାକଲେ ଏତେ ସୈନ୍ୟଘେନି
ବହୁତର ଗଜ ବାଜୀ ସେନା ଅଗଣନା
ଅଷ୍ଟମେ ରହିଲେ କର୍ଣ୍ଣ ଘେନି କୁରୁସେନା ।
ଏଥି ମଧ୍ୟରେ ଶକୁନି ଲକ୍ଷ୍ମଣକୁମାର
ନବମଦ୍ୱାରେ ରହିଲେ ଏହି ଦୁଇବୀର ।
ପାଞ୍ଚଲକ୍ଷ ଯୋଦ୍ଧା ତିନି ସହସ୍ର ରାଜନ
ଦୁଇପଦ୍ମ ଅଶ୍ୱ ହସ୍ତୀ ସୈନ୍ୟ ଅଗଣନ ।
କେଶର ମଧ୍ୟେ ରହିଲେ ଯୋଦ୍ଧା ଲକ୍ଷଆଠ
ପିମ୍ପୁଡ଼ି ଯିବାପାଇଁକି ତହିଁ ନାହିଁ ବାଟ ।
ତା ମଧ୍ୟରେ ପୁଣି ଏକ ସୂଚୀ ବ୍ୟୂହ କଲା
ତିନି ସାଗର ଯୋଦ୍ଧାଙ୍କୁ ତହିଁ ରୁହାଇଲା ।
ଦେବଙ୍କୁ ଦୁର୍ଲ୍ଲଭ ତାହା ନରେ ଅଗୋଚର
ଜୟଦ୍ରଥେ ଲୁଚାଇଲେ ତହିଁର ଭିତର ।
ସେ ଦଶମ ଦ୍ୱାରେ ଘେନି ପଞ୍ଚଖର୍ବ ରଥୀ
ସୂଚୀବ୍ୟୂହ ଆବୋରିଲା ମାନଚକ୍ରବର୍ତ୍ତୀ ।
ସାଗର ସଦୃଶ ଦିଶେ କଉରବ ଥାଟ
ମହା ଅରଣ୍ୟରେ ଯେହ୍ନେ ନ ଦିଶଇ ବାଟ ।
ନ ଜାଣଇ ପାଠ ଶାଠ ମୂର୍ଖ ଅନୁବ୍ରତେ
ମୁଁ ଏହା ଲିଖନ କଲି ଶାରଳା କହନ୍ତେ ।
ହେ ବୁଧଜନେ ନୁହଇ ମୁହିଁ ଜ୍ଞାନବାନ
କେବଳ ହିଙ୍ଗୁଳା ମୋତେ ହୋଇଲେ ପ୍ରସନ୍ନ
ପ୍ରସନ୍ନେ ବରଦାୟିନୀ ଝଙ୍କଡ଼ ବାସିନୀ
ଏକ ଯୋଗେ ବସିଛନ୍ତି ହୋଇଣ ମଉନୀ ।
ମୁକତି ଗତିଦାୟିନୀ ଶ୍ରୀଚଣ୍ଡୀ ଶାରଳେ
ଶାରଳା ଦାସ ସେବଇ ତାଙ୍କ ପାଦତଳେ ।
ଜୟ ଜୟ ହେ ଅଗସ୍ତି ତୁମ୍ଭେ ମହାବିଜ୍ଞ
ଭୂତ ଭବିଷ୍ୟତଜ୍ଞାତା ଆବର ସର୍ବଜ୍ଞ ।
ତୁମ୍ଭେ ଜାଣ କୋଟି କୋଟି ଜନ୍ମର ବାରତା
ନିରଞ୍ଜନ ଗୋତ୍ରୀ ପରସନ୍ନେ ବରଦାତା ।
ଅନନ୍ତ ସଂସାର ମୋତେ ଅଗୋଚର ହେଲା
ଚିନ୍ତା ଜଳେ ବୁଡ଼ି ଜ୍ଞାନ ମୋହର ହଜିଲା ।
ଏ ଭବ ସଂସାର ମିଛ ମୋହଜାଲ ଫାଶୀ
ଏ ମାୟା ପଟଳୁ ମୋତେ କରିବ ଉଦାସୀ ।
ସେ ବ୍ରହ୍ମଋଷିଙ୍କ ପାଦେ ଶରଣ ମୁଁ ନିତ୍ୟେ
ଶାରଳା ଦାସ କହଇ ଏ ସଂସାର ହିତେ ।

## ଅର୍ଜ୍ଜୁନଙ୍କର ପ୍ରଥମ ଓ ଦ୍ୱିତୀୟ ଦ୍ୱାର ଭେଦ

ପୁଣି ଅଗସ୍ତି କହିଲେ ଶୁଣ ନୃପବର
ଭାରତ ଚରିତ ଅଟେ ଶ୍ରୁତି ସୁଖକର ।
ଦ୍ୱାଦଶ ଦିବସ ଯୁଦ୍ଧ ଅତି ମନୋହର
କହୁଅଛି ଶୁଣ ରାଜା ମନ କରି ସ୍ଥିର ।
ଅତି ଦୃଢ଼େ ଜଗିଲେ ସେ ଯହୁଁ ଜୟଦ୍ରଥେ
ବ୍ୟୂହ ଦେଖି ପ୍ରଶଂସିଲେ ଧୃତରାଷ୍ଟ୍ରସୁତେ ।
ସମସ୍ତେ ପ୍ରଶଂସା କଲେ ସାଧୁ ସାଧୁ ଦ୍ରୋଣ
ଏବେ ଯେ କୌରବବଳ ହେଲେ ଉଦ୍ଧାରଣ ।
ପ୍ରଥମଯୁଦ୍ଧେ ରଚିଲ ତୁମ୍ଭେ ଚକ୍ରବ୍ୟୂହ
ଜୟ ହେଲା ମଲା ପୁଣି ଅର୍ଜ୍ଜୁନର ପୁଅ ।
ଏବେ କରିଅଛ ଗୁରୁ ଯେବଣ ଉପାୟ
ଆମ୍ଭର ଜୟ ହୋଇବ ଏଥିରେ ନିଶ୍ଚୟ ।
ବ୍ୟୂହ କଥା ଶୁଣି ଧୃତରାଷ୍ଟ୍ର ହେଲା ଖୁସି
ଅନ୍ୟରାଜାମାନେ ବହୁ କହିଲେ ପ୍ରଶଂସି ।
ଶୁଣିଥିଲୁ ବ୍ୟୂହକଥା ଦେଖିଣ ନ ଥିଲୁ
ଶକଟବ୍ୟୂହ ଏ ବୋଲି ଏବେ ଯେ ଜାଣିଲୁ ।
ଆଜ ଜୟଦ୍ରଥଙ୍କର ନାହିଁ ନା ମରଣ
ଅର୍ଜ୍ଜୁନ ଅନଳେ ନିଶ୍ଚେଁ ହୋଇବ ଦହନ ।
ପାର୍ଥର ବିହୀନେ କୃଷ୍ଣ କେଭେ ନ ବଞ୍ଚିବେ
କୃଷ୍ଣବିନା ନିଶ୍ଚେ ଚାରି ପାଣ୍ଡବେ ମରିବେ ।
ଏକା ଦ୍ରୋଣଗୁରୁ ସିଦ୍ଧ କଲେ ସର୍ବକାର୍ଯ୍ୟ
ଧୃତରାଷ୍ଟ୍ର ପୁତ୍ରେ ଦେବେ ନିଷ୍କଣ୍ଟକ ରାଜ୍ୟ ।
ଏତେବଡ଼ ଯୋଦ୍ଧାଥିଲେ ଭୀଷ୍ମ ମହାରଥୀ
ମରାଇଲେ ହେଳାଯୁଦ୍ଧ କରିଣ ସବୁନ୍ତି ।
ଏହି ବ୍ୟୂହ କାହାବଳେ ନୁହଇ ଯେ ଭେଦି
ଦ୍ରୋଣ ଏହା ବୁଦ୍ଧିବଳେ ଅଛନ୍ତି ସମ୍ପାଦି ।
କଉରବେ ଆନନ୍ଦିତ ହୁନ୍ତି ବ୍ୟୂହ ଦେଖି
ଆଜି ନିଶ୍ଚୟ ପାଣ୍ଡବ ହୋଇଲେ ନିର୍ମାକ୍ଷୀ ।
ଏଥୁଅନନ୍ତରେ ଶୁଣ ଗୁପତ ଚରିତ
ଡଗର ଯେ ଜଣାଇଲେ ପାଣ୍ଡବ ଅଗ୍ରତ ।
ଶୁଣ ଆହେ ମହାରାଜା ଧର୍ମ ଶିରୋମଣି
କୁରୁଥାଟର ବାରତା ଅଇଲୁ ଯା ଶୁଣି ।
କଠୋର ପ୍ରତିଜ୍ଞା ପାର୍ଥ କଲେ ଯେତେବେଳେ
ଶୁଣିଥିଲା ଦୁର୍ଯ୍ୟୋଧନ ଚର ନିଶାକାଳେ ।
ସର୍ବ ବିଷୟ କହିଲା ଦୁର୍ଯ୍ୟୋଧନ ଆଗେ
ତା ଶୁଣି ଜୟଦ୍ରଥକୁ ଘେନିକରି ବେଗେ ।
ବିନୟ ଭାବରେ ଗଲା ମାନଚକ୍ରବର୍ତ୍ତୀ
ଦ୍ରୋଣଙ୍କ ଅଗ୍ରତେ କଲା ବହୁତ ବିନତି ।
ବୋଇଲାକ ସାବଧାନ ହୁଅ ଆହେ ଗୁରୁ
ରାତ୍ର ପାହିଲା ପ୍ରତିଜ୍ଞା ପାର୍ଥ କରୁ କରୁ ।
ଏ କୁରୁ ସାଗରୁ ଜୟଦ୍ରଥ ଯେ ପଳାଉ
ପ୍ରାଣରକ୍ଷା କରିଣ ସେ ସମୟେକ ଥାଉ ।
ରାଜାଙ୍କର ବାକ୍ୟ ଶୁଣି ଦ୍ରୋଣ ଯେ ବୋଇଲା
କାଲି ସମର ମୋହର ଭାଗରେ ରହିଲା ।
ଶକଟ ଆକାର କରି ବ୍ୟୂହକୁ ସମ୍ପାଦି
ଦେବଙ୍କୁ ଦୁର୍ଲ୍ଲଭ ତାହା ନରେ ନୁହେଁ ଭେଦି ।
ପ୍ରଥମ ଦ୍ୱାରରେ ଭରଦ୍ୱାଜଙ୍କ ନନ୍ଦନ
ଦ୍ୱିତୀୟ ଦ୍ୱାରେ ରହିଲା ବୀର ଦୁଃଶାସନ ।
ତୃତୀୟ ଦ୍ୱାରେ ରହିଲା ଶଲ୍ୟ କୃପବ୍ରହ୍ମା
ଚତୁର୍ଥେ ରହିଲେ ଭୂରିଶ୍ରବା ମହାତମା ।
ପଞ୍ଚମରେ ଅଳମ୍ବୁଷ କଳିଙ୍ଗ ରାଜନ
ଷଷ୍ଠଦ୍ୱାର ରକ୍ଷାକଲେ ସୋମଦତ୍ତ ପୁଣ ।
ସପ୍ତମଦ୍ୱାରେ ଆବୋରି ରହିଲେକ ଦ୍ରୋଣି
ଅଷ୍ଟମେ କର୍ଣ୍ଣ ଜଗିଲେ କୁରୁସେନା ଘେନି ।
ନବମଦ୍ୱାରେ ଶକୁନି ଲକ୍ଷ୍ମଣ କୁମାର
ଦଶମଦ୍ୱାରେ ରହିଲେ ସଇନ ଅପାର ।
ଦଶମଦ୍ୱାରେ ସେ ଯହିଁ ପଦ୍ମବ୍ୟୂହ କଲେ
ଶତେ ପାଖୁଡ଼ାକରି ତା କେଶର ରଚିଲେ ।
ତହିଁର ଭିତରେ ବ୍ୟୂହ ସୂଚୀର ଆକାରେ
ଜୟଦ୍ରଥ ଲୁଚାଇଲେ ତହିଁର ଭିତରେ ।
ଚାରଗଣଙ୍କ ମୁଖରୁ ଏ ସମ୍ବାଦ ପାଇ
ଯୁଧିଷ୍ଠିର ବସିଲେକ ସ୍ତମ୍ଭୀଭୂତ ହୋଇ ।
ଭୀମସେନ ଦନ୍ତଚାପି କ୍ରୋଧରେ ବୋଇଲା
ଦ୍ୱିତୀୟ ଦ୍ୱାରରେ ଦୁଃଶା ମୋ ଭାଗେ ରହିଲା
ତାହାଯୋଗୁ ଅଭିମନ୍ୟୁ ହୋଇଅଛି ହତ
ଦ୍ରୌପଦୀ ହୋଇବ କେଶ କଷ୍ଟରୁ ମୁକତ ।
ଶକଟ ଭାଙ୍ଗିଣ ସବୁ କରିବି ମୁଁ ଧୂଳି
ଅଖ ଚକ ଆଦିକରି ଦଣ୍ଡ ଓଧି ଫଳି ।
ପ୍ରତିଜ୍ଞା କରି ବୋଲନ୍ତି କୁମାର ନକୁଳ
ପଦ୍ମ ବ୍ୟୂହ ବିଧ୍ୱଂସିବି ମାରି କୁରୁବଳ ।
ଭୂରିଶ୍ରବା କୃପ ଶଲ୍ୟ କର୍ଣ୍ଣ ଅଶ୍ୱତ୍ଥାମା
ମୋହର ଭାଗେ ରହିଲେ ଏ ଚାରି ମହାତ୍ମା ।
ଯୁଧିଷ୍ଠିଙ୍କ ଅଗ୍ରତରେ କହେ ସବ୍ୟସାଚୀ
ଶକଟବ୍ୟୂହକୁ ଦେବ ନ ଭାଳନ୍ତୁ କିଛି ।
ମୁହିଁ ନୁହେଁ କି ଦ୍ରୋଣର ଧର୍ମର ସନ୍ତତି
ଶକଟ ବ୍ୟୂହର ଭେଦ ମୋତେ କହିଛନ୍ତି ।
ଜଳଧର ବ୍ୟୂହ ମୋର ଅଦୃଷ୍ଟି ଅଶ୍ରୁତି
ତାହା ଭେଦି ଜୟ କଲୁ ଆମ୍ଭେ ସେ ସବୁନ୍ତି ।

ଶକଟବ୍ୟୂହ ଭେଦିବି ମୁଁ ଏକାକେ ବଳେ
ତୁମ୍ଭେ ଚାରିହେଁ ନ ଯିବ କେହି ମୋର ତୁଲେ
ନ ଥିବେ ଅଶ୍ୱ ଗଜ ନ ଥିବେ ରଥୀ ଯୋଧୀ
ବହୁତ ସୈନ୍ୟ ସେ ବ୍ୟୂହ ନ ପାରିବେ ଭେଦି
ଉଚ୍ଚରେ ଶୁଭିଲା ପାଞ୍ଚଜନ୍ୟ ଶଙ୍ଖବାଣୀ
ବହୁ ମଙ୍ଗଳ ବାଞ୍ଛନ୍ତି ଦେବ ଚକ୍ରପାଣି ।
ହରଷ ହୋଇଣ ଦେବ ନନ୍ଦିଘୋଷ ସାଜି
ଶ୍ୱେତ ଗୋକ୍ଷୀରାଦି ତହିଁ ଯୋଚି ଚାରି ବାଜୀ
ଅନେକ ଶସ୍ତ୍ର ଥୋଇଲେ ନନ୍ଦିଘୋଷ ରଥେ
ରଥ ଘେନି ବିଜେ ହରି ଅର୍ଜ୍ଜୁନ ଅଗ୍ରତେ ।
ଦ୍ୱାରକା ଭୁବନେ ହରି ଥିଲେ ନିଶାକାଳେ
ରଥକୁ ଟେକିଲେ ପାର୍ଥ ପ୍ରତିଜ୍ଞାର ବଳେ ।
ଆସ୍ଥାନରେ ଚଳେ ହରି ରଥ କଲେ ତେଜ୍ୟା
ପ୍ରଣମିଲେ ଯୁଧିଷ୍ଠିଙ୍କ ପାଦେ ଦେବରାଜା ।
ଧର୍ମର ନନ୍ଦନ କଲେ ବହୁ ଶୁଭବାଞ୍ଛା
ତୋ ପ୍ରସାଦେ ମୋ ପାଣ୍ଡବବଳ ହେବେ ରକ୍ଷା
ଦୁଃସହ ପ୍ରତିଜ୍ଞା କରିଛନ୍ତି ଗୁରୁଦ୍ରୋଣ
ଶକଟ ଆକାରେ ବ୍ୟୂହ ରଚିଲେ ଆପଣ ।
ତହିଁର ଭିତରେ ସୂଚୀବ୍ୟୂହର ଆକାର
ଜୟଦ୍ରଥେ ଲୁଚାଇଲେ ତହିଁର ଭିତର ।
ଅର୍ଜ୍ଜୁନର ପ୍ରତିଜ୍ଞା ତ ଜାଣ ଦେବହରି
ସୂର୍ଯ୍ୟାସ୍ତେ ଜୟଦ୍ରଥକୁ ନ ପାରିଲେ ମାରି ।
ଅନଳ କୁଣ୍ଡରେ ପଡ଼ି ସେହୁ ଝାସ ଦେବ
ତାହାର ପ୍ରତିଜ୍ଞା କେବେ ଅନ୍ୟଥା ନୋହିବ ।
ଚାର ମୁଖୁଁ ଶୁଣିଲ ତ ବଡ଼ ଦୁରାପଦ
ଦେବଙ୍କୁ ଦୁର୍ଲ୍ଲଭ ସେହି ବ୍ୟୂହର ପ୍ରମାଦ ।
ମୁହିଁ ମନୁଷ୍ୟ ମାତ୍ର କି ତିଆରିବି ତୋତେ
ପାର୍ଥକୁ ହରି ପ୍ରମାଦ ନ ପଡ଼େ ଯେମନ୍ତେ ।
ଧର୍ମଙ୍କ ବଚନେ କହୁଛନ୍ତି ଦେବହରି
ଭାଙ୍ଗିବ ଶକଟବ୍ୟୂହ ବେଳ ନବଘଡ଼ି ।
ଯଦ୍ୟପି ତ୍ରିଲୋକେ ସର୍ବେ ମିଳିବେ ସମରେ
କେ ଆଜ ରହିବ ଦେବ ଅର୍ଜ୍ଜୁନ ଛାମୁରେ ।
ଶ୍ରୀକୃଷ୍ଣଙ୍କର ପ୍ରତିଜ୍ଞା ଶୁଣି ଦେବରାୟ
ହୋଇଲେ ପରମଶାନ୍ତି ମନୁ ଛାଡ଼ି ଭୟ ।
ବୀରବେଶରେ ସୁବେଶ ହୋଇଣ କିରୀଟି
ବାନ୍ଧିଲେ ମୁକୁଟ ନିଜ ଶିରରେ ଝଟତି ।
ଲକ୍ଷେକ ବଳ ତାହାର ସେ ଗାଣ୍ଡିବ ଧନୁ
ଶ୍ରୀଭୁଜେ ଧଇଲା ତହୁଁ ବାସବର ସୂନୁ ।
ଦେବଦତ୍ତ ଶଙ୍ଖ ଅରଜୁନ କରେ ଧରି
ପାଞ୍ଚଜନ୍ୟ ଶଙ୍ଖନାଦ କଲେ ଦେବହରି ।

ଶୁଣିଣ ବୋଲନ୍ତି ଯୁଧିଷ୍ଠିର ଦଣ୍ଡଧାରୀ
ବେଗେ ଆସ ଦେବ ଶତ୍ରୁ ଦର୍ପ ଚୂର୍ଣ୍ଣକରି ।
ସ୍ୱାମୀ ପୃଥ୍ୱୀ ଆଶ୍ରେ ମେରୁ ହର ଆଶ୍ରେ ଉମା
ପାଣ୍ଡବେ ତୋହର ଆଶ୍ରା ବଦନ୍ତି ମହାତ୍ମା ।
ବିପତ୍ତି ନାଶନ ଦେବ ତୁହି ଚିନ୍ତାମଣି
ମୁହିଁ କିସ ତିଆରିବି ତୋତେ ଚକ୍ରପାଣି ।
ଶ୍ରୀକରେ ଅର୍ଘ୍ୟ ଘେନିଣ ଦେବ ଯୁଧିଷ୍ଠିର
ଆପଣେ ବନ୍ଦାନ୍ତି ନେଇ କୃଷ୍ଣ ପାର୍ଥ ଶିର ।
ଯାତ୍ରା ମଙ୍ଗଳେ ଯେ ଶୁଭ ଦେବ ଅନୁକୂଳ
ବିଜେ କଲେ ଜଗନ୍ନାଥ ସର୍ବ ଶୁଭବେଳ ।
ଛାମୁରେ ତନୟଭାବେ ବୋଲେ କୁନ୍ତୀଦେବୀ
ତୋର ଯଶ କଥା ହରି କେମନ୍ତେ ଶୁଣିବି ।
ପାଞ୍ଚଜନ୍ୟ ଶଙ୍ଖଶବ୍ଦ ତୋହର ଯେ ବାଣୀ
ମୁହିଁ ତୃପତି ହୋଇବି ସେହି ଶବ୍ଦ ଶୁଣି ।
ଏପରି ସଙ୍କେତ ମୋତେ ଶୁଣାଇବ ହରି
ଶୁଭରେ ବିଜୟ ଏବେ କର ଚକ୍ରଧାରୀ ।
ଚଳାଇଲେ ନନ୍ଦିଘୋଷ କ୍ଷେପିଗଲେ ହୟେ
ଦେଖାଯାନ୍ତି ଜଳେ ଯେହ୍ନେ ହଂସଯୂଥ ପ୍ରାୟେ
ପାଣ୍ଡବ ସୈନ୍ୟରେ ହୋଇଛନ୍ତି ଆଗୁସାର
ମେରୁ ପ୍ରଦକ୍ଷିଣ ଅର୍ଥେ ଉଦେ କି ଭାସ୍କର ।
ନନ୍ଦିଘୋଷ ଚଳୁଁ ପୃଥ୍ୱୀ ଦୁଲୁକି ଉଠଇ
ପାତାଳ ଭୁବନେ କୂର୍ମ ପିଠି ଚମକଇ ।
ରଥ ଧ୍ୱଜରେ ଥିଲା ଯେ ବୀର ହନୁମାନ
ଦୈତ୍ୟମାରି ଲଙ୍କାପୁର କଲା ଯେ ଦହନ ।
ରଥ ଗଜ ଅଶ୍ୱ ଛତ୍ର ପଦାତି ନ ଥାଇ
ଅସଂଖ୍ୟ ବଳଙ୍କୁ ଜିଣି ସେ ରଥ ଚଳଇ ।
ଗମେ ନନ୍ଦିଘୋଷ ରଥ ପବନହୁଁ ବେଗେ
ଶକଟ ବ୍ୟୂହରେ ପରବେଶ ଦ୍ରୋଣ ଆଗେ ।
ରଥୀ ରଥ ଅଶ୍ୱ ଗଜ ପଦାତି ଗହଳେ
ମୁଖରାବ ଶୁଭେ ଯଥା ସମୁଦ୍ର ଉଚ୍ଛୁଳେ ।
ପାର୍ଥକୁ ଦେଖି ବେଢ଼ିଲେ ନବସସ୍ର ଯୋଧୀ
ସହସ୍ର ସହସ୍ର ଶର ଚାରିଆଡ଼ୁ ବିନ୍ଧି ।
ଜଳବୃଷ୍ଟି ହୁଏ ଯେହ୍ନେ କକଡ଼ା ମାସରେ
ତେହ୍ନେ ଶର ବରଷିଲେ ନନ୍ଦିଘୋଷ ପରେ ।
ଶର ବରଷିବା ଦେଖି ପାଣ୍ଡୁର ଦୁଲାଳ
ବିନ୍ଧିଲେକ ଚୋଖା ଚୋଖା ଶର ଅନର୍ଗଳ ।
ଅନିର୍ବାର ଶର ବିନ୍ଧା ଦେବେ ଦେଖିକରି
ତାଙ୍କଶର କାଟି ଆସେ ଗରଜନ କରି ।
ରଥୀ ରଥ ଗଜ ବାଜୀ ଅସଂଖ୍ୟ ଫୁଟଇ
ଯା ଦେହେ ପଡ଼ଇ ସେହି ଉବୁରି ନ ଯାଇ ।

ପୁତ୍ରଶୋକେ ଧନଞ୍ଜୟ ମହକ୍ରୋଧ ହୋଇ
ଉପ୍ରୋଧ ଛାଡ଼ି ନାରାଚ ଅସଂଖ୍ୟ ବିନ୍ଧଇ ।
ଚକ୍ଷୁ ପଲକ ମାତ୍ରକେ ବହୁଶର ବିନ୍ଧି
କୋଟି କୋଟି ଯୋଦ୍ଧାଶିର ପକାନ୍ତି ସେ ଛେଦି
ଏରୂପେ ବହୁତ ସୈନ୍ୟ ଗଲେ ପ୍ରେତପୁର
ରଣରଙ୍ଗେ ବିହରନ୍ତି ପାର୍ଥ ଧନୁର୍ଦ୍ଧର ।
ପଳାନ୍ତି ସଇନ୍ୟମାନେ ହୋଇଣ ବିମୁଖ
ବଳ ନ ପାଇ କାହାର ହୋଇଲେ ନିରକ୍ଷ ।
ବଳଭଙ୍ଗ ଦେଖିକରି ଭରଦ୍ୱାଜ ଶିଷି
ରହ ରହ ବୋଲି ଡାକେ ସୈନ୍ୟଙ୍କୁ ଆଶ୍ୱାସି ।
ଦେଖ ମୋ ହସ୍ତେ ପଞ୍ଚାଶୀସସ୍ର ବଳ ଧନୁ
କାହିଁକି ପଳାଅ ତୁମ୍ଭେ ଭୟ ଛାଡ଼ି ମନୁ ।
ଦ୍ରୋଣଙ୍କ ବଚନେ ଛିଡ଼ାହେଲେ ସର୍ବରଥୀ
ଶର ପୂରାଇ ବେଢ଼ିଲେ ପାର୍ଥ ଚଉକତି ।
ଦ୍ରୋଣଗୁରୁ ଦଶସସ୍ର ବାଛି ତୀକ୍ଷ୍ଣଶର
ବିନ୍ଧିଲେକ ନନ୍ଦିଘୋଷ ରଥର ଉପର ।
ବୋଲନ୍ତି ନାରାଚ ବୃଷ୍ଟି ଦେଖି ନାରାୟଣ
ଥାଟେ ସେନାପତି ଆଜ ରାୟଗୁରୁ ଦ୍ରୋଣ ।
ଏହି ଭିଆଇଲେ କୂଟେ ଚକ୍ର ନାମେ ବ୍ୟୂହ
ଏକା ଏହାଙ୍କର ଯୋଗୁଁ ନାଶ ତୋର ପୁଅ ।
ପୁତ୍ରରିପୁ ପାଶେ ଆଣି ତୋତେ ଭେଟାଇଲି
ନ ପୁଣ ଉପ୍ରୋଧ କରୁ ତୁହି ଗୁରୁ ବୋଲି ।
ଲାଘବ ଯୁଦ୍ଧ ନ କର ଏହାଙ୍କର ତୁଲେ
ଆପେ ନାଶଯିବୁ ତୁହି ସୂର୍ଯ୍ୟ ଅସ୍ତ ଗଲେ ।
ଆପଣେ ମରନ୍ତେ ଗୁରୁ ସୋଦର ବା କାହିଁ
ଆତ୍ମରକ୍ଷା ଅର୍ଥେ କିଛି ଏଥେ ପାପ ନାହିଁ ।
ଶ୍ରୀକୃଷ୍ଣ ବଚନ ଶୁଣି ବୀର ଫାଲଗୁନି
ଦ୍ରୋଣଙ୍କୁ ବିନ୍ଧିଲେ ପଞ୍ଚବିଂଶ ବାଣ ଘେନି ।
ଅର୍ଜ୍ଜୁନଙ୍କୁ ଦେଖିକରି ଆବୋରିଲେ ଦ୍ରୋଣ
ବୋଇଲେ ରଥ ସମ୍ଭାଳ ଦେବ ନାରାୟଣ ।
ଅର୍ଜ୍ଜୁନ ପ୍ରଣାମ କଲେ ଦ୍ରୋଣଙ୍କୁ ଅନାଇ
ଅଭିମନ୍ୟୁ ମରାଇଲେ ତୁମ୍ଭେ ରଥେ ଥାଇ ।
ମାରିବି ମୁଁ ସୂର୍ଯ୍ୟଅସ୍ତ ମଧ୍ୟେ ଜୟଦ୍ରଥ
ତାକୁ ନ ମାଇଲେ ମୋର ମରଣ ନିୟତ ।
ମୋହର ବିନୟ ଘେନି ଦ୍ୱାର ଛାଡ଼ ଗୁରୁ
ମୋହର ବିନାଶ ଅର୍ଥେ ପ୍ରତିଜ୍ଞା କି କରୁ ।
ତୁମ୍ଭେ ଗୁରୁ ପିତା ବୋଲି ନକରି ଉପ୍ରୋଧ
ଅଭିମନ୍ୟୁ ଯୋଗେ ସବୁ କରିବି ମୁଁ ବଧ ।
ଦ୍ରୋଣ ବୋଇଲେ ନିଶ୍ଚୟ ଜାଣ ମୋର କକ୍ଷା
ପ୍ରତିଜ୍ଞା କରିଛି ତାକୁ କରିବି ମୁଁ ରକ୍ଷା ।
ଶକଟବ୍ୟୂହ ଅଟଇ ଦେବଙ୍କୁ ଦୁର୍ଲ୍ଲଭ
ଦୁଃସହ ପ୍ରତିଜ୍ଞା କରି ପାଇବୁ ପ୍ରାଭବ ।
ଅର୍ଜ୍ଜୁନ ବୋଇଲେ ଗୁରୁ ବିଷ୍ଣୁ ମୋର ସାଥେ
ବାଳକାଳେ ଭାଙ୍ଗିଛନ୍ତି ଶକଟ କିଞ୍ଚିତେ ।
ଏକା ପ୍ରହାରେ ଭାଙ୍ଗିବି ମୁହିଁ ଓଧି ଫଳି
ଆଡ଼ ହୁଅ ଏକଶରେ କରିବି ମୁଁ ଧୂଳି ।
ତୁମ୍ଭଙ୍କୁ ହେଉଛି ମୋର କିଞ୍ଚିତ ଉପ୍ରୋଧ
ଆଉମାନଙ୍କର ତୁଲେ କିସ ମୋର ଯୁଦ୍ଧ ।
ଅର୍ଜ୍ଜୁନଙ୍କର ପ୍ରତିଜ୍ଞା ଶୁଣି ଦ୍ରୋଣାଚାର୍ଯ୍ୟ
ଓଷ୍ଠ କମ୍ପାଇ ପେଶିଲେ ପରିଘ ନାରାଚ ।
ପୁନଶ୍ଚ ରାଗେ ବିନ୍ଧିଲେ ପାଞ୍ଚଗୋଟା ଶର
ନିର୍ଘାତ ପ୍ରାୟ ଶୁଭିଲା ଶବଦ ତାହାର ।
ବଜ୍ରମୁନା ନାରାଚ ପେଶିଲେ ଫାଲଗୁନି
ଦ୍ରୋଣଙ୍କର ପାଞ୍ଚଶର ପକାଇଲେ ହାଣି ।
ପୁନରପି ପାଞ୍ଚଶର ବିନ୍ଧିଲେକ ଗୁରୁ
ବେଗେ ଅର୍ଜ୍ଜୁନ ଛେଦିଲେ ତାହା ଆସୁଁ ଦୂରୁ ।
କଙ୍କପକ୍ଷ ତୀକ୍ଷ୍ଣମୁନା ବିଶାଶତେ ବାଣ
କୃଷ୍ଣ ଅର୍ଜ୍ଜୁନଙ୍କୁ ପୁଣି ବିନ୍ଧିଲେକ ଦ୍ରୋଣ ।
ରଥ ଧ୍ୱଜପରେ ଥିଲା ସେ କପିକେତନ
ତହିଁକି ଶତେକ ଶର କରିଲେ ଆଧାନ ।
ନାରାଚ ଆସିବା ଦୂରୁ ଦେଖି ଫାଲଗୁନି
ଧାଡିକାରେ ବିନ୍ଧିଲେ ସେ ତୀକ୍ଷ୍ଣଶର ଘେନି
ପୁଣି ପାଞ୍ଚଶତ ବାଣ ବିନ୍ଧିଣ ଅର୍ଜ୍ଜୁନ
ଦ୍ରୋଣଙ୍କର ସବୁ ବାଣ କରିଦେଲେ ଚୂର୍ଣ୍ଣ ।
ଥାଟରେ ଶୁଭିଲା ସାଧୁ ସାଧୁ ବୀର ପାର୍ଥ
ଗୁରୁ ସଙ୍ଗେ ଯୁଝିବାକୁ ହେଲୁ ତ ସମର୍ଥ ।
ଏହାଙ୍କ ବିଦ୍ୟାରୁ ତୋର ଅସ୍ତ୍ର ମହୀଭେଦୀ
କିଞ୍ଚିତେ ନାରାଚେ ଗୁରୁ ଶସ୍ତ୍ର ଦେଲୁ ଛେଦି ।
ସହସ୍ରେ ବାଣ ବିନ୍ଧିଲେ ଗୁରୁ ପୁଣି ରୋଷେ
ତୁଷାର ବୃଷ୍ଟି ହୁଅଇ ଯେସନେ ଆକାଶେ ।
ଉଭୟ ଥାଟେ ହୋଇଲା ଅନ୍ଧକାରମୟ
ଦିବସରେ ଦେଖାଗଲା ରାତ୍ରହେଲା ପ୍ରାୟ ।
ଶ୍ରୀକୃଷ୍ଣ ବୋଇଲେ ଆହେ ଦେଖ ସବ୍ୟସାଚି
କପଟ ଯୁଦ୍ଧ କରିଲା ଦ୍ରୋଣ ଏବେ ପାଞ୍ଚି ।
ଏହା ପ୍ରତି ଅସ୍ତ୍ର ଗୋଟି ତୁହି ପାର୍ଥ ଜାଣୁ
ଏ ଅନ୍ଧକାର ବିନାଶି ଉଦେ କର ଭାନୁ ।
ପ୍ରତିଜ୍ଞା କଲୁ ତୁ ସୂର୍ଯ୍ୟ ଅସ୍ତ ପରିଯନ୍ତେ
ତହିଁକି କପଟ ଦ୍ରୋଣ ଭିଆଇଲା ତୋତେ ।
ଅର୍ଜ୍ଜୁନ ବୋଇଲେ ଶୁଣ ଦେବ ଦଇତ୍ୟାରି
କୂଟ କପଟ ଯୁଦ୍ଧରେ ଆମ୍ଭଙ୍କୁ ନ ପାରି ।

ଏହା କହି ସୂର୍ଯ୍ୟଅସ୍ତ୍ର ବିନ୍ଧି ଧନଞ୍ଜୟ
ତିମିରକୁ ନାଶି ସୂର୍ଯ୍ୟ କରିଲେ ଉଦୟ ।
ନନ୍ଦିଘୋଷ ରଥ ଆଗେ ଦ୍ରୋଣଙ୍କର ରଥ
ରାହୁ ପ୍ରାୟ ଘୋଟିଛନ୍ତି ତାଙ୍କୁ କୃଷ୍ଣ ପାର୍ଥ ।
ପୁଣି ପାର୍ଥ ହାବୋଡ଼ାସ୍ତ୍ର ଯହୁଁ ପ୍ରହାରିଲେ
ଉତ୍ତାନ ହୋଇଣ ଦ୍ରୋଣ ରଥରେ ପଡ଼ିଲେ ।
ପୁଣି ପାର୍ଥ ପନ୍ନଗାସ୍ତ୍ର ଅତିବେଗେ ବିନ୍ଧି
ଦ୍ରୋଣଙ୍କ ଅଶ୍ୱ ସାରଥି ପକାଇଲେ ବାନ୍ଧି ।
ଘାଏ ଅସାଷ୍ଟମ ହୁଅନ୍ତେ ଭରଦ୍ୱାଜ ବଂଶି
ଭାଜିଲେ କୌରବବଳ ହୋଇଣ ନିର୍ମାଖୀ ।
ବାସଭଗ୍ନ ପକ୍ଷୀ ଯେହ୍ନେ ପଳାବନ୍ତି ଡରେ
ରହି ନ ପାରିଲେ ନନ୍ଦିଘୋଷର ଛାମୁରେ ।
ଅପର୍ଯ୍ୟାପ୍ତ ଶର ପୁଣି ଅର୍ଜ୍ଜୁନ ବିନ୍ଧଇ
ଯେସନେକ ବଜ୍ରସୂଚୀ ଆକାଶୁ ପଡ଼ଇ ।
ରଥ ରଥୀ ଅଶ୍ୱ ଗଜ ପଦାତି ପଡ଼ନ୍ତି
ସାରଥୀ ସହିତେ କେହି ବର୍ତ୍ତି ନ ପାରନ୍ତି ।
ଦେଖିଲେ ଅର୍ଜ୍ଜୁନପାଶେ କେହିନାହିଁ ସୈନ୍ୟ
ଶ୍ରୀକୃଷ୍ଣଙ୍କୁ ପୁଚ୍ଛା କଲେ ପାଣ୍ଡବ ଅର୍ଜ୍ଜୁନ ।
ସ୍ୱାମୀ ଘାଏ ଅସାଷ୍ଟମ ହେଲେ ଗୁରୁଦ୍ରୋଣ
ବେଗକରି ମୋର ରଥ ବାହାନ୍ତୁ ଆପଣ ।
ଅର୍ଜ୍ଜୁନ ବଚନ ଶୁଣି ଦେବକୀଙ୍କ ସୁତ
ଗଗନମାର୍ଗରେ ରଥ ବାହିଲେ ତ୍ୱରିତ ।
ପାଞ୍ଚଜନ୍ୟ ଶବ୍ଦଶୁଭେ ତ୍ରୈଲୋକ୍ୟକୁ ଜିଣି
ଷଡ଼ଯୂଣ ରହି ତାହା ଯୁଧିଷ୍ଠିର ଶୁଣି ।
ମନେ ମନେ ଆନନ୍ଦିତ ହେଲେ ପଣ୍ଡୁବାଳ
ନିଶ୍ଚୟ ଅର୍ଜ୍ଜୁନ ଧ୍ୱଂସକରେ କୁରୁବଳ ।
ଯେହ୍ନେ ହଂସ ବିହରନ୍ତି ସୁଖେ ସଲିଳରେ
ନନ୍ଦିଘୋଷ ଅଶ୍ୱେ ତଥା ଗମନ୍ତି ସ୍ୱଚ୍ଛରେ ।
ଦୁଇଦ୍ୱାରେ ଜିଣିକରି ରଥ ଚଳିଗଲା
ମହାବ୍ୟୂହ ଭେଦି ପାର୍ଥ ଭିତରେ ପଶିଲା ।
ରଥ ଗଜ ଅଶ୍ୱ ଆଦି ଗହଳ ପଦାତି
ଆନନ୍ଦରେ ପିଶାଚୁଣୀ ବୃନ୍ଦେ ବିହରନ୍ତି ।
ଅରଜୁନ କହନ୍ତି ଶ୍ରୀକୃଷ୍ଣେ ମୁଖ ଚାହିଁ
ଜଗତ ଜୀବନ ବନ୍ଧୁ ତୁହି ଯଦୁସାଇଁ ।
ସମ୍ଭାଳିଣ ରଥ ମୋର ବାହା ଚକ୍ରପାଣି
ଦ୍ୱିତୀ ସାଗରକୁ ଜିଣେ କୌରବ ସଇନି ।
ତହିଁକି ମନ୍ଦର ସମ ନନ୍ଦିଘୋଷ ରଥ
ତାହା ଲଙ୍ଘିବାକୁ କେହି ହୋଇବ ସମର୍ଥ ।
ଦ୍ରୋଣଗୁରୁ ଗଲେ ଦେବ ତୋହର ପ୍ରସାଦେ
କିଞ୍ଚିତେ ଜୟଦ୍ରଥକୁ ବିନାଶିବି ଯୁଦ୍ଧେ ।

ଗହଳ ଚହଳ ହୁଏ ମୁଖରାବ ବାଣୀ
ଶୁଭଇ ଯେ ମହାଗୋଳ ସିନ୍ଧୁଘୋଷ ଜିଣି ।
ବହୁତ ଶସ୍ତ୍ର ରଥରେ ଯୋଚି ସର୍ବ ରଥୀ
ପଞ୍ଚାଶଲକ୍ଷ ଯୋଦ୍ଧାଏ ବିନ୍ଧିଲେକ ଧାତି ।
ନାରାଚ ପଡ଼ନ୍ତେ ହେଲା ଅନ୍ଧକାରମୟ
ସେହି ଥାଟ ଜିଣବାକୁ ଅର୍ଜ୍ଜୁନ ନିର୍ଭୟ ।
ଗାଣ୍ଡୀବଧନୁ ଧରିଣ କ୍ରୋଧେ ସବ୍ୟସାଚୀ
ପାଞ୍ଚଲକ୍ଷ ଯୋଦ୍ଧାଙ୍କୁ ବିନ୍ଧିଲାକ ଆମଞ୍ଚି ।
ଯେସନେ ଲୋଟଇ ମହାବାତେ ରମ୍ଭାବନ
ବଜ୍ରପ୍ରହାରେ ତେସନେ ହୋଇଯାଏ ଚୂର୍ଣ୍ଣ ।
କୁରୁ ସାଗର ବଳ ଯେ ମଧୁବନ ସମ
ଲୋଟାଏ ପ୍ରଚଣ୍ଡବାତ କି ସେ ଅରଜୁନ ।
ଆକାଶରୁ ମଞ୍ଚଯାଏ ପାର୍ଥ ବାଣ ଘୋଟି
ପାଞ୍ଚକୋଟି ଯୋଦ୍ଧାଙ୍କୁ ସେ ପକାଇଲେ କାଟି
ବାତାଘାତେ ପଡ଼େ ଯେହ୍ନେ ବୃକ୍ଷୁ ପକ୍ୱଫଳ
ମୁଣ୍ଡ ଛିଣ୍ଡନ୍ତେ ନାଚିଲେ ତାଙ୍କ ବକ୍ଷସ୍ଥଳ ।
ଅଶ୍ୱ ଗଜ ରଥ ସହ ହେଲେ ସର୍ବ ଚୂର
ନଦୀପରି ବହିଲାକ ତାହାଙ୍କ ରୁଧିର ।
ରକତରେ ଜର ଜର ସବୁଙ୍କରି ତନୁ
ଉଦୟ କାଳରେ ଯେହ୍ନେ ଦେଖାଯାଏ ଭାନୁ ।
ବିକଳେ ବୋବି ପାରନ୍ତି ବାକି ଯେ ସଇନି
ସେ ରକ୍ତ ଖାଇ ଉଲ୍ଲାସ ହୋଇଲେ ସଇନୀ ।
ବସିବାକୁ ନାଶକର ପୁରେ ଠାବ ନାହିଁ
ବିଷ୍ଣୁପୁରେ ଯାଉଛନ୍ତି କୃଷ୍ଣମୁଖ ଚାହିଁ ।
ଅନେକ ପାପ ଯେ କରିଥିଲେ ଜନ୍ମେ ଜନ୍ମେ
ତାହାକୁହିଁ ଶାସ୍ତିଦେଇ ନ ପାରିଲେ ଯମେ ।
ଏ ମହାଭାରତ ଯୁଦ୍ଧେ ମରିଲେକ ଯେତେ
ବୈକୁଣ୍ଠେ ଗଲେ ଅଠର ଦିବସ ପର୍ଯ୍ୟନ୍ତେ ।
ସମସ୍ତ ପାତକ ନାଶି ଲଭିଲେ ମୁକତି
ନାନାପାପୁଁ ତରି ବଇକୁଣ୍ଠେ କଲେ ସ୍ଥିତି ।
କୃଷ୍ଣଙ୍କ ମୁଖ ଚାହିଁଣ ଯେ ପଡ଼େ ସଂଗ୍ରାମେ
ବୈକୁଣ୍ଠେ ବାସ ଦିଅନ୍ତି ଶ୍ରୀପୁରୁଷୋତ୍ତମେ
ଶଙ୍ଖ ଚକ୍ର ଗଦା ପଦ୍ମଧରି ନାରାୟଣ
ଭାରତ ଯୁଦ୍ଧ କରାନ୍ତି ସାରଥି ହୋଇଣ ।
ସମରେ ପଡ଼ନ୍ତି କେହୁ ଶଙ୍ଖ ଚକ୍ର ଦେଖି
ଲଭନ୍ତି ବୈକୁଣ୍ଠ ଯମଦଣ୍ଡକୁ ଉପେକ୍ଷି ।
ଜୟ ଜୟ ନୀଳୋତ୍ପଳ ସମ ଯାହା ବର୍ଣ୍ଣ
ପୃଥ୍ୱୀଜନ ଚିନ୍ତାମଣି ଶ୍ରୀବତ୍ସଲାଞ୍ଛନ ।
ଭଗବାନ ବାସୁଦେବ ଅପୂର୍ବ ମୂରତି
ଏ ମହାଭାରତ ଯୁଦ୍ଧ ରଚିଲେ ଶ୍ରୀପତି ।

ଅଗତିର ଗତି ତୁମ୍ଭେ ମୁକତିର ଦାତା
କଳିକାଳ ଧ୍ୱଂସନ ଯେ ଭାରା ନିବାରନ୍ତା ।
ତୁଳସୀବଲ୍ଲଭ ପାଦ ରେଣୁ ପଦେ ପଦେ
ବିଜୟ କରୁ ଶାରଳାଦାସ ମମ ହୃଦେ ।



## ଦୁଃଶାସନ, କୃପ, ଶଲ୍ୟ, ଅଶ୍ୱତ୍ଥାମା ସହିତ ଅର୍ଜ୍ଜୁନଙ୍କ ଯୁଦ୍ଧ

ପୁନରପି ପୁଚ୍ଛାକଲେ ମନୁ ନରରାୟେ
ଦ୍ୱିତୀୟ ଦ୍ୱାର ଜିଣିଣ ଗଲେ ଧନଞ୍ଜୟେ ।
ଏକଥା ତୁମ୍ଭ ମୁଖରୁ ଶୁଣି ହେଲି ତୋଷ
ଏହା ଉତ୍ତାରୁ ହୋଇଲା କହ ମୁନି କିସ ।
କହନ୍ତି ଅଗସ୍ତି ରାଜା ପୁଚ୍ଛାକଲ ଯାହା
ମନଯୋଗ କରି ତୁମ୍ଭେ ଶୁଣ ଏବେ ତାହା ।
ବିସ୍ତାରି ମହାଭାରତ କେ କହି ପାରିବ
ବାଲି ବର୍ଷାଧାରା ତାରା କେ ନର କଳିବ ।
ସଂକ୍ଷେପେ କହୁଛି ଶୁଣ ହୋଇଲା ଯେ ଗୋଳ
ପାଞ୍ଚକୋଶ ପରିଯନ୍ତେ ଥିଲେ କୁରୁବଳ ।
ସେମାନେ ଅଟନ୍ତି ଜାଣ ତିରଣର ରାଶି
ବଡ଼ବାନଳ ସମାନ ପାର୍ଥ ଦିଏ ଧ୍ୱଂସି ।
ଜୟଦ୍ରଥ ବଧିବାକୁ ପାର୍ଥ ମହାକ୍ରୋଧେ
ଦୟା ଉପ୍ରୋଧ ଛାଡ଼ିଣ ଅନୁକ୍ଷଣେ ବିନ୍ଧେ ।
କୁରୁସୈନ୍ୟ ତେହ୍ନେ ଚୂତଫଳର ସମାନ
ତାହାକୁ ଲୋଟାଏ ପାର୍ଥ ପ୍ରଚଣ୍ଡ ପବନ ।
ଶକଟ ବ୍ୟୂହ ମଧ୍ୟରେ ଚଳେ ନନ୍ଦିଘୋଷ
ପୃଥିବୀ କର୍ଦ୍ଦମ ହୁଏ ରକ୍ତ ମେଦ ମାଂସ ।
ପବନ ସମ ଚଳାନ୍ତି ରଥ ଦେବରାଜ
ଓଗାଳିଲେ ବହୁ ସୈନ୍ୟ ଘେନି କୃପାଚାର୍ଯ୍ୟ ।
ସୁବର୍ଣ୍ଣର ରଥ ବ୍ୟାଘ୍ର ଲାଙ୍ଗୁଡ଼ର ଚିହ୍ନ
ଫର ଫର ପତକା ଯେ ଉଡ଼ଇ ଗଗନ ।
ଧବଳ କମଳ ଚିହ୍ନ ସିନ୍ଧୁ ଢେଉ ଜାଣି
ଆକାଶରେ ଉହାଡ଼ ଯେ ହେଲେ ଦିନମଣି ।
ଏକମୁଖ ହୋଇ ପାଞ୍ଚ ଅରବୁଦ ଯୋଧୀ
ସହସ୍ର ସହସ୍ର ବାଣ ମହାକ୍ରୋଧେ ବିନ୍ଧି ।
ପୃଥିବୀ ଘୋଟିଲା ସେହି ବାଣ ଜ୍ୱାଳାବଳୀ
ତାହା ଦେଖିଣ ବୋଲନ୍ତି ଦେବ ବନମାଳୀ ।
ଦେଖ ଶରବୃଷ୍ଟି ହୁଏ ସେ ପଣ୍ଡୁ ଦୁଲାଳ
ଅତ୍ୟନ୍ତ ଯୁଦ୍ଧ ହୋଇବ ବିଚାରି ସମ୍ଭାଳ ।
ନ ଜାଣି ପ୍ରତିଜ୍ଞା ତୁହି ବୃଥା କଲୁ ଏତେ
ବୋଇଲୁ ଯେ କୌରବଙ୍କୁ ଜିଣିବି କିଅଁତେ ।
ମାରନ୍ତେଣ ଶେଷ ଏବେ ନୁହେଁ କୁରୁବଳ
ରକ୍ତବୀର୍ଯ୍ୟ ପ୍ରାୟେ ପୁଣି ଶୁଭେ ମହାଗୋଳ ।
ଶୁଣି ପାର୍ଥ ବୋଲେ ସ୍ୱାମୀ ନୁହନ୍ତୁ ବିମୁଖ
କ୍ଷଣେ ରହିଣ ମୋହର ସମରକୁ ଦେଖ ।
କେଶବଙ୍କୁ ବୁଝାଇଣ ବିନ୍ଧେ ପାର୍ଥ ଶର
ଅର୍ବୁଦ ଯୋଦ୍ଧାଙ୍କୁ କରିଦେଲେ ସେ ଅସ୍ଥିର ।
ସେହି ଅପାଲଟଶର କରିଣ ଗମନ
ପଞ୍ଚଅର୍ବୁଦ ସୈନ୍ୟଙ୍କୁ କରିଲା ଛେଦନ ।
ପୁଣି ଏକସସ୍ର ବାଣ ବିନ୍ଧିଲେ କିରୀଟୀ
ଏକସସ୍ର ଯୋଦ୍ଧାଙ୍କର ରଥ ଗଲା ଫୁଟି ।
ପୁଣି ବହୁଶର ପାର୍ଥ ତୁଣୀରୁ କାଢ଼ିଣ
ସୈନ୍ୟମାନଙ୍କ ଉପରେ କରିଲେ ବର୍ଷଣ ।
ବାଣଘାତେ ସୈନ୍ୟମାନେ ତଳେ ଗଲେ ପଡ଼ି
ସମସ୍ତ ଶରୀରରୁ ପ୍ରାଣଗଲା ଉଡ଼ି ।
ସୈନ୍ୟଙ୍କ ପଡ଼ିବା ଦେଖି କୋପେ କୃପାଚାର୍ଯ୍ୟ
ଅର୍ଜ୍ଜୁନେ ବିନ୍ଧିଲେ ପଞ୍ଚବିଂଶତି ନାରାଜ ।
ଆସନ୍ତି ନାରାଚମାନେ ଆକାଶକୁ ଘୋଟି
ପଞ୍ଚବାଣେ ନିବାରିଲେ ତାହାକୁ କିରୀଟୀ ।
ପର୍ବତାଶରେକ ଘେନି କୃପାଚାର୍ଯ୍ୟ ମାରି
ବଜ୍ରଶରେ ଅରଜୁନ ତାକୁ ଦେଲେ ଚୂରି ।
ଶୁଣି କୃପ ବ୍ରହ୍ମଅସ୍ତ୍ର ବାଣେ ଦେଲେ ପେଷି
ତା ଗର୍ଜନେ ଦିଗପାଳମାନେ ହେଲେ ତ୍ରାସି ।
ପରିଘ ନାରାଚ ଘେନି ବିନ୍ଧେ ଫାଲଗୁନି
ନିର୍ଘାତ ବାଣକୁ ସେହି ଭକ୍ଷିଲା ସେକ୍ଷଣି ।
ଅର୍ଦ୍ଧଚନ୍ଦ୍ରାସ୍ତ୍ର ପେଷିଲେ କୃପ ମହାରଥୀ
ବଜ୍ର ମୁଦୁଗରେ ତାକୁ ଅର୍ଜ୍ଜୁନ ନିପାତି ।
ହରି ବୋଇଲେ ଦ୍ରୋଣଙ୍କ ଶଳା ଏହି କୃପ
ଅଳ୍ପଯୁଦ୍ଧେ ନ ଭାଙ୍ଗିବ ଏହାର ଯେ ଦର୍ପ ।
କୃଷ୍ଣବାକ୍ୟେ କ୍ଷୁରଅସ୍ତ୍ର ଅରଜୁନ ବିନ୍ଧି
କୃପାଚାର୍ଯ୍ୟଙ୍କର ଧନୁ ଗୁଣ ଦେଲେ ଛେଦି ।
କାମ୍ୟକ ଅସ୍ତ୍ରକୁ ପୁଣି ବିନ୍ଧିଣ ଅର୍ଜ୍ଜୁନ
କୃପାଚାର୍ଯ୍ୟଙ୍କ କନ୍ଧରୁ ଘେନିଲେକ ତ୍ରୋଣ ।
ନିରସ୍ତ୍ର ହୋଇଣ ତହୁଁ କୃପାଚାର୍ଯ୍ୟକ୍ଷତ୍ରୀ
ଖଡ଼ଗ ଫଳା ଘେନି ରଥୁ ଡେଇଁଲା ତଡ଼ତି ।
ସିଂହର ଗତି ପ୍ରାୟେକ ପାଦେ କ୍ଷେପିଗଲା
ତା ଦେଖି ପାର୍ଥ ବାବଲ ଶରକୁ ପେଷିଲା ।
ପୁଣି ଶରେକ ପେଷିଲେ ପଣ୍ଡୁ ରାଜବଳା
ସେହ୍ନା ଫୁଟନ୍ତେ ଛାଡ଼ିଲା କୃପ ଖଡ଼୍ଗଫଳା ।
ପ୍ରତ୍ୟେକ ରୋମମୂଳରୁ ରକ୍ତ ହେଲା ବୃଷ୍ଟି
କୃପାଚାର୍ଯ୍ୟ ମହୀପରେ ପଡ଼ିଲେ ଯେ ଲୋଟି

କୃପ ପଡ଼ନ୍ତେ ଆନନ୍ଦ ହେଲେ ଚକ୍ରପାଣି
ପାଞ୍ଚଜନ୍ୟ ଶଙ୍ଖକୁ ସେ ବଜାଇଲେ ଟାଣି ।
ବାହିଲେ ତୁରଙ୍ଗ ତହୁଁ ପ୍ରଭୁ ପଦ୍ମ ଆଖି
ମହାବାତେ ଗଗନରେ ଉଡ଼େ ଯେହ୍ନେ ପକ୍ଷୀ
ରଥ ଗଜ ଅଶ୍ୱ ସୈନ୍ୟ ପଥ ନିରୋଧନ୍ତେ
ଅର୍ଜୁନ ବିନାଶେ ତାଙ୍କୁ ଅନ୍ଧ ଶରାଘାତେ ।
ନନ୍ଦିଘୋଷ ଚଳିଯାନ୍ତେ ଭାରତର ମଲ୍ଲ
ଆଗେ ଓଗାଳିଲେ ବୀର ରାୟଗୁରୁ ଶଲ୍ୟ ।
ବାମେ ଡାହାଣେ ଅଛନ୍ତି ବହୁତର ରଥୀ
ଚାରି ମେବଚ୍ଛ ଅଶ୍ୱ ଯେ ଦୁଇସସ୍ର ହସ୍ତୀ ।
ଲୁହାର ଧନୁ ଅଟଇ ଲୁହା ତୀକ୍ଷ୍ଣବାଣ
ଶାରଙ୍ଗ ପକ୍ଷୀର ବାଣ ଭରି ବେନି ଦ୍ରୋଣ ।
ନାନା ଅଳଙ୍କାରେ ସର୍ବେ ହୋଇଛନ୍ତି ଭୂଷା
ରାଉତ ଅଙ୍ଗେ ହୋଇଛି କାଇମାଟି ଘଷା ।
ପଡ଼ନ୍ତି ଉଠନ୍ତି ପୁଣି ଦଶ ବିଂଶ ତ୍ରିଂଶ
ରାକ୍ଷସ ପ୍ରାୟେକ ସର୍ବେ ଘୋଟନ୍ତି ଆକାଶ ।
ଏହାଙ୍କର ତୁଲେ ଥିଲେ ପାଞ୍ଚସସ୍ର ରାଜା
ସମରେ ଅନିବାର ସେ ଦୁଷ୍ଟ ଦର୍ପଗଞ୍ଜା ।
ବୀରଜିତ ସୁରଜିତ ବୋଲି ବେନିରାୟ
ଦୁହିଁଙ୍କର ତୁଲେ ଛନ୍ତି ଦଶସସ୍ର ହୟ ।
ଦୁହିଁଙ୍କର କରେ ଶୋଭାପାଏ କୋନ୍ତଯାଠି
ରେରେକାର ଶବ୍ଦକରି ଏକମୁଖେ ଉଠି ।
ନାନାଭୂଷଣେ ଭୂଷିତ ହୋଇଛନ୍ତି ପୁଣି
ଝଲକଇ ଲାଙ୍କିଆ ଯେ ବିଜୁଳିହୁଁ ଜିଣି ।
ବୀରଜିତ ସୁରଜିତ ଏ ଦୁଇ ନରେନ୍ଦ୍ର
ନନ୍ଦିଘୋଷରଥକୁ ସେ କଲେ ଶରଭେଦ ।
ଅର୍ଜୁନ ବିନ୍ଧିଲେ ତହୁଁ ବାଣ ଚଉଷଠି
ଏକବାରେ ଦଶସସ୍ର ଅଶ୍ୱ ଗଲେ ଫୁଟି ।
କୋନ୍ତଯାଠି ବୁଲାନ୍ତେ ସେ ଦେଖି ବୀରପାର୍ଥ
ବାବଲ ଶରେ ଛେଦିଲେ ତାହାଙ୍କର ହସ୍ତ ।
ଅଶ୍ୱପରେ ଅସାଷ୍ଟମ ହେଲେ ଦୁଇ ରାୟ
ସମଦଣ୍ଡ ଦେଖା ଗଲେ ମୁଣ୍ଡା ବୃକ୍ଷ ପ୍ରାୟ ।
କତୁରି ବାଣ ବିନ୍ଧିଲେ ପୁଣି ଅରଜୁନ
ଯୋଦ୍ଧାଙ୍କର କଟିଠାରୁ କରିଲେ ଛେଦନ ।
ଗଦା ଧରି ଅଶ୍ୱଆରେ ତହିଁ ଯେତେ ଥିଲେ
ବାଣାଘାତେ ସର୍ବେ ତହିଁ ଢଳିଣ ପଡ଼ିଲେ ।
ପ୍ରଶଂସା କରନ୍ତି କୃଷ୍ଣ ସେହି ଯୁଦ୍ଧ ଦେଖି
ପଳାଇଲେ ଅଶ୍ୱମାନେ ରଥୀଙ୍କୁ ଉପେକ୍ଷି ।
କେଶବ ବୋଲନ୍ତି ଦେଖବାବୁ ଧନଞ୍ଜୟେ
ଦୁଇ ଦୁଇ ଖଣ୍ଡ ହେଲା ସବୁଙ୍କରି କାୟେ ।
କଟାକ୍ଷ ନୟନ ଦନ୍ତ ଅଧରରେ ଚାପି
ମୃତପିଣ୍ଡ ପଡ଼ିଛନ୍ତି ରଣଭୂମି ବ୍ୟାପି ।
ପାଞ୍ଚ ଅଇବ୍ରତ ଯୋଦ୍ଧା ଅଶ୍ୱ ଏହିପରି
କେତେ ପଡ଼ିଛନ୍ତି କରି ନୁହଇ ସୁମାରି ।
ସମସ୍ତେ ବିନାଶ ହେଲେ ନାହିଁ କେହି ସଖା
ଅସଂଖ୍ୟ ବଳକୁ କେହୁ କରିବ ସେ ଲେଖା ।
ଶଲ୍ୟ ଏକାଳେ ଆରଦ୍ରାବଳି ଧନୁ ଧରି
ଶକ୍ରାଜିତ ବୋଲି ଶର ବିନ୍ଧେ ଟାଣିକରି ।
କୋଟିଏ ସୂର୍ଯ୍ୟର ପ୍ରାୟେ କିରଣ ବିକାଶି
ମହା ଉଲ୍‌କାପାତ ପ୍ରାୟେ ପୃଥ୍ୱୀକି ସେ ଦିଶି ।
ବାଣାଘାତେ ଅଶ୍ୱ ଗଜ ରହିଣ ନ ପାରି
କଉରବ ବଳ ସବୁ ପଳାଇଲେ ଡରି ।
ଯୋଜନେ ପର୍ଯ୍ୟନ୍ତେ କେହୁ ନ ପାରିଲେ ରହି
ନନ୍ଦିଘୋଷ ସଙ୍ଗେ ଶଲ୍ୟ ରଣ ଯେ କରଇ ।
କୃଷ୍ଣ ପ୍ରଶଂସନ୍ତି ସାଧୁ ଶଲ୍ୟ ତୋ ମହିମା
କ୍ଷତ୍ରୀକୁଳେ ନାହିଁ କେହି ଦେବାକୁ ଉପମା ।
ବହୁ ଶର ରହିଅଛି ଶଲ୍ୟଙ୍କର ରଥ
କୃଷ୍ଣାର୍ଜୁନେ ଶର ବିନ୍ଧେ ହୋଇ ସମକକ୍ଷ ।
ଧାର୍ମିକ ବିବେକ ଯେ ମହତ କୁଳଶୀଳ
ଏପରି ବହୁ ପ୍ରଶଂସା କଲେ ଆଦିମୂଳ ।
ଶଲ୍ୟଙ୍କ ପ୍ରଶଂସା ଶୁଣି ପାର୍ଥ ଚଳି ହୋଇ
ବୋଲେ କିମ୍ପା ଏତେ ପରଶଂସା ଭାବଗ୍ରାହୀ
କୃଷ୍ଣ ବୋଇଲେ ଅଜ୍ଞାନୀ ତୁହି ଧନଞ୍ଜୟ
ନନ୍ଦିଘୋଷ ରଥ ତୋର ମେରୁର ପରାୟ ।
ଯୋଚାଅଛି ମହାବଳୀ ପୁଣି ଅଶ୍ୱଚାରି
ଧ୍ୱଜପରେ ହନୁମନ୍ତ ରହିଛି ଆବୋରି ।
ଦ୍ୱିତୀ ପିନାକ ଗାଣ୍ଡୀବ ଧନୁ ତୋର କରେ
ପାଶୁପତ ଶର ପୁଣି ଅଛି ତୋ ତୂଣୀରେ ।
ତିନିପୁର କର୍ତ୍ତା ମୁହିଁ ତୋ ରଥେ ସାରଥି
ଶଙ୍ଖ ଚକ୍ର ହସ୍ତେ ପୁଣି ବିରାଟ ମୂରତି ।
ଏ ରୂପ ଦେଖିଲେ ମୋର ତ୍ରାସ କରେ ବ୍ରହ୍ମା
ଜାଣିଲେ ଭାରୋଇ ମଲ୍ଲ ଏବେ ଶଲ୍ୟ ବ୍ରହ୍ମା
ନ ଥିଲା ଏପରି କେହି ଆଉ କେ ନୋହିବ
ଏପରି କହି ଶଲ୍ୟଙ୍କୁ ପ୍ରଶଂସନ୍ତେ ଦେବ ।
ଅର୍ଜୁନ ଶଲ୍ୟ ପ୍ରଶଂସା ଶୁଣିଣ ରାଗିଲେ
ଚୋଖା ଚୋଖା ବାଛିକରି ବାଣ ବୃଷ୍ଟିକଲେ ।
ଚାରିହୟଙ୍କୁ ବିନ୍ଧିଲେ ପାଞ୍ଚ ପାଞ୍ଚ ଶର
ଦଶବାଣ ବନ୍ଧିଲେ ସେ ସାରଥି ଉପର ।
ଧ୍ୱଜକୁ ବିନ୍ଧିଲେ ପୁଣ ପଞ୍ଚବାଣ ଯୋଚି
ଶଲ୍ୟକୁ ହାବୋଡ଼ା ଶର ମାରେ ସବ୍ୟସାଚୀ

ଶସ୍ତ୍ରପଡ଼ନ୍ତେ ଘୋଟକେ ହୋଇଗଲେ ଚୂନା
ସାରଥି ମଲା ଭେଦିଲା ସୈନ୍ୟଙ୍କର ସେହ୍ନା ।
ରଥ ଶତଖଣ୍ଡ ହୋଇ ପଡ଼ନ୍ତେଣ ଭାଜି
ଭୂମିରେ ଶଲ୍ୟ ପଡ଼ିଲେ ହୋଇ ଗଳଗାଜି ।
ପୁଣ କୃତାନ୍ତକ ବାଣ ବିନ୍ଧିଲେ ଅର୍ଜ୍ଜୁନ
ରହ ରହ ପାର୍ଥ ଡାକ ଦେଲେ ଜନାର୍ଦ୍ଦନ ।
ଭୋ ପାର୍ଥ ଶୁଣ ତୁ ଏବେ ମୋହର ବଚନ
ଏହାଙ୍କୁ ବଧ କରିବା ଅଟେ ଅକାରଣ ।
ବିଶେଷେ ଆମ୍ଭର ଗୁରୁ ସେ ପଣ୍ଡୁଙ୍କ ଶଳା
ଆବର ଅଟନ୍ତି ସହଦେବଙ୍କ ମଉଳା ।
ଏହା କହି ସେ ସ୍ଥାନରୁ ରଥ ନେଲେ ବାହି
ବେନି ଓଧି ତଳେ ଶଲ୍ୟ ରଥୀ ଗଲେ ରହି ।
ପୁଣି ଯାଇ ଆଉ ରଥେ କରି ଆରୋହଣ
ଧନୁ ଶସ୍ତ୍ର ଘେନି ଉଠିଲେକ ତତକ୍ଷଣ ।
ପାଞ୍ଚଶତ ଯୋଦ୍ଧା ଘେନି ରାୟଗୁରୁ ଶଲ୍ୟ
ନନ୍ଦିଘୋଷ ଓଗାଳିଲେ ହୋଇ କୋପାନଳ ।
ତା ପାଶକୁ ନନ୍ଦିଘୋଷ ରଥ ନ୍ୟନ୍ତେ ଚାଳି
ବିଶାଶତ ଶର ଶଲ୍ୟ ବିନ୍ଧେ ଧନୁ ତୋଳି ।
ଅପ୍ରମିତେ ବାଣ ବିନ୍ଧେ ବୀରବର ପାର୍ଥ
ପର୍ବତମାନେ କମ୍ପନ୍ତି ପାଇ ସେ ଆଘାତ ।
ସେହି ବାଣ ଶଲ୍ୟଙ୍କର ଅସ୍ତ୍ରମାନ କାଟି
ସେ ଆଘାତେ ବହୁ ସୈନ୍ୟ ପଡ଼ିଲେକ ଲୋଟି
ଅଶୀଲକ୍ଷ ହସ୍ତୀ ତିନିଲକ୍ଷ ଯେ ପଦାତି
ନକୋଟି ମୁକୁଟବନ୍ଧା ସାତକ୍ଷୌଣୀ ରଥୀ ।
ଏ ପାଞ୍ଚ ଫଳାର ମଧ୍ୟେ ବଡ଼ାଇ ଗହଳ
ରଥ ଗଜ ଦିଶନ୍ତି ଯେ ଜାଣି ମେଘମାଳ ।
ଏହି ସମୟକୁ ଅଛି ବାକି ଅଧେ ଦିନ
ଘୋର ଅନ୍ଧକାରମୟ ଦିଶଇ ଗଗନ ।
ମହା ବନସ୍ତରେ ଯେହ୍ନେ ଶାଳବୃକ୍ଷ ମାନେ
ରଥ ଗଜ ଅଶ୍ୱମାନେ ଦେଖାଯାନ୍ତି ତେହ୍ନେ ।
ଏକକୁ ଆରେକ ତହିଁ କରନ୍ତି ଉତ୍ତର
ଅକାଳେ କିମ୍ପା ଗର୍ଜ୍ଜଇ ଏହି ଜଳଧର ।
ସୈନ୍ୟ ଦେଖିଣ ସାନନ୍ଦ ବୀର ଫାଲଗୁନି
ଅତ୍ୟନ୍ତ କ୍ରୋଧରେ ବାଣ ବିନ୍ଧିଲାକ ତିନି ।
ଜଳ ମେଦୁର ପଲକା ଏହି ତିନିବାଣେ
ଜଳବୃଷ୍ଟି ହେଉଅଛି କି ଧାରା ଶ୍ରାବଣେ ।
ଅନ୍ଧାରି ବାଣ ମାଇଲେ ଶଲ୍ୟ ଦେବରାୟ
ଦିବାରେ ପୃଥ୍ୱୀ ଦିଶିଲା ଅନ୍ଧକାର ମୟ ।
ଉଭୟ ଥାଟ ମଧ୍ୟରେ ସର୍ବେ ହେଲେ ବଣା
ବାରଣା ନ ହେଲା କେହୁ ପର କେ ଆପଣା ।

ଏକର ଦ୍ରୋଣ ଆରେକ ନିଏ ଝିଙ୍କିକରି
କାହାର ଅସ୍ତ୍ରକୁ କେହୁ ନିଅଇ ଓଟାରି ।
ଅନ୍ୟୋଅନ୍ୟ ହୋଇ ଯେ କୌରବ ସଇନି
ବନ୍ଧୁ ସୋଦରଙ୍କୁ କେହି ନ ପାରିଲେ ଚିହ୍ନି ।
କେ ରାଜା କେ ରଥୀ ବୋଲି ନ ପାରିଲେବାରି
ଆପଣା ମଧ୍ୟରେ ସର୍ବେ ହେଲା ମରାମରି ।
ପଞ୍ଚଷଠି ସୈନ୍ୟ ଘେନି ଶଲ୍ୟ ମହାରଥୀ
ଷାଠିଏ ଷାଠିଏ ବାଣ ବିନ୍ଧିଲେ ଝଟତି ।
ଅପ୍ରମିତ ବାଣ ଯହୁଁ ହୋଇଲାକ ବୃଷ୍ଟି
ପବନୁ ବେଗ କରିଣ ପାର୍ଥ ତାହା କାଟି ।
ବେଢ଼ିଣ ବିନ୍ଧନ୍ତେ ସର୍ବେ ଧର୍ମକରି ତେଜ୍ୟା
ଏକ ରଥିକୁ ବେଢ଼ିଲେ ପାଞ୍ଚସସ୍ର ରାଜା ।
ନନ୍ଦିଘୋଷ ଚଉକତି ପଡୁଅଛି ଶର
ଅଶ୍ୱ ସାରଥି ରଥୀ ଯେ ନ ଦିଶେ କାହାର ।
ଶ୍ରୀଭୁଜରେ ପାଶୁପତ ଘେନି ବୀର ପାର୍ଥ
ବିନ୍ଧିଣ ସକଳ ଅସ୍ତ୍ର କରିଲେ ବିଅର୍ଥ ।
ଜଳବୃଷ୍ଟି ପ୍ରାୟେ ଶର ପଡ଼ଇ ଗଗନୁ
ସେ ଶରମାନ ଗିଳଇ ଧ୍ୱଜେ ଥାଇ ହନୁ ।
ବାବଲଶର ପେଷିଲେ କୋପେ ଧନଞ୍ଜୟ
ବାଜନ୍ତେ ସୈନ୍ୟ ଲୋଟିଲେ ରମ୍ଭାବନ ପ୍ରାୟ
ପୁଣି ପରିଘ ଶରକୁ ପାର୍ଥ କରେ ଧରି
ମାରନ୍ତେ ପଡ଼ିଲେ ଗଜମାନେ ପ୍ରାଣହାରି ।
ମନଭେଦୀ ନାରାଚକୁ ବିନ୍ଧେ ଧନଞ୍ଜୟ
ମଧଭୁବନୁ ସଇନ୍ୟ ସର୍ବେ ହେଲେ କ୍ଷୟ ।
ଆଠକ୍ଷୌଣୀ ସୈନ୍ୟ ଅଖଚକ ମଧ୍ୟେ ଥିଲେ
ମନଭେଦୀ ଶରାଘାତେ ସମସ୍ତେ ପଡ଼ିଲେ ।
ରତନମଣି ମୁକୁଟ ଭୂଷା ଜଗଦ୍‌ବଳା
ସୀମନ୍ତିନୀ ବାହୁଟି ଯେ ବକ୍ଷ ରତ୍ନମାଳା ।
ହୀରକ ମଣିମାଣିକ୍ୟ ଅଙ୍ଗଭୂଷାଚୟ
ତଳେ ପଡ଼ିଣ ଦିଶନ୍ତି ନକ୍ଷତ୍ର ପରାୟ ।
ସାତକ୍ଷୌଣୀ ବଳ ତହିଁ ଥିଲେ ଅତିଚୋଖା
ଏକ ପ୍ରହାରକେ ସର୍ବେ ହୋଇଲେ ନିରେଖା ।
ମନଭେଦୀ ଶରେ ନ ରହିଲେ ଏକଜଣ
ସେହ୍ନା ଟୋପରେ ରଙ୍ଗ ଯେ ବାହୁଟି କଙ୍କଣ ।
ଶରୀର ରଙ୍ଗ ହୋଇଣ ତଳେ ଅଛି ପଡ଼ି
କି ଜାଣି ଗଗନୁ ଅଷ୍ଟରତ୍ନ ପଡ଼େ ଝଡ଼ି ।
ଗଜ ଅଶ୍ୱ ମନୁଷ୍ୟର ଦେହରୁ ଯେ ଗଳି
ରୁଧିରମାନ ବହୁଛି କେ ପାରିବ କଳି ।
ଗଜ ଅଶ୍ୱ ମନୁଷ୍ୟଙ୍କୁ ମଡ଼ା ମେଳା ମେଳା
ରକ୍ତନଦେ ଭାସିଯାନ୍ତି ଯେସନେକ ଭେଳା ।

ଦିନକର ଆସିଣ ଯେ ନବଘଡ଼ି ହେଲେ
ତୃଷାରେ ଯୋଦ୍ଧାଏ ଅସ୍ତ୍ର ଧରି ନ ପାରିଲେ ।
ସମରେ ଶ୍ରମରେ ସେହୁ ପାଇ ମହାଦୁଃଖ
ରଣ ଛାଡ଼ି ପଳାଇଲେ ହୋଇଣ ବିମୁଖ ।
ମନଦମ୍ଭେ ଯୋଦ୍ଧାମାନେ ବୋଲେ ରହ ବାବା
ଯୁଦ୍ଧେ ମରଣ ସୁଲଭ ଆଉ କି ପାଇବା ।
ନିସତେ ପଡୁଛନ୍ତି କେ ଦେଉଛନ୍ତି ଝାସ
ଶ୍ରୀକୃଷ୍ଣ ମୁଖ ଚାହିଁଣ ବଇକୁଣ୍ଠେ ବାସ ।
ମହାଭାରତ ସମର ହେଉଅଛି ଏଣେ
ଆକାଶରେ ରହି ଦେଖୁଛନ୍ତି ଦେବଗଣେ ।
ଧର୍ମ ଅଧର୍ମ ଦେଖିଣ କରୁଛନ୍ତି ଗୋଳ
ଧର ଧର ମାର ମାର ଶୁଭଇ ଚହଳ ।
ଫୁଟି ଲୋଟି ପୁଣି କେ ଉଠନ୍ତି ମୋହ ତେଜି
ରଣରଙ୍ଗ ଦେଖିଣ କେ ଧାମେ ଗଳଗାଜି ।
ସୈନ୍ୟଙ୍କ ବିନାଶ ଦେଖି ଶଲ୍ୟ ସେନାପତି
ରଣେ ଅଗ୍ରସର ହେଲେ ହୋଇ କୋପ ମୂର୍ତ୍ତି ।
ଶ୍ରୀଭୁଜେ କୋଦନ୍ତ ସମ ଧନୁ ଏକ ଧରି
ଦିଶନ୍ତି ଯେହ୍ନେ ପିନାକଧାରୀ ତ୍ରିପୁରାରୀ ।
ସୁବର୍ଣ୍ଣ ରଥରେ ବ୍ୟାଘ୍ର ଚର୍ମର ଛାଉଣି
କେଶରୀର ଲାଙ୍ଗୁଳ ଯେ ତାପରେ ଓଢ଼ଣି ।
ଇନ୍ଦ୍ର ଶରାସନ ପ୍ରାୟ କରରେ କୋଦଣ୍ଡ
ଡାକରେ ମହୀ କମ୍ପାଏ ଭାରତର ଷଣ୍ଢ ।
ବିଶାଶତେ ଦିବ୍ୟଅସ୍ତ୍ର ଲୁହା ତୀକ୍ଷ୍ଣ ମୁନା
ଆକର୍ଷି ବିନ୍ଧିଲେ ଶଲ୍ୟ ଅର୍ଜୁନଙ୍କ ସେହ୍ନା ।
ପୁଣି ରାଗେ ସହସ୍ରେକ ବାଣ ଘେନି କରେ
ଓଟାରି ବିନ୍ଧିଲେ ଶଲ୍ୟ ଅର୍ଜୁନ ଉପରେ ।
ପୁନରପି ବିଂଶ ତ୍ରିଂଶ ପୂରାଇଣ ବାଣ
ପାର୍ଥ ସାରଥି କୃଷ୍ଣଙ୍କୁ ବିନ୍ଧିଲା ତକ୍ଷଣ ।
ପୁଣି ତୂଣୀରରୁ କାଢ଼ି ଚଉଷଠି ଶର
ଚାରି ଅଶ୍ୱଙ୍କ ଉପରେ ବିନ୍ଧିଲେ ସତ୍ୱର ।
ହସ୍ତର ବ୍ୟଗ୍ରତାପଣ କହି ତା କେ ପାରି
ରଣଝଣ ଶବଦରେ କମ୍ପେ ବସୁନ୍ଧରୀ ।
ଶ୍ରୀକୃଷ୍ଣ ବୋଇଲେ ତୁ ହୋ ଦେଖ ଫାଲଗୁନି
ଶଲ୍ୟର ଶର ଘୋଟିଲା ସର୍ବତ୍ର ମେଦିନୀ ।
ଅର୍ଜୁନ ବୋଇଲେ ପ୍ରଭୁ ଆହୁରି ସେ ବିନ୍ଧୁ
ଶେଷ ହେବା ଯାଏ ଶର ଦୁଇଦ୍ରୋଣ ମଧୁ ।
ଶ୍ରୀକୃଷ୍ଣ ବୋଇଲେ କହୁ କୁତୂହଳ କଥା
ମଧସ୍ଥାନ ଆସି ହେଲେ ଆଦିତ୍ୟ ଦେବତା ।
ଜୟଦ୍ରଥେ ନ ଭେଟିବା ଯାଏ ମୋର ଭୟ
ତୁ ଏ ଯୁଦ୍ଧ ମଣୁଅଛୁ ସାମାନ୍ୟର ପ୍ରାୟ ।

ଅର୍ଜୁନ ବୋଲେ ସାରଥି କୃଷ୍ଣ ଯାର ରଥେ
କିଞ୍ଚିତ ପ୍ରାୟେକ ମଣେ ସେହି ଜୟଦ୍ରଥେ ।
ଏହିକ୍ଷଣି ମୋ ଛାମୁରେ କିଏ ଠିଆହେବ
ଶକଟ ବ୍ୟୂହରେ ଆଜ ମୋ ଯୁଦ୍ଧ ଦେଖିବ ।
ବିଜୟ କରବାଳ ଯେ ଆଉ ପାଞ୍ଚବାଣ
ପାର୍ବତୀ ଯା ଦେଇଥିଲେ ହୋଇ ତୋଷ ମନ
କୌଣସି ଯୁଦ୍ଧ ସମୟେ ପ୍ରୟୋଗ ନ କରି
ରଖିଥିଲେ ପାର୍ଥ ତାହା ଅତିଯତ୍ନ କରି ।
ଧନୁରେ ଯୋଚିଲେ ପୁଣି ହୋଇ କୋପମୂର୍ତ୍ତି
ଗୁଣ ଆମଞ୍ଚି ଶଲ୍ୟଙ୍କୁ ବିନ୍ଧିଲେକ ଧାତି ।
ସେ ନିଦାଘ ବାଣ ପଡ଼େ ହୋଇଣ ପ୍ରଚଣ୍ଡ
ହୟ ସାରଥି ଦୁହିଁଙ୍କ କାଟିଦେଲା ମୁଣ୍ଡ ।
ସେ ଅସ୍ତ୍ରର ତେଜ ପାଇ ରଥ ଗଲା ଫାଟି
ଶଲ୍ୟଙ୍କ ପରେ ପଡ଼ିଲା ବଜ୍ରସମ ଘୋଟି ।
ଯେସନେକ କାଳସର୍ପ ପଶଇ ବିବରେ
ସେପରି ବାଣ ଭେଦିଲା ଶଲ୍ୟଙ୍କ ଶରୀରେ ।
ରୋମେ ରୋମେ ଭେଦିବାରୁ ବୋହିଲା ଶୋଣିତ
ସେହ୍ନାସହ ଦେହ ହେଲା ରୁଧିରେ ଜଡ଼ିତ ।
ଘାଏ ଅସାଷ୍ଟମ ହେଲେ ଇଚ୍ଛାବତୀ ବାଳ
ଗୋବିନ୍ଦ ବୋଇଲେ ଯାର ଛେଦ ବକ୍ଷସ୍ଥଳ ।
ଅର୍ଜୁନ ବୋଇଲେ ଶୁଣ ଦେବ ଶିରୀପତି
ସୋଦର ମଉଳା ଏହୁ ଥାଆନ୍ତୁ ବରତି ।
ଶରଘାଏ ମୋହ ଗଲେ ଶଲ୍ୟ ସେନାପତି
ଅନ୍ତରୀକ୍ଷେ ମୋର ରଥ ବାହା ହେ ଶ୍ରୀପତି ।
ଅର୍ଜୁନ ବଚନେ ତହୁଁ ଦେବ ଦଇତ୍ୟାରି
ଶୂନ୍ୟପଥେ ବାହିନେଲେ ରଥ ବେଗକରି ।
ଷଷ୍ଟ ଫଳିରେ ଦେଖିଲେ ବହୁସୈନ୍ୟ ଗୋଳ
ଯୋଜନ ପର୍ଯ୍ୟନ୍ତେ ମାଡ଼ି ପଡ଼ିଛି ଚହଳ ।
ଶ୍ରୀକୃଷ୍ଣ ବୋଇଲେ ଦେଖ ବୀର ଫାଲଗୁନି
ତୃଷାତୁରେ ଅଶକତ ହେଲେଣି ସଇନି ।
ରୁଧିର ଜଡ଼ିତ ହେଲା ଅଶ୍ୱଙ୍କର ଦେହ
ତୃଷାର ଆକୁଳେ ଚଳି ନ ପାରନ୍ତି ହୟ ।
କୃଷ୍ଣଙ୍କ ବଚନ ଶୁଣି ବୀର ଫାଲଗୁନି
ଜଳତରଙ୍ଗ ନାମରେ ଅସ୍ତ୍ର ଏକ ଘେନି ।
ଆକର୍ଷି ବିନ୍ଧନ୍ତେ ତାହା ବାସବ ନନ୍ଦନ
ପଞ୍ଚଧାରା ହୋଇ ଜଳ ଉଠିଲା ବହନ ।
ସୁଶୀତଳ ସୁନିର୍ମଳ ସୁବାସିତ ନୀର
ବୃଷ୍ଟି ହୋଇ ବହିବାରୁ ଧରଣୀ ଉପର ।
ତୃଷାର ଆକୁଳେ ଥିଲେ ଅଶ୍ୱ ଗଜ ସୈନ୍ୟ
ଯେଝା ଇଚ୍ଛାସୁଖେ ସର୍ବେ କଲେ ଜଳପାନ ।

ତୃଷା ହରନ୍ତେ ସମସ୍ତେ ହୋଇ ତୋଷଚିତ୍ତ
ଏକମୁଖେ ପ୍ରଶଂସନ୍ତି ସାଧୁ ସାଧୁ ପାର୍ଥ
ଏ ମହାଭାରତ ଯୁଦ୍ଧେ ତୋ ମହିମା ଧନ୍ୟ
ସାଧୁ ତୋର ପିତା ମାତା ଧନ୍ୟ ଅରଜୁନ ।
ଶତ୍ରୁଙ୍କଠାରେ ତୁ ଆଉ ଏଡ଼େ ପରସନ୍ନ
ତ୍ରୈଲୋକ୍ୟ ମଧ୍ୟରେ ତୋର ଜୀବନକୁ ଧନ୍ୟ
ଏ ମହୀମଣ୍ଡଳେ ତୁହି ଭୁଞ୍ଜ ଅଇଶ୍ୱର୍ଯ୍ୟ
ଆମ୍ଭର ଆୟୁଷ ଘେନି ଶୁଭେ କର ରାଜ୍ୟ ।
କୌରବ ଥାଟରେ ଶୁଭେ ଏସନକ ଧ୍ୱନି
ଶ୍ରୀକୃଷ୍ଣ ବୋଲନ୍ତି ଶୁଣ ବୀର ଫାଲଗୁନି ।
ସନ୍ତୋଷ ହୋଇଣ ସୈନ୍ୟେ ଅସ୍ତ୍ରଶସ୍ତ୍ର ଧରି
ଯେ ଯାହାର ସ୍ଥାନେ ଯାଇ ରହିଲେ ଆବୋରି
ସୁନା ଟୋପର ରତ୍ନର ମୁକୁଟ କା ଶିରେ
ତାଡ଼ ତୋଡ଼ର ବାହୁଟି ଶୋଭାପାଏ କରେ
କୃପାଣ ପରଶୁ ଗଦା ଆଉ ମୃଦୁଗର
କୁନ୍ତ ଖଡ୍‌ଗ ଗୁରୁଜାଦି ଯେ କର୍ଣ୍ଣ କଟାର ।
ଶସ୍ତ୍ରଙ୍କର ଶବ୍ଦମାନ ଶୁଭେ ରଣଝଣ
ରଙ୍ଗବସ୍ତ୍ର କରିଛନ୍ତି ସର୍ବେ ପରିଧାନ ।
କିଳିକିଳା ଶବଦରେ ଉଠେ ମହାଧ୍ୱନି
ମୈଯୁଦ୍ଧେ ଡାକୁଥିଲେ ଯେସନେ ଡାକିନୀ ।
ମହାଭୟଙ୍କର ବଳ ସର୍ବେ ବଳବନ୍ତା
ଅଶ୍ୱଥାମା ତୁଲେ ପାଞ୍ଚକୋଟି ଗଜଦନ୍ତା ।
ଦେଖ ଅସ୍ତ୍ର ବୁଲାଇଣ ଆସୁଛନ୍ତି ବଳୀ
ନନ୍ଦିଘୋଷକୁ ଆସନ୍ତି ଓଗାଳିବେ ବୋଲି ।
ଭାରତେ ଯେ ମହାମଲ୍ଲ କ୍ଷତ୍ରିୟ ଉତ୍ତମା
ପଦ୍ମବୂ୍ୟହ ଦ୍ୱାର ଜଗିଅଛି ଅଶ୍ୱଥାମା ।
ଅନ୍ଧକ ନିଧନ କାଳେ ଯେହ୍ନେ ତିପୁରାରି
ଅଶ୍ୱଥାମାର ମୂରତି ଦିଶେ ସେହିପରି ।
ସ୍ଫଟିକର ରଥେ ଅଷ୍ଟରତ୍ନର ଖଞ୍ଜାଣି
ସ୍ୱର୍ଣ୍ଣମୃଗ ଚର୍ମ ତହିଁ ହୋଇଛି ଛାଉଣି ।
ଦିବ୍ୟାଙ୍ଗ ପତନୀ ନେତ ଉଡୁଅଛି ଚିହ୍ନ
ସୁବର୍ଣ୍ଣର ରଥ ଗୋଟି ଦିଶେ ଶୋଭାବନ ।
ଦେଖ କେଶରୀର ତୁଲ୍ୟ ଦ୍ୱାରେ ଅଛି ରହି
ଅର୍ଜ୍ଜୁନ ବୋଇଲେ ପ୍ରଭୁ କିଛି ଚିନ୍ତାନାହିଁ ।
ଅଶ୍ୱଥାମା ନିକଟକୁ ରଥ ବାହା ମୋର
ଶୁଣି ରଥ ଚଳାଇଲେ ପ୍ରଭୁ ଚକ୍ରଧର ।
ଦ୍ୱାର ଜଗି ଅଶ୍ୱଥାମା ରହିଲାକ ରଥେ
ପୃଥ୍ୱୀ ଦଲଦଲ କରି ନନ୍ଦିଘୋଷ ଯାନ୍ତେ ।
ଧ୍ୱଜରେ ଦିଶଇ କପିକେତନର ଚିହ୍ନ
ଦ୍ରୋଣପୁତ୍ର ଦେଖିକରି ଭାଳେ ପଞ୍ଚମନ ।
ବୂ୍ୟହ ଭେଦି ଆସେ କପିକେତନର ଧ୍ୱଜ
ସାରଥି ଅଛନ୍ତି ନିଜେ ପ୍ରଭୁ ଦେବରାଜ ।
ଦଶ ଅର୍ବୁଦ ଯୋଦ୍ଧାଙ୍କୁ ସଙ୍ଗରେ ଘେନିଣ
ପିତା ପ୍ରଥମ ଦ୍ୱାରରେ ଥିଲେକ ଜଗିଣ ।
ପାଞ୍ଚକୋଟି ଯୋଦ୍ଧା ଘେନି ଦୁଃଶାସନ ବୀର
ଜଗି ରହିଥିଲା ସେହି ଦ୍ୱିତୀୟ ଦୁଆର ।
କୃପା ଆଚାର୍ଯ୍ୟ ଆବର ରାୟଗୁରୁ ଶଲ୍ୟ
ତୃତୀୟ ଦୁଆର ଜଗିଥିଲେ ମହାମଲ୍ଲ ।
ଦଶଲକ୍ଷ ଯୋଦ୍ଧା ତେର ଶତ ପାରିଦଣ୍ଡ
ଏକା ଜଣକେ ଛେଦିଲା ଏତେକର ମୁଣ୍ଡ ।
ଭୀମ ନକୁଳାଦି କେହି ସଙ୍ଗରେ ନାହାନ୍ତି
ଏକାକେ କିପରି ନାଶକଲା ଏ ସବୁନ୍ତି ।
ଶକଟବୂ୍ୟହ ଭେଦିଣ ଆସେ ଏକା ରଥେ
ଯୋଦ୍ଧାମାନେ ତ କେ କାହିଁ ନାହାନ୍ତି ଜୀବିତେ
ଜୟଦ୍ରଥ ଯେବେ ଏଥୁ ପଳାଇ ଥାଆନ୍ତା
ଏତେ ପ୍ରମାଦ କିପାଇଁ ଆମ୍ଭଙ୍କୁ ପଡ଼ନ୍ତା ।
ଜଣକ ପାଇଁକି ପିତା କଲେ ମନ୍ଦପଣ
ଶକଟବୂ୍ୟହ ରଚିଲେ ସେହି ଅକାରଣ ।
ମୋତେ ଜିଣି ପଦ୍ମବୂ୍ୟହ ଭେଦିବ ବିଜୟ
ଜୟଦ୍ରଥ ପ୍ରାଣ ଆଜି ଗଲାକ ନିଶ୍ଚୟ ।
ପୁଣ ଭାଳେ ଦ୍ରୋଣପରି ପିତା ନାଶଗଲେ
କୃପାଚାର୍ଯ୍ୟ ଦୁଃଶାସନ ପ୍ରାଣ ହରାଇଲେ ।
ମାତା ସହୋଦର ଆଉ ପିତା ମଲେ ରଣେ
ମୁଁ କିମ୍ପା ଜୀବନ ଘେନି ଥିବି ଅକାରଣେ ।
ମଲେ ମରିବି ପଛକେ ଅର୍ଜ୍ଜୁନର ଶରେ
ସମର କରିବି ନିଶ୍ଚେଁ ମୁଁ ପ୍ରାଣପଣରେ ।
ମାରିବି ଏ ପାଣ୍ଡବଙ୍କୁ ଉପ୍ରୋଧ ଉପେକ୍ଷି
କୃଷ୍ଣ ଅର୍ଜ୍ଜୁନକୁ ଆଜ କେ ପାରିବ ରଖି ।
ଯଦ୍ୟପି କପିକେତନ ଅଛି ହନୁମାନ
କେ ସହିପାରିବ ଆଜି ଅଶ୍ୱଥାମା ରଣ ।
ପିତା ନିଧନେ ମନରୁ ଛାଡ଼ିଲା ଉପ୍ରୋଧ
ନିଉପ୍ରୋଧ ହୋଇ ତହିଁ ଆରମ୍ଭିଲା ଯୁଦ୍ଧ ।
ଅଜଗବ ସମ ଅଶୀସସ୍ର ବଳ ଧନୁ
ଧରି ପର୍ଶୁରାମ ପରି ଦିଶେ ଦ୍ରୋଣସୂନୁ ।
ଦିବ୍ୟ ଅସ୍ତ୍ର ପୂରାଇଣ ରଥ ଅଗ୍ରେ କରି
ନନ୍ଦିଘୋଷ ରଥକୁ ସେ ରହିଲା ଆବୋରି ।
ମହା ମତ୍ତଗଜ ଚଢ଼ି ଚୌଦଲକ୍ଷ ଯୋଦ୍ଧା
ଏକମୁଖ ହୋଇ ସର୍ବେ ପାର୍ଥେ ଶର ବିନ୍ଧି ।
ମହାକଳପୀ ଯୋଦ୍ଧା ସେ ଅଟେ ଅଶ୍ୱଥାମା
ସେ ହସ୍ତେ ଅସ୍ତ୍ର ଧରନ୍ତେ ତ୍ରାସକରେ ବ୍ରହ୍ମା ।

ତିନିଭୁବନ ମଧ୍ୟରେ ଏକ ମହାବୀର
ମେଦିନୀ ସହି ନ ପାରେ ଅଶ୍ୱଥାମା ଭାର ।
ପର୍ଶୁରାମ ସମ ଅଟେ ଯାହାର ମହିମା
ଇନ୍ଦ୍ର ସମାନେ ଯାହାର ଗର୍ଜ୍ଜନ ବଡ଼ିମା ।
ପବନ ସମାନେ ଯେହୁ ବଡ଼ ବଳବନ୍ତ
ପୃଥ୍ୱୀ ଜିଣିବାକୁ ସେହି ଅଟେ ସାମରଥ ।
ଅଶ୍ୱଥାମାର ପ୍ରତିଜ୍ଞା ନ ସରେ କହନ୍ତେ
ଘୋଟିଲା ସେ ଏକା ରଥେ ନନ୍ଦିଘୋଷ ରଥେ
ଅଶ୍ୱଥାମା ସେ ସାଗରେ ଅଟେ ସେତୁବନ୍ଧ
ନାରାଚ ବର୍ଷାଇ ବେଗେ ଆରମ୍ଭିଲା ଯୁଦ୍ଧ ।
ପୁଣି ପଞ୍ଚଦଶ ବାଣ ପୂରାଇଣ ଦ୍ରୋଣି
ନନ୍ଦିଘୋଷ ଉପରକୁ ବିନ୍ଧିଲାକ ଟାଣି ।
ନାରାଚ ଆସୁ ପାର୍ଥଙ୍କଙ୍କ ପଡ଼ିଗଲା ଦୃଷ୍ଟି
ପାଞ୍ଚଶରେ ସେ ବାଣକୁ ପକାଇଲା କାଟି ।
ପୁଣି ଅଶ୍ୱଥାମା ବାଣ ପଞ୍ଚାଶ ବିନ୍ଧିଲା
ଏକା ଶରେ ପାର୍ଥ ତାହା ଦୂରୁ ନିବାରିଲା ।
କୋପଭରେ ଅଶ୍ୱଥାମା ମାରେ ମୃଦୁଗରେ
ଅର୍ଜ୍ଜୁନ ନିବାରିଲା ତା ତୀକ୍ଷ୍ଣମୁନା ଶରେ ।
ରୁଦ୍ରଶର କାଣ୍ଡେ ଯୋଚି ବିନ୍ଧିଲେ କିରୀଟୀ
ଅଶ୍ୱଥାମା ସେହ୍ନା ଫୁଟି ଦେହେ ଯାଇ କଣ୍ଟି ।
ରୁଧିରେ ଜର୍ଜ୍ଜର ହେଲା ଅଶ୍ୱଥାମା କାୟ
କୋପଭରେ ଗର୍ଜ୍ଜେ ସେହୁ କାଳସର୍ପ ପ୍ରାୟ ।
ପର୍ବତାସ୍ତ୍ର ଗୁଣେ ଯୋଚି ଦ୍ରୋଣୀ ଦେଲେ ମାରି
ନନ୍ଦିଘୋଷ ବିରୋଧରେ ଗର୍ଜି ଗଲେ ଗିରି ।
ଆସନ୍ତେ ପର୍ବତ ଘୋଟି ଦେଖି ସବ୍ୟସାଚୀ
ବଜ୍ରବାଣକୁ ବିନ୍ଧିଲେ ଗୁଣକୁ ଆମଞ୍ଚି ।
ମହାନାଦରେ ଗର୍ଜିଣ ଗଲା ବଜ୍ରଶର
ପର୍ବତକୁ ଚୂର୍ଣ୍ଣକଲା କରି ସେ ପ୍ରହାର ।
ପନ୍ନଗାସ୍ତ୍ର ଅଶ୍ୱଥାମା ପୁନରପି ପେଷି
ଗର୍ଜି ସର୍ପଗଲା ନନ୍ଦିଘୋଷକୁ ଗରାସି ।
ଗର୍ଜ୍ଜନ କରିଣ ବେଗେ ଗଲା ସେ ଭୁଜଙ୍ଗ
ଫଣା ଟେକି ମିଳିଲା ସେ ନନ୍ଦିଘୋଷ ଆଗ ।
ତାକୁ ଦେଖି ଗରୁଡ଼ାସ୍ତ୍ର ବିନ୍ଧନ୍ତେ କିରୀଟୀ
ଅଶ୍ୱଥାମା ଅହିବର ପଳାଇଲା ହଟି ।
ପୁଣି ଦ୍ରୋଣସୁତ ମନେ ବହି ମହାରାଗ
ଅଗ୍ନି ଅସ୍ତ୍ରକୁ କାଢ଼ିଣ ପେଷିଲେ ସେ ବେଗ ।
ସେ ପ୍ରଚଣ୍ଡ ଅଗ୍ନିଶର ଗମିଲା ସତ୍ୱର
ଦେଖାଗଲା ଯେହ୍ନେ ଦଗ୍ଧ କରିବ ସଂସାର
ଅଶ୍ୱଥାମାର ମହିମା ଦେବେ ଅଗୋଚର
ତା ତହୁଁ ପାର୍ଥ ସହସ୍ରବଳି ଧନୁର୍ଦ୍ଧର ।

ବାଲ୍ୟକାଳୁ ଅଶ୍ୱଥାମା ପାର୍ଥ ଦୁଇଜଣ
ସକଳ ଅସ୍ତ୍ର ବିଦ୍ୟାରେ ଅଟନ୍ତି ନିପୁଣ ।
ବେନିଏ ଷୋଡ଼ଶମୂର୍ତ୍ତି ଅଟନ୍ତି ଅଭେଦ
କ୍ଷତ୍ରିବୃତ୍ତି ଆଚରିଣ କରନ୍ତି ସେ ଯୁଦ୍ଧ ।
ପ୍ରଚଣ୍ଡ ଅନଳ ଶର ବିନ୍ଧିଥିଲା ଦ୍ରୋଣି
ଜଳଧର ଶରେ ପାର୍ଥ ନିବାରିଲେ ପୁଣି ।
କୃଷ୍ଣ ଦେଖି ପ୍ରଶଂସନ୍ତି ଧନ୍ୟ ବେନି ରଥୀ
ଏକେ ଏକେ ଏ ପାରନ୍ତି ପୃଥିବୀକି ମନ୍ଥି ।
ଯା ଭାଳି କୃଷ୍ଣ ବୋଇଲେ ଶୁଣ ହେ ବିବସ୍ପି
ଅଶ୍ୱଥାମା ତୁମ୍ଭେ ଦୁହେଁ ଅଟ ସମକକ୍ଷି ।
ଦେଖୁଛି ମୁଁ ତାର ତୋର ହୁଏ ସମଯୁଦ୍ଧ
ଜୟଦ୍ରଥ ନ ହୋଇବ ଆଜି ପ୍ରାଣେ ବଧ ।
କୃଷ୍ଣଙ୍କ ବଚନ ଶୁଣି ସେ ଶ୍ୱେତବାହିନୀ
ରୁଦ୍ର ଅସ୍ତ୍ରକୁ ତୂଣୀରୁ କାଢ଼ି ହସ୍ତେ ଘେନି ।
ଅଶ୍ୱଥାମା ଉପରକୁ କରନ୍ତେ ପ୍ରୟୋଗ
ଭୈରବ ଅସ୍ତ୍ରେ ତା ଦ୍ରୋଣୀ ନିବାରିଲେ ବେଗ
ଜ୍ୱାଳାବଳି ଶର ଏକ ବିନ୍ଧିଲା କିରୀଟୀ
ଅଶ୍ୱଥାମା ଚାରିଅସ୍ତ୍ରେ ପକାଇଲେ କାଟି ।
କୁହୁକବାଣ ବିନ୍ଧିଲେ ଗୁରୁଙ୍କର ସୁତ
ଅନ୍ଧାରମୟ ଦିଶିଲା ଏ ତିନି ଜଗତ ।
ସୂର୍ଯ୍ୟାବର୍ତ୍ତ ଅସ୍ତ୍ର ପାର୍ଥ ଦେଲେ ତହୁଁ ଛାଡ଼ି
ଦିଗ ଉଜ୍ଜ୍ୱଳ ଦିଶିଲା ଗଲାକ କୁହୁଡ଼ି ।
ଶ୍ରୀକୃଷ୍ଣ ବୋଇଲେ ତୁହି ଶୁଣ ଧନଞ୍ଜୟ
ତୋ ଲାଘବ ଯୁଦ୍ଧ ଦେଖି ମୋତେ ଲାଗେ ଭୟ
ଏମନ୍ତ ଯୁଦ୍ଧ କରନ୍ତେ ସୂର୍ଯ୍ୟ ଅସ୍ତ ହେବ
ତୋହର ପ୍ରତିଜ୍ଞା ନିଶ୍ଚେଁ ନିଷ୍ଫଳ ହୋଇବ ।
ଜଣାଯାଏ ଅଗ୍ନିଜାଳି ନାଶ ହେବୁ ତୁହି
ତୋହର ନିଧନେ ବର୍ତ୍ତି ନ ପାରିବି ମୁହିଁ ।
ଜାଣେ ଅଶ୍ୱଥାମା ତୋର ବାଲ୍ୟକାଳ ସଖା
ହେଳାଯୁଦ୍ଧ କରୁ ଆଜି ହୋଇବାରୁ ଦେଖା ।
ସେ ବିନ୍ଧଇ ମହାରାଗେ ଶରମାନ ଯୋଖି
ନିଜେ ମରିବ ବନ୍ଧୁରେ କାହିଁ ଦେଖାଦେଖି ।
ଶ୍ରୀକୃଷ୍ଣ ବଚନ ଶୁଣି ବୀର ସବ୍ୟସାଚୀ
ଦଶ ବିଂଶଶର କାଢ଼ି ବିନ୍ଧିଲେ ଆମଞ୍ଚି ।
ଅଶ୍ୱଥାମାର ଅଭେଦ ସେହ୍ନା ଅଙ୍ଗେ ଥିଲା
ପାର୍ଥ ଅସ୍ତ୍ର ପଡ଼ି ତାହା ଚୂନା ହୋଇଗଲା ।
ପୁଣି ବିଂଶ ତ୍ରିଂଶ ବାଣ ତୀକ୍ଷ୍ଣ ତୀକ୍ଷ୍ଣମୁନା
ଆକର୍ଷି ବିନ୍ଧିଲା ପାର୍ଥ ଦ୍ରୋଣଙ୍କର ସେହ୍ନା ।
ସେ ଅଭେଦ୍ୟ ସେହ୍ନାପରେ ପଡ଼ି ତୁଟିଗଲା
ସେହ୍ନାରେ ମଣି ଯେ ଥିଲା ତାହା ଗୁଣ୍ଡାହେଲା

ଖୁର୍ପବାଣ ଅଶ୍ୱତ୍ଥାମା ବିନ୍ଧନ୍ତେ ସତ୍ୱର
ବାବଲ ଶରେ ଛେଦିଲେ ଧନଞ୍ଜୟ ବୀର ।
କାମ୍ୟକ ପଞ୍ଚବାଣକୁ ଘେନି ଅଶ୍ୱତ୍ଥାମା
ଧନୁରେ ବସାଇ ବେଗେ ବିନ୍ଧିଲା ମହାତ୍ମା ।
ପୁନରପି ପଞ୍ଚବାଣ ଘେନି ବୀରଦ୍ରୋଣି
ଅର୍ଜୁନଙ୍କ ଉପରକୁ ବିନ୍ଧିଲା ସେ ଟାଣି ।
ପୁଣି କୋଡ଼ିଏ ନାରାଚ ବସାଇଣ ବେଗେ
ଚାରି ଅଶ୍ୱଙ୍କୁ ବିନ୍ଧିଲା ଅତିଅନ୍ତ ରାଗେ ।
ତୀକ୍ଷ୍ଣ ପାଞ୍ଚଶର ପୁଣି ଗୁଣରେ ବସାଇ
କପିକେତନକୁ ଦ୍ରୋଣି ବିନ୍ଧିଲା ନିଠାଇ ।
ଗୁରୁପୁତ୍ରର ମହିମା ଶୁଣ ନୃପବର
ନନ୍ଦିଘୋଷକୁ ବିନ୍ଧିଲା ପୁଣି ଲକ୍ଷେ ଶର ।
କୃଷ୍ଣ ସାରଥିକି ପୁଣି ବିନ୍ଧେ ପଞ୍ଚବାଣ
ଘାଏଣ ବଡ଼ ବିରକ୍ତ ହେଲେ ନାରାୟଣ ।
କୃଷ୍ଣର ବିରକ୍ତି ଦେଖି ପାଣ୍ଡୁର ନନ୍ଦନ
ମହାକ୍ରୋଧେ ବିନ୍ଧିଲେ ସେ ଏକଶତ ବାଣ ।
ଅସ୍ତ୍ରବିନ୍ଧି ଅଶ୍ୱତ୍ଥାମା ଚାହେଁ ଚଉକତି
ଅର୍ଜୁନର ଶରଚୟ ପଡ଼ିଲାକ ଧାତି ।
ପ୍ରଥମ ଘାତେ ପଡ଼ିଲେ ରଥ ଚାରି ହୟେ
ଶୂଦ୍ର ସାରଥି ପଡ଼େ ଦ୍ୱିତୀୟ ଶର ଘାଏ ।
ବିଂଶଶର ପଡ଼ନ୍ତେଣ ତା ରଥ ଭାଜିଲା
ବତିଶବାଣ ଦ୍ରୋଣିର ହୃଦରେ ପଡ଼ିଲା ।
ତା ଦୁଇ ଭୁଜେ ପଡ଼ିଲା ପାଞ୍ଚ ପାଞ୍ଚ ଶର
ଷଷ୍ଠ ନାରାଚ ପଡ଼ିଲା ଜାନୁରେ ତାହାର ।
ଦ୍ୱାଦଶ ଶର ପଡ଼ିଲା ଦ୍ରୋଣି ବକ୍ଷସ୍ଥଳେ
ଗଣ୍ଡସ୍ଥଳେ ପଡ଼େ ଷଷ୍ଠ ପାଞ୍ଚଟି କପାଳେ ।
ରୁଧିରରେ ବିଲେପନ ହେଲେ ଦ୍ରୋଣସୂନୁ
ଅସାଷ୍ଟମେ ପଡ଼ିଲେ ସେ ହସ୍ତୁ ଛାଡ଼ି ଧନୁ ।
ସେ ସମୟେ ଅଶ୍ୱତ୍ଥାମା ଅଚେତନ ହେଲା
ମୂଳଚ୍ଛେଦ ତରୁପ୍ରାୟ ଭୂତଳେ ପଡ଼ିଲା ।
ଗୋବିନ୍ଦ ବୋଇଲେ ତୋର କ୍ଷତ୍ରିବୃତ୍ତି ଧନ୍ୟ
କି ଯୋଗେ ତୁ ବିଦ୍ୟା ଶିକ୍ଷା କଲୁ ଅରଜୁନ ।
ପ୍ରହରେକ ମୋହ କଲୁ ବୀର ଅଶ୍ୱତ୍ଥାମା
ଭାରତ ଯୁଦ୍ଧରେ କୀର୍ତ୍ତି ରଖିଲୁ ମହାତ୍ମା ।
ଏବେ ଅଶ୍ୱତ୍ଥାମା ପରେ ଶର କରି ବୃଷ୍ଟି
ତାହାର ମସ୍ତକ ପାର୍ଥ ପକାଅ ତୁ କାଟି ।
ଅନେକ କାଳରୁ ଯୁଦ୍ଧ ନାହିଁ ତୋର ତାର
ଏବେ ପଡ଼ିଲା କରି ସେ ଦୁଃସହ ସମର ।
କୃଷ୍ଣଙ୍କ ବଚନ ଶୁଣି ବୋଲେ ଧନଞ୍ଜୟ
ମୋହ ହୋଇ ପଡ଼ିଅଛି ଦ୍ରୋଣଙ୍କ ତନୟ ।
ଏକାଳେ ମାଇଲେ କ୍ଷତ୍ରିକୁଳେ ଅପଯଶ
ଧର୍ମକୁ ଲଙ୍ଘିଲେ ସର୍ବକାର୍ଯ୍ୟ ହେବ ନାଶ ।
ମୋହ ଗଲା କ୍ଷତ୍ରିକି ମୁଁ ନ ମାରଇ ରଣେ
ଜାଣି ଧର୍ମକୁ ଲଙ୍ଘିବି କିମ୍ପା ଅକାରଣେ ।
ସାରଥି ବିହୀନେ ରଥୀ ପ୍ରାଣ ନ ଘେନଇ
ନ ମାରଇ ଶତ୍ରୁ ରଣେ ଯେ ପିଠି ଦିଅଇ ।
ଶରଣ ରକ୍ଷଣ ବାନା ଉଡ଼ଇ ମୋହର
ଏଥକୁ କଟାଳ ମୋତେ ନ କର ଶ୍ରୀଧର ।
ପଦ୍ମବ୍ୟୂହ ଭିତରକୁ ବାହା ରଥ ମୋର
ଜାଣିଅଛ ତ ଯେବଣ ପ୍ରତିଜ୍ଞା ମୋହର ।
ଅଶ୍ୱତ୍ଥାମା ମୋହ ଦେଖି ଦେବ ଜନାର୍ଦ୍ଦନ
ଆନନ୍ଦରେ ବଜାଇଲେ ଶଙ୍ଖ ପାଞ୍ଚଜନ୍ୟ ।
ପାର୍ଥ ଦେବଦତ୍ତ ଶଙ୍ଖ ବଜାନ୍ତେ ଗହଳ
ଜୟନ୍ତୀ ପୁରରେ ଯାଇ ଶୁଭିଲା ଚହଳ ।
ଭୀମ ନକୁଳ ଆବର ସହଦେବ ରାଇ
ବୋଲନ୍ତି ଯୁଧିଷ୍ଠିଦେବ ବ୍ୟାକୁଳିତ ହୋଇ ।
କୃଷ୍ଣ ଏ ସୂଚନା ଭାଇ କହିଗଲେ ମୋତେ
ଜୟ କଲେ ପାଞ୍ଚଜନ୍ୟ ବାଇବି ତ୍ୱରିତେ ।
ପାଞ୍ଚଜନ୍ୟ ଦେବଦତ୍ତ ଶଙ୍ଖଶବ୍ଦ ହେଲା
ଏହି ଦୁଇ ଶଙ୍ଖ ଶବ୍ଦ କିମ୍ପା ଶୁଣାଗଲା ।
କୃଷ୍ଣଙ୍କର ସଙ୍କେତ ତ ହୋଇଲା ଅନ୍ୟଥା
ଏ କଥା ଭାବି ମନରେ ହୁଏ ବଡ଼ ବ୍ୟଥା ।
ତୃତୀୟ ପ୍ରହର ଆସି ହୋଇଲାଣି ଦିନ
ସମରେ ବିଅର୍ଥ କିବା ହେଲା ଅରଜୁନ ।
ସେ ହେତୁରୁ କଉରବେ କଲେ ଜୟଶବ୍ଦ
ମହାଗୋଳ ଶୁଭିଲାକ ଶଙ୍ଖବାଦ୍ୟ ନାଦ ।
ବଡ଼ ବ୍ୟାକୁଳିତ ହୋଇ ଯୁଧିଷ୍ଠି ବୋଇଲେ
ଆରେ ପାର୍ଥ କୃଷ୍ଣ ତୋତେ କିବା ପରକଲେ ।
କାହିଁ ଗଲୁ ଆରେ ଭାଇ ବୀର ଅରଜୁନ
ଏହା କହି ସାତ୍ୟକି କି କହିଲେ ବଚନ ।
ଚଳ ତୁ ସାତ୍ୟକି ବେଗେ ଶ୍ରୀକୃଷ୍ଣଙ୍କ ପାଶ
ଶୁଭାଶୁଭ ବାର୍ତ୍ତା ତୁହି ବୁଝିକରି ଆସ ।
ଦ୍ୱିଘଡ଼ି ପର୍ଯ୍ୟନ୍ତେ ମୁହିଁ ଚାହିଁଛି ତୋ ପଥ
ଶକଟବ୍ୟୂହ ଭିତରେ ବାହା ତୋର ରଥ ।
ବିଜୟକେତନ ରଥ ଯୁଧିଷ୍ଠିର ଦେଲେ
ଆଜ୍ଞା ଘେନିଣ ସାତ୍ୟକି ରଥେ ବିଜେ କଲେ
ସୁତନୁ ନାମରେ ଥିଲା ସେ ରଥେ ସାରଥି
ତାକୁ ବୋଇଲେ ତୁ ରଥ ଚଳା ଶୀଘ୍ରଗତି ।
ରତ୍ନମଣି ମୁକୁଟାଦି ଅମୂଲ୍ୟ ଭୂଷଣ
ସାତ୍ୟକିକୁ ଯୁଧିଷ୍ଠିର କରିଲେ ମଣ୍ଡନ ।

ତ୍ରିପୁର ଦହନେ ଯେହ୍ନେ ସଦାଶିବ ମୂର୍ତ୍ତି
କ୍ଷତ୍ରୀହୋଇ ମିଳିଲେକ ସାତ୍ୟକିର କତି ।
ଚଳାନ୍ତେ ହୟ ଆକାଶମାର୍ଗେ ରଥ ହୁଏ
ମାତଳିର ପ୍ରାୟେ ରଥ ବେଗେ ସୂତ ବାହେ ।
ବାୟୁବେଗେ ଅଶ୍ୱ ଉଡ଼ିଗଲେ ଧାତିକାରେ
ସେକ୍ଷଣି ହେଲେ ଶକଟ ବ୍ୟୂହର ଦୁଆରେ ।
ଲକ୍ଷେକ ରଥ ଆବର ପାଞ୍ଚଲକ୍ଷ ହସ୍ତୀ
ତିନିକୋଟି ରହୁବର ଦ୍ୱିକୋଟି ପଦାତି ।
ଦୁଇ ଲକ୍ଷ ଯୋଦ୍ଧା ସୈନ୍ୟେ ପାଞ୍ଚକୋଟି ନେଇ
ପ୍ରଥମ ଦୁଆର ଜଗି ଦ୍ରୋଣ ଥିଲେ ରହି ।
ଗୋଟିଏ ରଥ ଦେଖିଣ ପଚାରନ୍ତି ଗୁରୁ
ଏ କାହାର ରଥଗୋଟି ଆସୁଅଛି ଦୂରୁ ।
ଇନ୍ଦ୍ର ଦେବତାର ଏକି କୁବେରଙ୍କ ରଥ
କି ଅବା ଭୀମସେନ କି ଅବା ମନମଥ ।
ଏହା ବିଚାରି ସାତ୍ୟକି ଭେଟି ସମ୍ମୁଖରେ
ଦ୍ରୋଣଙ୍କୁ ଯେ ଶରବୃଷ୍ଟି କଲା ଧାତିକାରେ ।
ଦ୍ରୋଣଙ୍କ ପାଖରେ ଥିଲେ ଯୋଦ୍ଧା ଦୁଇକୋଟି
ଧାତିକାରେ ବେଢ଼ିଲେ ସେ ସାତ୍ୟକି ରଥଟି ।
ନିଦାଘ ବାଣ ଗୋଟିଏ ମାଇଲେ ମାଧବୀ
ପାରିଦଣ୍ଡ ରାଜା ଯୋଦ୍ଧା ହେଲେ ପରାଭବୀ
ଦ୍ରୋଣଙ୍କୁ ପଛ କରିଣ ପାଞ୍ଚସସ୍ର ରଥୀ
ସାତ୍ୟକିକୁ ଓଗାଳିଣ ଶର ସେ ବିନ୍ଧନ୍ତି ।
ଅଗ୍ନିବାଣ ସଦୃଶରେ ପାଞ୍ଚବାଣ ସନ୍ଧି
ବିନ୍ଧିଦ୍ୟନ୍ତେ ସାତ୍ୟକିର ସେହ୍ଲା ଗଲା ଭେଦି
ସେ ଘାତେ ଅତି ରାଗିଣ ଶନିଙ୍କର ବଳା
ଯୁଝନ୍ତେ ଦ୍ରୋଣ ଯୁଝିଲେ ନ କରିଣ ହେଳା ।
ଏକା ସାତ୍ୟକିକୁ ବେଢ଼ି ସର୍ବେ ଯୁଦ୍ଧକଲେ
ସାତ୍ୟକିର ଯୁଦ୍ଧଦେଖି ବହୁ ପ୍ରଶଂସିଲେ ।
ସାଧୁ ସାଧୁ ତୋ ପିଅର ସାଧୁ ତୋର ମାତା
ନିଜେ ଗୁରୁ ପ୍ରଶଂସିଲେ ନମ୍ରକରି ମଥା ।
କୃଷ୍ଣ ପାର୍ଥହୁଁ ପ୍ରତିଜ୍ଞା ତୋର ମହାବଳୀ
ବିଦ୍ୟା ଶିକ୍ଷା ଦେଇଛନ୍ତି ତୋତେ ବନମାଳୀ ।
କୃଷ୍ଣଙ୍କ ପ୍ରସାଦେ ତୁହି ହେଲୁ ମହାଯୋଧୀ
ସମରେ ଅନିର୍ବାର ତୁ ଅଣ ଉପରୋଧୀ ।
କ୍ଷତ୍ରିୟ ଜିଣିବାକୁ ତୁ ଅଟୁ ସାମରଥା
କୃଷ୍ଣନାମ ସୁମରି ତୁ ସମରେ ଶକତା ।
ଏପରି ପ୍ରଶଂସା ସର୍ବେ କରନ୍ତି ମୁଖରେ
ସାତ୍ୟକି ଯୁଦ୍ଧ କରନ୍ତି ପଶି ନିର୍ଭୟରେ ।
ଦ୍ରୋଣ ସେନାପତିଙ୍କୁ ସେ ଜିଣିକରି ଗଲା
ଦ୍ୱିତୀୟ ଦୁଆରେ ଦୁଃଶାସନକୁ ଭେଟିଲା ।

ବହୁସୈନ୍ୟ ଘେନି ତହିଁ ଦୁଃଶାସନ ଥିଲା
ସାତ୍ୟକି ଆସିବା ଦେଖି ପଥ ଓଗାଳିଲା ।
ସାତ୍ୟକି ଭେଟନ୍ତେ ଯାଇ ସେ ଦୁଃଶାସନକୁ
ଅନିର୍ବାରେ ଶର ଯୋଖି ବିନ୍ଧିଲା ତାହାକୁ ।
ତାରପାଶେ ଗଜ ଅଶ୍ୱ ଯୋଦ୍ଧା ଯେତେ ଥିଲେ
ସାତ୍ୟକିର ଶରାଘାତେ ବହୁତ ପଡ଼ିଲେ ।
ସହସ୍ରେ ରଥ ଦୁଇସସ୍ର ଯୋଦ୍ଧା ରଥୀ
ଅୟୁତେକ ଅଶ୍ୱ ପାଞ୍ଚଅର୍ବୁଦ ପଦାତି ।
ଏତେକ ସୈନ୍ୟ ପଡ଼ନ୍ତେ ସାତ୍ୟକିର ବାଣେ
ହାରି ଯୋଦ୍ଧା ହଟିଲେ ନ ରହିଲେକ ଜଣେ ।
ଦୁଃଶାସନ ସାତ୍ୟକିର ଲାଗିଲା ସମର
ପୂର୍ବେ ଯଥା ହେଲା ଯୁଦ୍ଧ ଇନ୍ଦ୍ର ହରିଙ୍କର ।
ସାତ୍ୟକି ବିନ୍ଧିଲା ରାଗେ ବାଣ ଚକ୍ରାବଳି
ଦୁଃଶାସନ ରଥ ଭାଙ୍ଗି ହୋଇଗଲା ଧୂଳି ।
ଦ୍ୱାରଛାଡ଼ି ଆଡ଼ ହୋଇଗଲା ଧାର୍ତ୍ତରାଷ୍ଟ୍ରି
ସାତ୍ୟକି ପଶେ ଭିତରେ କରି ଶରବୃଷ୍ଟି ।
ସୂତନୁ ସାରଥି ରଥ ବାହଇ ତ୍ୱରିତ
ବ୍ୟୂହ ଭେଦିଣ ଚଳଇ ନିର୍ଭୟେ ତା ରଥ ।
ଅସଂଖ୍ୟ ସଇନି ଥିଲେ ତାହାର ଭିତରେ
ବହୁତ ଯୋଦ୍ଧା ପଡ଼ିଲେ ସାତ୍ୟକିର ଶରେ ।
ଜୟ ଜୟ ହୃଷୀକେଶ ଶଙ୍ଖଚକ୍ରପାଣି
ମହୀ ଭାରାଭର ତୁହି ଖଣ୍ଡୁ ଦେବସ୍ୱାମୀ ।
ନିର୍ମଳ ନିରାକାର ତୁ ହେଉ ନାନା ଜନ୍ମ
ଦୁଷ୍ଟଙ୍କୁ ବିନାଶି ବହୁ ଏକ ଏକ ନାମ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳାଦି ତୋ ତହୁଁ ଉତ୍ପତ୍ତି
ତୁହି ସକଳ ଭିଆଣ କରୁ ଜଗପତ୍ତି ।
ନିରାକାର ପୁରୁଷ ତୁ ଦେବ କୃପାସିନ୍ଧୁ
ସର୍ବ ଆତ୍ମାରେ ବିଶ୍ୱାସ ତୁହି ଦୀନବନ୍ଧୁ ।
ଭାରା ନିବାରଣେ ଘେନି ଦେବଙ୍କ ବିନତି
ଦେବକୀର ଗର୍ଭୁ ପ୍ରଭୁ ହେଲ ଉତପତ୍ତି ।
ସମରର କୁତୂହଳ ଦେଖିବା ନିମନ୍ତେ
ସାରଥି ହୋଇଲେ ପ୍ରଭୁ ଅର୍ଜୁନର ରଥେ ।
କୌତୁକେ ନିଧନ ତୁମ୍ଭେ କର ଦୟାମୟ
ତୋ ନାମ ସ୍ମରଣ କଲେ ପାପ ହୋଏ କ୍ଷୟ ।
କଳିଯୁଗ ଚାରିଲକ୍ଷ ବତ୍ରିଶ ହଜାର
ବର୍ଷଯାଏ ନୀଚାଚଳେ ବସତି ତୋହର ।
ଅସଂଖ୍ୟା ମହିମା ତୋର କହୁ ନ ସରଇ
ମାନବ ଜନ୍ମ ମୁଁ ତୋତେ ଗୋଚର ବା କାହିଁ ।
କୁଟୁମ୍ବ ଜଞ୍ଜାଳ ଏଣେ ମାୟାରଜ୍ଜୁ ଫାଶୀ
ନ ବୁଝି ମୋହ ଜଳରେ ଯାଉଅଛି ଭାସି ।

ମହା ମହା ପଣ୍ଡିତଙ୍କୁ ତୋ ଭାବ ଅଜଣା
ନ ପାଇ ତୋ ଅନ୍ତ ସଦା ହେଉଛନ୍ତି ବଣା ।
ତୁହି ସିନା ଜ୍ଞାନଦାତା ସର୍ବ ପ୍ରାଣୀଙ୍କର
ତୋ ଜ୍ଞାନ ଅଦତ୍ତେ ସବୁ ହୁଏ ଅଗୋଚର ।
ଦେଖ ଦେଖ ମାୟାଜଳେ ଯାଉଛନ୍ତି ବୁଡ଼ି
ଲୋଭ ମୋହକୁ ମନରୁ ନ ପାରନ୍ତି ଛାଡ଼ି ।
କେତେକ ତୋର କୃପାରୁ ହୋଇ ଜ୍ଞାନବନ୍ତା
ସଦା ତୁମ୍ଭ ନାମ ଗାଇ ହୋଇଛନ୍ତି ମତ୍ତା ।
ଯମଦଣ୍ଡ ତରିବାକୁ ଯାହାଙ୍କର ଇଚ୍ଛା
ତୁମ୍ଭେ ପ୍ରଭୁ ପୂର୍ଣ୍ଣକର ତାଙ୍କ ମନୋବାଞ୍ଛା ।
ଇହ ପରଲୋକ ତୁମ୍ଭେ ଗତିମୁକ୍ତି ଦାତା
ତୁମ୍ଭ ଛଡ଼ା ଆଉ ନାହିଁ କାର ଏ କ୍ଷମତା ।
ଆହେ ପ୍ରଭୁ ମୋତେ କର ଆପଣଙ୍କ ଭୃତ୍ୟ
ଯଶୋବନ୍ତ ନନ୍ଦନ ମୁଁ ମୂରଖ ଅତ୍ୟନ୍ତ ।
ଶୂଦ୍ରମୁନି ଶାରଳାକୁ ତ୍ୱରିତେ ଉଦ୍ଧର
ଏହି କୃପା କର ପ୍ରଭୁ ଶଙ୍ଖ ଚକ୍ରଧର ।



## ବ୍ୟୂହ ଭେଦକରି ସାତ୍ୟକିର ଯୁଦ୍ଧ

କହନ୍ତି ଅଗସ୍ତି ମୁନି ମହା ବ୍ରହ୍ମବେତ୍ତା
ବୈବସ୍ୱତ ମନୁରାଜା ହୋଇଛନ୍ତି ଶ୍ରୋତା ।
ଯେଉଁ ବ୍ୟୂହ ଭିଆଇଲେ ଦ୍ରୋଣ ମହାରଥୀ
ଶ୍ରୀକୃଷ୍ଣ ବିନା କା ଅଛି ଭେଦିବା ଶକତି ।
ମାନବେ ଅଦୃଷ୍ଟ ଅଗୋଚର ବ୍ୟୂହ ସେହି
ପ୍ରଥମ ଦ୍ୱାରେ ପ୍ରବେଶ ହୋଇଛନ୍ତି ଯାଇ ।
ଦ୍ରୋଣକୁ ଜିଣି ସାତ୍ୟକି ରଥ ବେଗେ ଗଲା
ବ୍ୟୂହ ଭେଦକରି ସୈନ୍ୟ ଭିତରେ ପଶିଲା ।
ସେ ବ୍ୟୂହ ଭେଦନ୍ତେ ଏକା ସାତ୍ୟକି ଯେ ଯୋଧି
କୃଷ୍ଣ ଅନୁଗ୍ରହେ ସ୍ଫୁରେ ତାକୁ ସର୍ବବୁଦ୍ଧି ।
କୌରବ ସଇନି ସର୍ବେ ଅଟନ୍ତି ଯେ ସର୍ପ
ଗରୁଡ଼ ସମ ସାତ୍ୟକି ଭାଙ୍ଗେ ତାଙ୍କ ଦର୍ପ ।
ପାଞ୍ଚ ସହସ୍ର ରାଜାଙ୍କୁ ଯେହି ଏକା ଯୋଧି
ମନ୍ଥନ କଲା ଯେସନେ ମନ୍ଦର ବାରିଧି ।
ସାତ୍ୟକି ବୀର ଯେ ବ୍ୟୂହ ଭେଦି ନ ଜାଣଇ
ନନ୍ଦିଘୋଷ ରଥଗତି ପଥ ଦେଖି ଯାଇ ।
ଦେଖେ ମୃତ ପିଣ୍ଡମାନ ପଡ଼ିଛନ୍ତି ତହିଁ
ରକତ ନଦୀ ଭିତରେ ରଥ ନିଏ ବାହି ।
ଆଶ୍ଚର୍ଯ୍ୟ ହୁଅନ୍ତି ସୈନ୍ୟ ଏକରଥ ଚାହିଁ
ଏ କାହାର ରଥ ବୋଲି ହେଲେ କୁହାକୁହି ।
ଗୋଟିଏ ରଥ ଦେଖିଣ ବେଢ଼ିଲେକ ବଳ
ମାର ମାର ବୋଲି ହେଲା ତହିଁ ମୁଖଗୋଳ ।
ଲକ୍ଷେପୁର କରି ଆସି ବେଢ଼ିଲେକ ରଥୀ
ଯେ ଯାହାର ଅନୁରୂପେ ନାରାଚ ବିନ୍ଧନ୍ତି ।
ଆଧାନ ସନ୍ଧାନ ସର୍ବେ କଲେ ନିରନ୍ତର
ଏକ ଏକ ହୋଇ ସର୍ବେ ମାରନ୍ତି ଅପାର ।
ଏକାକେ ସାତ୍ୟକି ବୀର କରଇ ସମର
ଯେସନେ ସିନ୍ଧୁକୁ ଏକା ମନ୍ଥିଲା ମନ୍ଦର ।
ହସ୍ତର ବ୍ୟଗ୍ର କେ ତାର ଦେଖି ନ ପାରଇ
ନିର୍ଭୟେ ସାତ୍ୟକି ଶର ଅସଂଖ୍ୟ ବିନ୍ଧଇ ।
ନିଦାଘ ବାଣ ପେଷନ୍ତେ ସୈନ୍ୟଅଙ୍ଗ ଫୁଟି
ଶରୀରୁ ରକ୍ତ ବହଇ ଯେହ୍ନେ ହୁଏ ବୃଷ୍ଟି ।
ଅର୍ଜ୍ଜୁନଙ୍କ ସମ ସେହୁ ଅଟେ ମହାଯୋଧୀ
କୃଷ୍ଣଙ୍କ ଦୟାରୁ ତାର ବିଚକ୍ଷଣ ବୁଦ୍ଧି ।
ଏକାକେ ସର୍ବ ବଳଙ୍କୁ ବିମୁଖ କରଇ
ବଳ ଭାଜନ୍ତେ ଦେଖିଲେ କୃପାଚାର୍ଯ୍ୟ ତହିଁ ।
ପଶ୍ଚିମ କୋଶଳୁ ନୃପ ସହସ୍ରେକ ଥିଲେ
ପାଞ୍ଚସସ୍ର ଯୋଦ୍ଧା ଥିଲେ ଆସି ସେ ବେଢ଼ିଲେ
ଶତ ଶତ ନାରାଚ ସେ ପୂରାଇ ଧନୁରେ
ବିନ୍ଧନ୍ତେ ସାତ୍ୟକି ଶର ପେଷିଲେ ସତ୍ୱରେ ।
ବାଣ ପଡ଼ନ୍ତେ ଦେଖିଲେ ଦୂରୁ କୃପାଚାର୍ଯ୍ୟ
କୋପଭରେ ବିନ୍ଧିଲେ ସେ ଖୁରୁପ ନାରାଚ ।
ସାତ୍ୟକି ଶରକୁ କାଟି ଅଇଲା ସେ ମାଡ଼ି
ସାରଥି ପରେ ପଡ଼ନ୍ତେ ସେହି ମୋହେ ପଡ଼ି ।
ମୋହେ ପଡ଼ନ୍ତେ ସାରଥି ସାତ୍ୟକି ନିର୍ଭୟେ
ମହାରାଗେ ଗର୍ଜିଲା ସେ କାଳସର୍ପ ପ୍ରାୟେ ।
କୋପଭରେ ଦଶବାଣ ଘେନି ତୀକ୍ଷ୍ଣ ମୁନା
ବିନ୍ଧନ୍ତେ ଭେଦିଲା ସେହି କୃପଙ୍କର ସେହ୍ନା ।
ଗୋଟିଏ ଶର ପଡ଼ିଲା ତାହାଙ୍କ ନାଭିରେ
ଧନୁ ଛାଡ଼ି କୃପ ମୋହେ ପଡ଼ିଲେ ଭୂମିରେ ।
ଅନ୍ତରୀକ୍ଷେ ରଥ ତହୁଁ ବାହିଲେ ସେ ବେଗେ
ଭେଦିଣ ଶକଟବ୍ୟୂହ ପଶିଲେ ସରାଗେ ।
ରଥ ଗଜ ଅଶ୍ୱ ଆଉ ସଇନି ପଦାତି
ସାତ୍ୟକି ଶରାଘାତରେ ହୋଇଲେ ବିକୋତି
ଯେତେକ ସଇନ୍ୟ ଅଖଚକ ତଳେ ଥିଲେ
ସାତ୍ୟକିକୁ ଦେଖି ଆସି ପଥ ନିରୋଧିଲେ ।
ପାଞ୍ଚସସ୍ର ରଥୀ ସର୍ବେ ହୋଇ ଏକମୁଖ
ଜୁଳୁଜୁଳା ପୋକପ୍ରାୟ ବିନ୍ଧି ଶର ତୀକ୍ଷ୍ଣ ।
ବାଛି ବାଛି ଯେ ଯାହାର ଥିଲା ତୀକ୍ଷ୍ଣ ଶର
ସାତ୍ୟକି ପରେ ସକଳେ କରିଲେ ପ୍ରହାର ।
ଦେବତାଙ୍କୁ ଅଗୋଚର ସାତ୍ୟକି ମହିମା
ଭୟେ ଅସ୍ତ୍ର ନ ଲଙ୍ଘନ୍ତି ତାହାଙ୍କର ସୀମା ।

ଶସ୍ତ୍ରରେ ଶସ୍ତ୍ର ବାଜିଣ ହୁଏ ପରିତାଳ
ଆକାଶେ ଅଦୃଶ୍ୟ ହେଲେ ଦେବ ଦିନକର ।
କତୁରୀ ଶରେ ଅନେକ ଯୋଦ୍ଧା ଶିର କାଟି
ବେନିଖଣ୍ଡ ହୋଇ ସର୍ବେ ପଡ଼ନ୍ତି ଯେ ଲୋଟି ।
ଭାରତ ଯୁଦ୍ଧେ ସାତ୍ୟକି ଅଟନ୍ତି ଶକତା
କ୍ଷତ୍ରିବର ସୁନ୍ଦର ସେ ମହା ବଳବନ୍ତା ।
ଯୁଗାନ୍ତକ କାଳପ୍ରାୟ କୃଷ୍ଣଙ୍କ ସାନୁଜ
ଦେଖି ରଣେ ଭଙ୍ଗଦେଲେ ସର୍ବ ମହାରାଜ ।
ବିକ୍ରମ ସିଂହ ଯେସନେ ରଣରେ ଅଭଙ୍ଗ
ଗଜ ସମାନ କଠିନ ସାତ୍ୟକିର ଅଙ୍ଗ ।
ଅସ୍ତ୍ର ପଡ଼ି ତାହା ଅଙ୍ଗେ ହେଉଛନ୍ତି ଚୂର
ନିର୍ଭୟେ ସେ ବସିଛନ୍ତି ରଥର ଉପର ।
ଲକ୍ଷେକ ରଥ ଆବର ପାଞ୍ଚଲକ୍ଷ ହସ୍ତୀ
ତିନି ଅର୍ବୁଦ ତୁରଙ୍ଗ ଦ୍ୱିକ୍ଷୌଣୀ ପଦାତି ।
ଏତେକ ସୈନ୍ୟ ଘେନିଣ ସୁରସେନ ଚାଟ
ସାତ୍ୟକି ସମ୍ମୁଖେ ମିଳି ଉଗାଳିଲେ ବାଟ ।
ସୂଚିମୁନା ନାରାଚରୁ ଘେନି ପାଞ୍ଚଶତ
ଛେଦିଲେ ସେ ମହାବୀରେ ସାତ୍ୟକିର ରଥ ।
ତ୍ରିଶାଖା ବାଣ ଘେନିଣ ସାତ୍ୟକି ପଞ୍ଚାଶ
ଶଲ୍ୟଙ୍କର ଶରସବୁ କରିଦେଲେ ଧ୍ୱଂସ ।
ବିନ୍ଧିଲେ ଶଲ୍ୟ ଲାଘବ ଅସ୍ତ୍ର ବେଗକରି
କିଞ୍ଚିତ ଶରେ ସାତ୍ୟକି ତା ଦେଲେ ନିବାରି ।
ପୁଣି ସାତ୍ୟକି ମାରିଣ ବଜ୍ରସମ ବାଣ
ଶଲ୍ୟଙ୍କ ଚାରି ଅଶ୍ୱର ଘେନିଲେ ପରାଣ ।
ପୁନଶ୍ଚ ନିର୍ଘାତ ବାଣ ଗୋଟିଏ ବିନ୍ଧିଲେ
ଶଲ୍ୟଙ୍କର ହସ୍ତସ୍ଥିତ ଧନୁକୁ ଛେଦିଲେ ।
ପାଦ ଗତିରେ ଧାଇଁଲେ ରାୟଗୁରୁ ଶଲ୍ୟ
ଖଡ଼ଗଫଳା ଘେନିଣ ଆରମ୍ଭିଲେ ଗୋଳ ।
ଅନ୍ତରୀକ୍ଷ ମାର୍ଗରେ ସେ ବୁଲାଇ କୃପାଣ
ସାତ୍ୟକିର ରଥେନେଇ ପିଟିଲେ ବହନ ।
ସୂତ ବଞ୍ଚାଇଲା ରଥ ନୋହିଲା ଆଘାତ
ସାତ୍ୟକି ପ୍ରଶଂସା କଲା ସୂତକୁ ବହୁତ ।
ପ୍ରଭାତ କାଳେ ଯେସନ ଆଦିତ୍ୟଙ୍କ ତେଜ
ସାତ୍ୟକି ବିନ୍ଧିଲେ ପୁଣି ତେସନ ନାରାଚ ।
ସେ ଅସ୍ତ୍ରେ ବହୁଯୋଦ୍ଧା ପରାଭବ ପାଇ
ବିବସ୍ତ୍ର ହୋଇଣ ତହୁଁ ଯାଆନ୍ତି ପଳାଇ ।
ଭୟ କରିଣ ସେଠାରୁ ଯହୁଁ ଗଲେ ଭାଜି
ମତ୍ତକ୍ଷଣେ ସାତ୍ୟକି ଯେ ଧାଏଁ ଗଳଗାଜି ।
କାଳାନଳ ତେଜ ଜିଣି ସାତ୍ୟକିର ତେଜ
ଭେଟନ୍ତେ ସୈନ୍ୟ ପତଙ୍ଗ ହୁଅନ୍ତି ଦହିର୍ଯ୍ୟ ।

ତା ତେଜେ ଯୋଦ୍ଧାଏ ଧନୁ ଧରିଣ ନ ପାରି
ରଣ ଛାଡ଼ି ସେହିଠାରୁ ଗଲେ ଅପସରି ।
ରଥ ବାହି ଚଳିଯାଏ କ୍ଷତ୍ରିୟ ଉତ୍ତମା
ପଦ୍ମବ୍ୟୂହ ଉଗାଳିଲେ ବୀର ଅଶ୍ୱତ୍ଥାମା ।
ଘୋର ସମର ଦେଖିଣ ମହାରାଗେ ଉଠି
ସେ ବ୍ୟୂହ କରରେ ରହି ଦୃଢ଼କରି ମୁଷ୍ଟି ।
ଧାତିକାରେ ଧନୁରେ ସେ ଚଢ଼ାଇଲେ ଗୁଣ
ଏକାଳେ ସାତ୍ୟକି ଆସେ ରଥରେ ବସିଣ ।
ଗୋଟିଏ ଯୋଦ୍ଧା ଦେଖିଣ ବିଚାରଇ ଦ୍ରୋଣି
ଆଉ ଏକ ପାର୍ଥ କାହୁଁ ଅଇଲାକି ପୁଣି ।
ଏହା ବିଚାରୁ ଦୂରୁ ତା ବୀରମୂର୍ତ୍ତି ଦେଖି
ଅଜଗବ ସମ ଧନୁ ଗୁଣେ ଶର ଯୋଖି ।
ଲୁହା କଙ୍କପକ୍ଷ ଶର ସନ୍ଧି କୋଦଣ୍ଡରେ
ସାତ୍ୟକିର ଉପରକୁ ବିନ୍ଧିଲେ ସତ୍ୱରେ ।
ଦିବ୍ୟଶର ପ୍ରହାରିଣ ଧାମଇ ସାତ୍ୟକି
ରେ ରେ କୌରବା ବୋଲିଣ ଉଚ୍ଚସ୍ୱରେ ଡାକି
ବୋଇଲେ ସବୁଙ୍କୁ ଆଜି କରିବି ବିନାଶ
ମୋ ଶର ଅନଳେ ତୁମ୍ଭେ ସର୍ବେ ଦେବ ଝାସ
ଏହା କହି ପଞ୍ଚତ୍ରିଂଶ ବାଣ ପୂରାଇଣ
ବିନ୍ଧନ୍ତେ ଦ୍ରୋଣି ପାଇଲେ ବହୁତ କଷଣ ।
ଗୁରୁଙ୍କ ନନ୍ଦନ ସେହି କକ୍ଷା ଜଗଜ୍ଜେଠୀ
ରାଗେ ବର୍ଷାଧାର ପ୍ରାୟ କଲେ ଶରବୃଷ୍ଟି ।
କୃଷ୍ଣଙ୍କ ସାନୁଜ ଧାଏଁ ନିର୍ଭୟ ତା ମତି
ଅଶ୍ୱତ୍ଥାମା ନାରାଚକୁ ନାହିଁ ତାର ଭୀତି ।
ସାତ୍ୟକି ଅଶ୍ୱତ୍ଥାମାକୁ ଯୁଦ୍ଧେ ନୋହେ ସରି
କୃଷ୍ଣ ତେଜରୁ ସାତ୍ୟକି ଯାଏ ମାରି ମାରି ।
ପଦ୍ମବ୍ୟୂହକୁ ଭେଦିଣ ପାଣ୍ଡବ ଅର୍ଜ୍ଜୁନ
ସୈନ୍ୟ ସଂହାରି ପଶିଲେ କେଶର ବ୍ୟୂହେଣ
ତହିଁ ଅଶ୍ୱ ଗଜ ରଥ ସଇନ୍ୟ ଚହଳ
ମହାରଣ୍ୟ ପ୍ରାୟେ ଦିଶେ କଉରବ ବଳ ।
ରଥମାନେ ଦିଶନ୍ତି ଯେ ଶାଳବୃକ୍ଷ ପ୍ରାୟେ
ମାତଙ୍ଗମାନେ ଦିଶନ୍ତି ଗିରିବର ପ୍ରାୟେ ।
ଏକଲଖୀ ପାଞ୍ଚଲଖୀ କେକିଝାଲ ଛତା
ରୂପରେ ସକଳେ ଦିଶୁଅଛନ୍ତି ଶୋଭିତା ।
ଗଜ ଓଟ ଅଶ୍ୱ ଯେ ଶାର୍ଦ୍ଦୂଳଜୀବ ପ୍ରାୟେ
ତେସନେକ ପଟାନ୍ତର କୁରୁଥାଟ ହୁଏ ।
ଏତେ ବଳଙ୍କୁ ଘୋଟିଲା ଏକା ଫାଲଗୁନି
ଜାତ ହୋଇଛି କି ତହିଁ କାଳାନଳ ବହ୍ନି ।
ପାର୍ଥ ଅନଳ ଶିଖାକୁ ଶ୍ରୀକୃଷ୍ଣ ପବନ
ବହିଣ କୌରବବଳ କରନ୍ତି ଦହନ ।

କପିକେତନ ଧ୍ୱଜରେ ଅଛି ହନୁମନ୍ତ
ତା ଦୃଷ୍ଟିମାତ୍ରେ ଗଜାଶ୍ୱ ହେଉଛନ୍ତି ହତ ।
ଦୁଃସହ ପ୍ରତିଜ୍ଞା କରେ ପାଣ୍ଡବ ଅର୍ଜ୍ଜୁନ
ନିର୍ଦ୍ଦୟ ଯୁଦ୍ଧ କରଇ ନ ରଖେ ଶରଣ ।
ମହାବାତେ ବୃକ୍ଷୁ ଯେହ୍ନେ ପକ୍ୱଫଳ ଝଡ଼ି
ତଦ୍ରୂପ ସଇନ୍ୟମାନେ ଯାଉଛନ୍ତି ପଡ଼ି ।
ପଡ଼ିବା ଯୋଦ୍ଧାଙ୍କୁ ରକ୍ତକର୍ଦ୍ଦମରେ ଲୋଟି
ଭାସି ଭାସି ଯାଆନ୍ତି ଯେ ହୋଇ ଛାଟିପିଟି ।
ଅନୁକ୍ଷଣେ ବହୁଅଛି ରୁଧିରର ନଦୀ
ଯେଉଁପରି ଅଚଳରୁ ଗଙ୍ଗା ଆସେ ଭେଦି ।
ଗଭୀର ଜଳରେ ଶବ ଭାସେ ମେଳା ମେଳା
ଗଜ ଅଶ୍ୱାଦି ଭାସନ୍ତି ଉଠେ ମଳମଳା ।
ସେ ରକ୍ତନଦୀକୁ ଭେଳା ଅଟେ ନନ୍ଦିଘୋଷ
କୈବର୍ତ୍ତ ହୋଇ ବାହାନ୍ତି ନାବ ପୀତବାସ ।
ଶଙ୍ଖ ଶ୍ୱେତ ଗୋକ୍ଷୀର ଯେ କାମପାଳ ହୟ
ସେ ନଦୀରେ ବିହରନ୍ତି ହଂସଯୂଥ ପ୍ରାୟ ।
ଆହେ ବୁଧଜନେ ମୋର ନ ଘେନିବ ଦୋଷ
ଜନ୍ମେ ଜନ୍ମେ ଏକା ମୁହିଁ କରଇ ଅଭ୍ୟାସ ।
ସତ୍ୟବତୀ ସୁତ ପରାଶର ଯାର ପିତା
ପରମାତ୍ମା ପୁରୁଷ ଯେ ଯୋଗଧାନେ ଜିତା ।
ମହାପ୍ରଳୟେ ରହନ୍ତି ବିଷ୍ଣୁଙ୍କ ଉଦରେ
ମହାଯୋଗେ ସାଧନ୍ତି ସେ ସମସ୍ତ ପ୍ରକାରେ ।
ଅନନ୍ତ ଅବତାର ଯେ ଯୋଗରେ ଦେଖନ୍ତି
ପ୍ରଳୟ ଉତ୍ତାରୁ ପୁଣି ଭାବିଣ ଲେଖନ୍ତି ।
ସର୍ବଜନ ଚିନ୍ତାମଣି ଦ୍ୱିତୀକୃଷ୍ଣ ସେହି
ସେ ମୁନିଙ୍କ ପ୍ରସନ୍ନେ ମୁଁ ଭାରତ ଲେଖଇ ।
ଜନ୍ମେ ଜନ୍ମେ ସେବଇ ମୁଁ ସେ ମୁନିଙ୍କ ପଦେ
ଶୂଦ୍ରମୁନି ଲେଖେଦେବୀ ଶାରଳା ପ୍ରସାଦେ ।

■ ■ ■

## ସାତ୍ୟକି ସହିତ ଭୂରିଶ୍ରବାଙ୍କ ଯୁଦ୍ଧ ଓ ମୃତ୍ୟୁ ଏବଂ ଭୀମଙ୍କର ବ୍ୟୂହଭେଦ

ପୁଣି ରାଜା ପୁଚ୍ଛାକଲେ କହ ତପୋଧନ
ପଦ୍ମବ୍ୟୂହ ଭେଦକରି ପାଣ୍ଡବ ଅର୍ଜ୍ଜୁନ ।
କେଶରବ୍ୟୂହ ମଧ୍ୟରେ ଝସାଇ ପଶିଲେ
ତହିଁ ମଧ୍ୟେ ପଶିକରି କେଉଁ କୃତ୍ୟ କଲେ ।
କହନ୍ତି ଅଗସ୍ତି ମୁନି ହୋଇ ସୁପ୍ରସନ୍ନ
ଯାହା ପଚାରିଲ ରାଜା ମନଦେଇ ଶୁଣ ।
ଦ୍ରୋଣ ଯେଉଁ ପଦ୍ମବ୍ୟୂହ କରିଥିଲେ ତହିଁ
ଶତକୋଟି ପାଖୁଡ଼ା ଯେ ତାହାର ଖଟଇ ।
ପାଖୁଡ଼ାକେ ଅର୍ବୁଦେକ ଯୋଦ୍ଧା ରହିଛନ୍ତି
ଅନୁକ୍ଷଣେ ଧନୁ ଧରି ନାରାଚ ବିନ୍ଧନ୍ତି ।
କେହି ଦଶବିଂଶ ମାରେ ନନ୍ଦିଘୋଷ ପରେ
ଚାରିଆଡୁ ବରଷନ୍ତି ଦିବ୍ୟ ଅସ୍ତ୍ର ବୀରେ ।
କହନ୍ତେ ଭାରତଯୁଦ୍ଧେ ଅସମ୍ଭବ କଥା
ତାହା ଜିଣିବାକୁ ଏକା ଅର୍ଜ୍ଜୁନ ଶକତା ।
ଅପାର ଯୁଦ୍ଧ କରେ ସେ ସମରେ ନିର୍ଭୟ
ପଦ୍ମ ପାଖୁଡ଼ାରେ ଛନ୍ତି ନବସସ୍ର ରାୟ ।
ଅଶୀସସ୍ର ଯୋଦ୍ଧା ସଙ୍ଗେ ଛନ୍ତି ଏହାଙ୍କର
ସର୍ବ ଅଗ୍ରେ ରହିଛନ୍ତି କର୍ଣ୍ଣ ମହାବୀର ।
ଏ ମହୀରେ ଶୁଭେ ଯାର ନାମ ମହାଦାନୀ
କୁଣ୍ଡଳ ମାଗିଲେ ତାକୁ ଦାନ ସସ୍ରଯୋନି ।
ଲଲାଟେ ମୁକୁଟ ଶୋହେ ଶତସୂର୍ଯ୍ୟ ଜ୍ୟୋତି
ଯାର ଭୁଜେ ଶୋଭାପାଏ ବଜ୍ରର ଶକତି ।
ଶସ୍ତ୍ର ଧରି ଶ୍ରୀକୃଷ୍ଣଙ୍କୁ ପୁଚ୍ଛନ୍ତି ଅର୍ଜ୍ଜୁନ
ଏ ଦ୍ୱାର ଅବୋରି ଅଛି ବୀରବର କର୍ଣ୍ଣ ।
ଦୁଃସହ ପ୍ରତିଜ୍ଞା କରି ସୈନ୍ୟଙ୍କୁ ଆବୋରି
ମହାକ୍ରୋଧେ ଯୁଦ୍ଧ କରୁଅଛି ଆଗସରି ।
ଶ୍ରୀକୃଷ୍ଣ ପାଦେ ପ୍ରଣମି କହେ ଫାଲଗୁନି
ଭେଦିବା କିପରି ଅଛି ବେଳ ଦଣ୍ଡ ତିନି ।
ଆହେ ଜନାର୍ଦ୍ଦନ ବାହ ସମ୍ଭାଳି ରଥକୁ
ଅର୍ଦ୍ଧ ନିମିଷକେ ମୁହିଁ ଜିଣିବି କର୍ଣ୍ଣକୁ ।
ବଜ୍ରସମ ବାଣ ତହୁଁ ସକ୍ରୋଧେ ମାଇଲେ
ତାର ଆଘାତେ ବହୁତ ସୈନ୍ୟ ଘୁମାଇଲେ ।
ହାବୋଡ଼ା ଶର ମାରନ୍ତେ ପଡ଼ିଲେକ ଲୋଟି
ସେନା ଚୋପରେ ଭେଦିଣ ରକ୍ତନଦୀ ଉଠି ।
ରଣେ ଅଶକତ ଯହୁଁ ହୋଇଲେ ସଇନି
କର୍ଣ୍ଣ ଓଗାଳିଲେଆସି ସସ୍ର ଯୋଦ୍ଧା ଘେନି ।
ଗିରି ସଦୃଶ ଦିଶନ୍ତି ସେହି ସସ୍ରରଥୀ
ତାଙ୍କ ମଧ୍ୟେ ମେରୁମୟ କର୍ଣ୍ଣ ସେନାପତି ।
ବିଶାଶତେ ବାଣ କର୍ଣ୍ଣ ଗୁଣେ ବସାଇଣ
ବିନ୍ଧିଲାକ ପାର୍ଥ ପରେ ଅନଳ ସମାନ ।
ଆସନ୍ତି ସେ ଶରଚୟ ଆକାଶରୁ ଗର୍ଜି
ପ୍ରବଳ ବତାସେ ଯେହ୍ନେ ତରୁପଡ଼େ ଭାଜି ।
ପ୍ରଳୟ ମେଘ ଯେପରି କରଇ ଶବଦ
ଶୁଣିକରି ଯୋଦ୍ଧାମାନେ ହୋଇଲେ ସ୍ତବଧ ।
ତାହା ଦେଖି ଅରଜୁନ ମହାକ୍ରୋଧ କଲା
ପ୍ରତିବାଣେ କର୍ଣ୍ଣ ଶସ୍ତ୍ର ସକଳ ଛେଦିଲା ।
ଏ ସମୟେ ଆସି ଏକ ମହାତେଜରାଶି
ଅଦ୍ଭୁତେ ରଣକ୍ଷେତ୍ରରେ ଗଲା ଯେ ବିଳସି ।

ସେ ତେଜେ ପାଣ୍ଡବ ବଳ ହୋଇ ଉତ୍ତେଜିତ
କୌରବଙ୍କ ସହ କଲେ ସମର ଅଦ୍ଭୁତ ।
ପୁଣି ପାଞ୍ଚବାଣ ତହୁଁ ଅର୍ଜୁନ ମାଇଲା
ବିଷାଶତ ବାଣେ କର୍ଣ୍ଣ ତାହା ନିବାରିଲା ।
ବାରୁଣୀ ଅସ୍ତ୍ରକୁ ପୁଣି ବିନ୍ଧିଲେ କିରୀଟୀ
ବହୁ ଯୋଦ୍ଧାଙ୍କର ଧନୁ ପକାଇଲେ କାଟି ।
ମୋହନ ଶରକୁ ପୁଣି ବିନ୍ଧିଲେ ଅର୍ଜୁନ
ଶମନ ପ୍ରାୟେ ହରିଲା ସେ ସବୁଙ୍କ ପ୍ରାଣ ।
ସମରେ ସଇନ୍ୟମାନେ ହେଲେ ଅସାଷ୍ଟମ
ଶସ୍ତ୍ର ଧରିବାକୁ କେହି ନୋହିଲେକ କ୍ଷମ ।
ଚେତନା ହଜାଇ ସର୍ବେ ଆବୋରିଲେ ଧରା
ସବୁଙ୍କରି ଶରୀରରୁ ବହେ ରକ୍ତଧାରା ।
ରୁଧିରରେ ସବୁଙ୍କର ଦେହ ଜରଜର
ନାଚନ୍ତି ତହିଁ କବନ୍ଧ ଖେଚର ଭୂଚର ।
ପଡ଼ିଲେ ସକଳ ଯୋଦ୍ଧା କେହି ନାହିଁ ସଖା
ରଣରଙ୍ଗେ ମାତିଛନ୍ତି କର୍ଣ୍ଣବୀର ଏକା ।
ନିର୍ଭୟରେ ଧନୁ ଧରି ରାଧାଙ୍କର ସୁତ
ଶରବୃଷ୍ଟି କରେ ଯହିଁ ଅଛନ୍ତି ଅଚ୍ୟୁତ ।
ପୁଣି କର୍ଣ୍ଣ ଆର୍ଦ୍ରାବଳୀ ଅସ୍ତ୍ରକୁ ପେଷିଲେ
ଏକଇ ନାରାଚେ ପାର୍ଥ ସବୁ ନିବାରିଲେ ।
ପୁଣି ସହସ୍ରେକ ବାଣ ବିନ୍ଧିଲା ରାଧେୟ
ସେ ଶରରେ ପରାଭବ ପାଇ ଧନଞ୍ଜୟ ।
ନିଦାଘ ବାଣ ଯୋଚିଣ ଛାଡ଼ିଦ୍ୟନ୍ତେ ପାର୍ଥ
ସେ ଅସ୍ତ୍ର ପଡ଼ିଲା ଯାଇ ରାଧେୟର ରଥ ।
ହାବୋଡ଼ନ୍ତେ ସେହି ଅସ୍ତ୍ର ରଥ ଗଲା ଭାଜି
ବିରଥୀ ହୋଇଣେ କର୍ଣ୍ଣ ଉଭାରିଣ ମଝି ।
ଅନ୍ୟ ରଥ ବେଗେ ଆଣି ଦେଲାକ ସାରଥି
ଧାଡିକାରେ ତହିଁ ବିଜେ କଲେ କର୍ଣ୍ଣରଥୀ ।
ତେଣେ ଅଶ୍ୱଥାମା ସଙ୍ଗେ ସାତ୍ୟକିର ଯୁଦ୍ଧେ
ଅସଂଖ୍ୟ ସୈନ୍ୟ ପଡ଼ିଲେ ରଣକ୍ଷେତ୍ର ମଧ୍ୟେ ।
ବାରୁଣା ଅସ୍ତ୍ରକୁ ଧରି ଦ୍ରୋଣି ଦ୍ୟନ୍ତେ ପେଷି
କୃପାଣ ଶରେ ସାତ୍ୟକି ତା ଦେଲା ବିନାଶି ।
କୁହୁକ ଅସ୍ତ୍ର ବିନ୍ଧନ୍ତେ ବୀରବର ଦ୍ରୋଣି
ଦିବାତେଜ ନାଶକରି ଘୋଟିଲା ରଜନୀ ।
ସାତ୍ୟକି ବିଚାରେ ଘୋର ଅନ୍ଧକାର ଦେଖି
ପଦ୍ମବ୍ୟୂହେ ପଶିଲା ଯେ ସମର ଉପେକ୍ଷି ।
କୁହୁକ ଫିଟିଯାଆନ୍ତେ ଦ୍ରୋଣଙ୍କର ବଳା
ସାତ୍ୟକିକୁ ନ ଦେଖି ସେ ଭାଳେ କାହିଁଗଲା ।
ପଦ୍ମବ୍ୟୂହ ମଧ୍ୟେ ଯେତେ ଯୋଦ୍ଧା ରହିଥିଲେ
ସାତ୍ୟକିକୁ ଦେଖିଣ ସେ ଆଗେ ଉଗାଳିଲେ ।
କୃଷ୍ଣଙ୍କ ସମାନ ସେହୁ ଅଟେ ଧନୁର୍ଦ୍ଧର
ବିନ୍ଧେ ସେ ଯେଉଁ ନାରାଚ ତାହା ଅନିର୍ବାର ।
ଅସଂଖ୍ୟ ଯୋଦ୍ଧା ତା ଶରେ ପଡ଼ିଲେ ସମରେ
ବାତେ ରମ୍ଭାତରୁ ପ୍ରାୟ ଲୋଟନ୍ତି ମହୀରେ ।
ବହୁ ଯୋଦ୍ଧାଙ୍କୁ ସାତ୍ୟକି ଯାଆନ୍ତେ ବିନାଶି
ରଥେ ବସି ଭୂରିଶ୍ରବା ଓଗାଳିଲେ ଆସି ।
ଶାନ୍ତନୁଙ୍କ ଭାଇ ସେହି ଅଟେ ମହାରଥୀ
ପାଣ୍ଡବ କୌରବଙ୍କର ଅଜା ସେ ଅଟନ୍ତି ।
ଧାଇଁଲା ଭୂରିଶ୍ରବା ସେ ସାତ୍ୟକିକୁ ଦେଖି
ବିନ୍ଧିଲା ତୀକ୍ଷ୍ଣ ନାରାଚ ଉପ୍ରୋଧ ଉପେକ୍ଷି ।
କତୁରୀ ନାରାଚ ଯୋଚି ବିନ୍ଧିଲେ ସତ୍ୱର
ସାତ୍ୟକି ତା ନିବାରିଲା କରି ପ୍ରତିଶର ।
ପୁଣି ପୁଣି ଭୂରିଶ୍ରବା ଶର ବିନ୍ଧେ ରାଗେ
ପ୍ରତି ଅସ୍ତ୍ରରେ ସାତ୍ୟକି ନିବାରଇ ବେଗେ ।
କେହି କାହାକୁ ସମରେ ନୁହନ୍ତି ଯେ ସାନ
ଅସ୍ତ୍ରେ ଅସ୍ତ୍ର ପରିତାଳ କରନ୍ତି ସମାନ ।
ବଜ୍ର ମୁଦୁଗର ଧରି ଭୂରିଶ୍ରବା ବୀର
ସାତ୍ୟକିର ରଥେ ନେଇ ପିଟିଲେ ସତ୍ୱର ।
ମୁଦୁଗରର ଆଘାତେ ରଥ ହେଲା ଗୁଣ୍ଡା
ପାଦଗତିରେ ଧାମଇଁ ଯଦୁବୀର ଷଣ୍ଢା ।
ଏକହସ୍ତରେ ଗୁରୁଜ ଏକହସ୍ତେ ଯାଠି
ଭୂରିଶ୍ରବା ପାଶେ ଗଲା ପଛକୁ ନ ହଟି ।
କରେ ଗୁରୁଜ ବୁଲାଇ ପବନ ବେଗରେ
ଆକର୍ଷି ପ୍ରହାରେ ଭୂରିଶ୍ରବାର ରଥରେ ।
ଯେସନେ ନିର୍ଘାତ ଆସି ପଡ଼ଇ ପର୍ବତେ
ତେସନେ ଶବ୍ଦ ଶୁଭିଲା ଶସ୍ତ୍ର ଯେ ପଡ଼ନ୍ତେ ।
ମହା ଅନଳ ଜିଣିଣ ଉଠିଲା ଝଟତି
ଚାମର ବସ୍ତ୍ର ଥିଲା ଯେ ଜଳିଲାକ ଧାତି ।
ଭୂରିଶ୍ରବାଙ୍କର ରଥ ହୁଅନ୍ତେ ଭସ୍ମମୟ
ରଥୁ କୁଦି ପଡ଼ିଲେ ସେ ମନେ କରି ଭୟ ।
ସମରେ ବିରୋଧୀ ହୋଇ ସେହି ବେନିରଥୀ
ଯେସନେ କେତୁ ମଙ୍ଗଳ ସେରୂପେ ଦିଶନ୍ତି ।
ବେଗେ ଗୋଡ଼ାଇ ସାତ୍ୟକି ପିଟିଲେ ଗୁରୁଜ
ସମ୍ଭାଳିଲେ ପରିଘ ତା ଶାନ୍ତନୁ ସାନୁଜ ।
ପରିଘେ ଗୁରୁଜ ବାଜି ଉଠିଲା ଅନଳ
ନିଶାକର ପରି ଝଳି ଦିଶିଲା ଉଜ୍ଜ୍ୱଳ ।
ପୁଣି ସାତ୍ୟକି ଧରିଣ ନବନିଶି ଯାଠି
ରେ ରେ କାର କରିଣ ସେ ଆକର୍ଷିଣ ଉଠି ।
ଦେଖିକରି ଭୂରିଶ୍ରବା ଧରି ବଜ୍ର କୁନ୍ତ
ପିଟା ପିଟି ହେଲେ ବେନି ଅସ୍ତ୍ର ହେଲା ହତ ।

ପାଦଗତି କରି ପୁଣି ବସୁଦେବ ବଳା
ଶ୍ରୀଭୁଜେ ଧଇଲେ ଏକ ଖଡ୍‌ଗର ଫଳା ।
ଭୂରିଶ୍ରବା ଏକ କରେ ଘେନିଲେ ଆଢ଼ଣ
ଏକ ହସ୍ତରେ ଧାରଣ କରିଲେ କୃପାଣ ।
ଅନ୍ତରୀକ୍ଷ ମାର୍ଗକୁ ସେ ବୁଲାଇଣ ଖଣ୍ଡା
ଭୂରିଶ୍ରବାଙ୍କୁ ପିଟିଲେ ଯଦୁବୀର ଷଣ୍ଡା ।
ଭୂରିଶ୍ରବାଙ୍କ ଜାନୁରେ ସେହି ଖଣ୍ଡା ପଡ଼ି
ତଳେ ପଡ଼ିଗଲା ଖସି ହସ୍ତୁ ଗଲା ଛାଡ଼ି ।
ଅସ୍ତ୍ର ଖସନ୍ତେ ସାତ୍ୟକି ଶୂନ୍ୟହସ୍ତ ହେଲେ
ଧାଇଁଯାଇ ଭୂରିଶ୍ରବା ତା ପାଶେ ହୋଇଲେ ।
ମତ୍ତ କେଶରୀର ସମ ଗର୍ଜି ମହାବଳ
ଆକର୍ଷିଣ ଧଇଲେ ସେ ସାତ୍ୟକିର ବାଳ ।
ବାମେ କେଶ ଦକ୍ଷେ ଖଡ୍‌ଗ ଧରି ଶିର ଝୁଣି
ବୋଲରେ ପାଣ୍ଡବା ତୋତେ ଯମ ଡାକିଲାଣି
ଏ କୁରୁସାଗର ବୋଲି ତୁହି କି ନ ଜାଣୁ
ପ୍ରଭୁ ସେବକକୁ ତୁହି ଏକାପ୍ରାୟେ ମଣୁ ।
ସୁମର ଆରେ ପାଣ୍ଡବା ତୋର ମାତା ପିତା
ସୁମରରେ ମୂର୍ଖମତି ତୋ ଇଷ୍ଟଦେବତା ।
ସୁମର ବୋଲି ତାହାର କେଶଦ୍ୟନ୍ତେ ଟାଣି
ଉଚ୍ଚେ ଡାକଇ ସାତ୍ୟକି ରଖ ଚକ୍ରପାଣି ।
ଊର୍ଦ୍ଧ୍ୱ ମୁଖରେ ସାତ୍ୟକି ଦେଲା ଯହୁଁ ଡାକ
କପିକେତନ ଶୁଣିଲା ତାହାର ଯେ ଡାକ ।
ଧ୍ୱଜରେ ଥାଇ ବୋଇଲା ପବନ ନନ୍ଦନ
ରଣେ ବିରଥ ହୋଇ କେ ସ୍ମରେ ଜନାର୍ଦ୍ଦନ ।
ଅତି ଉଚ୍ଚରେ ସାତ୍ୟକି ଛାଡୁଅଛି ଡାକ
ଶରଣ ପଞ୍ଜର ଆହେ ପାର୍ଥ ମୋତେ ରଖ ।
ୟା ଶୁଣି କୃଷ୍ଣ ବୋଇଲେ ଶୁଣ ସବ୍ୟସାଚି
ରଥ ପଛେ ରହି ପାର୍ଥ ବୋଲି କେ ଡାକୁଛି ।
ନିଙ୍କେ ପୁଣି ଡାକ ଶୁଣି ବୀର ଫାଲଗୁନି
ଗାଣ୍ଡୀବେ ଯୋଚିଲେ ତୀକ୍ଷ୍ଣମୁନା ଶରଘେନି
କେ କାହାକୁ ପରାଭବ ଦେଉଅଛି ଦୂରେ
ତୁ ତାହାର ଭୁଜ କାଟିପକା ସେହିଠାରେ ।
କଷ୍ଟୀ ଲୋକଙ୍କୁ ତୁ ରକ୍ଷାକର ଏହିକ୍ଷଣି
ପ୍ରହାର କରେ ଯେ ତାର ଭୁଜ ପକା ହାଣି ।
ତିଆରି ଏମନ୍ତ ପାର୍ଥ ପେଷିଲେ ନାରାଜ
ଧାତିକାରେ ଛେଦିଲା ତା ଭୂରିଶ୍ରବା ଭୁଜ ।
ଭୂରିର ଦ୍ୱିଭୁଜ ଛିଡ଼ି ଭୂମିରେ ପଡ଼ନ୍ତେ
ସାତ୍ୟକିର କେଶ ଧରିଥିଲା ବାମହସ୍ତେ ।
ତା ବାମ ହସ୍ତରୁ ବାଳ ଛଡ଼ାଇ ପକାଇ
ଭୂରିଶ୍ରବାଙ୍କ ଦକ୍ଷିଣ ହସ୍ତୁ ଖଣ୍ଡା ନେଇ ।

ନିଜ ଦକ୍ଷକରେ ଧରି ଉଞ୍ଚାଇ ସେକ୍ଷଣି
ଭୂରିଶ୍ରବାଙ୍କର ବେକ ପକାଇଲେ ହାଣି ।
କନ୍ଧରୁ ତାହାର ମୁଣ୍ଡ ପଡ଼ିଲାକ ଛିଡ଼ି
ରହିଲା ତା କଳେବର ରକତରେ ବୁଡ଼ି ।
ତହୁଁ ସାତ୍ୟକି ଧାଇଁଲା ସିଂହଗତି ଜିଣି
କେଶର ବ୍ୟୂହ ମଧ୍ୟରେ ଭେଟେ ଚକ୍ରପାଣି ।
ଶ୍ରୀକୃଷ୍ଣ ସନ୍ତୋଷ ହେଲେ ସାତ୍ୟକିକି ଦେଖି
ବୋଇଲେ ଏକା ଅଇଲୁ ଠାକୁର ଉପେକ୍ଷି ।
ପ୍ରଣାମ କରି ସାତ୍ୟକି କୃଷ୍ଣଙ୍କର ପଦେ
ବୋଲେ ଯୁଧିଷ୍ଠି ବିସ୍ମୟ ବହୁ ଶଙ୍ଖ ଶବ୍ଦେ ।
ନ ଶୁଣନ୍ତେ ପାଞ୍ଚଜନ୍ୟ ଶଙ୍ଖର ଶବଦ
ଧର୍ମଙ୍କ ନନ୍ଦନ ତେଣୁ ହୋଇଣ ବିଷାଦ ।
ମୋତେ ଆଜ୍ଞା କରିଲେ ସେ ସନ୍ନିଧିକୁ ରାଇ
କି ଅବା ମୋର ଅର୍ଜ୍ଜୁନ ଜୀବନେ କି ନାହିଁ ।
ଯାଅ ତୁ ସାତ୍ୟକି ବେଗେ ଭେଟ ଫାଲଗୁନି
ଶୁଭେଣ ବାରତା ବାବୁ ଦିଅ ବେଗେ ଆଣି ।
ତେଣୁ ମୁଁ ଗମନ କଲି ଏକ ରଥପରେ
ଅନେକ ନିରୋଧ ମୋତେ ପଡ଼ିଲା ବାଟରେ
ଶ୍ରୀକୃଷ୍ଣ ବୋଇଲେ ସଙ୍ଗେ ନ ଆଣିଣ ସଖା
ଦ୍ରୋଣ ଦ୍ରୋଣିକି ଜିଣିଲୁ କିପରି ତୁ ଏକା ।
ସାତ୍ୟକି ବୋଇଲେ ଦେବ ତୁମ୍ଭର ପ୍ରସାଦେ
ଦ୍ରୋଣ ଦ୍ରୋଣିକି ଜିଣିଲି ମୁହିଁ ଅପ୍ରମାଦେ ।
ଶଲ୍ୟ କୃପ ଆଚାର୍ଯ୍ୟହିଁ ଜିଣିଲି ସବୁନ୍ତି
ଆସନ୍ତେ ମୁଁ ଭୂରିଶ୍ରବା ହେଉଥିଲା ଶାସ୍ତି ।
କେଶ ଧରି ହାଣିବାକୁ ଧଇଲା ଖଡ଼ଗେ
ତୁମ୍ଭର ନାମ ଧରିଣ ଡାକିଲଇଁ ବେଗେ ।
ଅଦଭୂତେ ଏକଶର ଅଇଲା ବେଗରେ ।
ଭୂରିଶ୍ରବା ଭୁଜ କାଟି ଫିଙ୍ଗିଲା ଭୂମିରେ ।
ହସ୍ତ ଯାନ୍ତେ ତା ଖଡ଼ଗେ କାଟିଲି ତା ଶିର
ପ୍ରାଣ ତେଜି ପଡ଼ିଲା ସେ ବୃଦ୍ଧ ମହାବୀର ।
ସାତ୍ୟକି ମୁଖରୁ ଶୁଣି କଥା ଅମଙ୍ଗଳ
ପାର୍ଥ ବେନି ନେତ୍ରୁ ବହିପଡ଼େ ଅଶ୍ରୁଜଳ ।
ଶ୍ରୀକୃଷ୍ଣ ବୋଇଲେ ତୁହି ଶୁଣ ଅରଜୁନ
କେବଣ କାରଣେ କାନ୍ଦୁ ବିକଳ ତୋ ମନ ।
ପାର୍ଥ ବୋଇଲେ ହେ ଦେବ କୁରୁରାଜାସୁତ
ପ୍ରପିତାମହ ଆମ୍ଭର ଅଟେ ମାନ୍ୟଯୁକ୍ତ ।
କି କାରଣେ ଯୁଧିଷ୍ଠିର ଆରମ୍ଭିଲେ ଯୁଦ୍ଧ
ଅଧର୍ମେ ପ୍ରପିତାମହ ଆମ୍ଭେ କଲୁ ବଧ ।
ଏମନ୍ତ କହି କାନ୍ଦନ୍ତେ ଦୁଃଖେ ସବ୍ୟସାଚୀ
ଗୋବିନ୍ଦ ବୋଇଲେ ଏହି ଚିନ୍ତା ନୁହେଁ କିଛି ।

ତୃତୀୟ ପ୍ରହର ଆସି ହୋଇଲାଣି ଦିନ
କଳନା ନୋହିଲା କେତେ ଛନ୍ତି କୁରୁସୈନ୍ୟ ।
ଯଦ୍ୟପି ଜୟଦ୍ରଥେ ନ ପାଉଁ ଲୋଡ଼ି ଆମ୍ଭେ
ଆପେ ନାଶଯିବୁ ଲୋଡୁ କି ବନ୍ଧୁ କୁଟୁମ୍ବେ ।
ଅର୍ଜ୍ଜୁନ ଶୋକ ନିବାରି ଦେବ ନାରାୟଣ
ପାଞ୍ଚଜନ୍ୟ ଶଙ୍ଖଶବ୍ଦ କଲେ ଘନ ଘନ ।
ସେହି ଶଙ୍ଖ ଶବ୍ଦ ଗୋଟି ଗଲା ଧାତିକାରେ
ଜୟବାଣୀ ସମ୍ଭାଇଲେ ଯୁଧିଷ୍ଠି କର୍ଣ୍ଣରେ ।
ସେହି ଜୟ ଶବ୍ଦ ଶୁଣି ଦେବ ଧର୍ମରାୟ
ପାର୍ଥ ଯୁଦ୍ଧକରେ ଭାବି ଆନନ୍ଦ ହୃଦୟ ।
ମାର ମାର ବୋଲି ଶବ୍ଦ କରେ ଶଙ୍ଖବର
ଯୁଧିଷ୍ଠି ହୃଦ ବିକଳ ହୋଇଲା ଅନ୍ତର ।
ଏହା ଶୁଣିଣ ସାନନ୍ଦ ହେଲେ ଚାରିଜଣ
ଧନ୍ୟ ଧନଞ୍ଜୟ ବୋଲି ଭାଷିଲେ ବଚନ ।
ପାର୍ଥ ଏକାଥିଲେ ଯହୁଁ ବେନିରଥୀ ହେଲେ
ପଦ୍ମ କେଶର ବ୍ୟୂହରେ ଧସାଇ ପଶିଲେ ।
ବଢ଼ିଲା ସମର ବେଳୁବେଳ ମହାଘୋର
ଶର ଆତଯାତ କଲେ ଦିଶେ ଅନ୍ଧକାର ।
ବୈଷ୍ଣବ ଅସ୍ତ୍ରକୁ ପାର୍ଥ ଛାଡ଼ିଦ୍ୟନ୍ତେ ଟାଣି
କର୍ଣ୍ଣ ସାରଥିକି ପକାଇଲେ ହାଣି ।
ସୂତହୀନ ହୋଇ କର୍ଣ୍ଣ କରେ ଶରବୃଷ୍ଟି
ଚକ୍ଷୁବନ୍ଦ କରେ ତହୁଁ ଅଗ୍ନିକଣା ଉଠି ।
ଶରଙ୍କର ଯିବାଗତି ବିଦ୍ୟୁତେଜ ଜିଣି
କକଡ଼ା ମାସରେ ଯେହ୍ନେ ବରଷଇ ପାଣି ।
ଶ୍ରୀକରେ କର୍ଣ୍ଣର ପାଞ୍ଚସସ୍ର ବଳଧନୁ
ସହସ୍ରେ ଶର ବିନ୍ଧିଲା ରାଧେୟର ସୂନୁ ।
ଖୂର୍ପ ନାରାଚ ବିନ୍ଧିଲେ ବୀର ଧନଞ୍ଜୟେ
ରାଧେୟ ମୋହ ହୋଇଲା ସେ ଅସ୍ତ୍ରର ଘାଏ
ବିନ୍ଧନ୍ତେ ନାରାଚ ପାର୍ଥ ଲୋଟନ୍ତି ସଇନ୍ୟ
କୁଟନ୍ତି ଫୁଟନ୍ତି ବାଣେ ପାଆନ୍ତି କଷଣ ।
ରଥୀ ଗଜ ପଦାତିଏ ହୋଇ ଖଣ୍ଡ ଖଣ୍ଡ
ନାଚନ୍ତି କବନ୍ଧ ସମ ଛିଡ଼ନ୍ତେଣ ମୁଣ୍ଡ ।
ଆହେ ବୁଧଜନେ ଏହି ଅସଂଖ୍ୟ ସମର
ଅନ୍ତକରି ଲେଖିବାକୁ ଶକ୍ତି ଅଛି କାର ।
ଗିରିଜା ପ୍ରସନ୍ନ ହୋଇ ବାକ୍ୟ ଦ୍ୟନ୍ତି କହି
ତେଣୁ ମୁଁ ପଦଯୋଡ଼ିଣ ଭାରତ ଲେଖଇଁ ।
ସମର କରନ୍ତେ ହେଲା ଚୌଦଘଡ଼ି ବେଳ
କେଶରବ୍ୟୂହେ ଲାଗିଛି ସମର ପ୍ରବଳ ।
ଏଣେ ଧର୍ମ ଯୁଧିଷ୍ଠିର ଭାଳୁଛନ୍ତି ବସି
ଚଉଦ ଘଡ଼ି ବେଳତ ହୋଇଲାଣି ଆସି ।

ଭୀମକୁ ଡାକି ପାଶକୁ ବୋଲନ୍ତି ଏ ଗିର
ଚୌଦଘଡ଼ି ବେଳ ଆସି ହେଲେ ଦିନକର ।
ଅର୍ଜ୍ଜୁନ ବାରତା ମୁହିଁ ନ ପାଇଲି ଭଲେ
ପାର୍ଥ ନାଶଯିବ ଜୟଦ୍ରଥେ ନ ମାଇଲେ ।
ପ୍ରତିଜ୍ଞା ସାଧକ ସେହି ଅଟେ ଜଗଜେଠି
ନ ମାଇଲେ ଆବର କି ଆସିବ ଲେଉଟି ।
ଯାଅ ତୁହି ବୃକୋଦର ଯହିଁ ଅଛି ପାର୍ଥ
ତା ଶୁଭ ବାରତା ଆଣି ଶୁଣାଅ ତ୍ୱରିତ ।
କୃଷ୍ଣଙ୍କ ଛାମୁରେ ତୁହି କହିବୁ ମୋ କଥା
ଅଧର୍ମ ଯୁଦ୍ଧ କରିଣ ମାରୁ ସେ ସର୍ବଥା ।
ବଡ଼ ଅଧର୍ମୀ କୌରବେ ନ କରୁ ଉପ୍ରୋଧ
ଆପଣା ନିଧନେ ଧର୍ମେ ନ ବଳାଅ ସଧ ।
ଶତ୍ରୁ ନିବାରଣେ ପାର୍ଥ କରୁ ଯେ ସଂଗ୍ରାମ
ଜୟଦ୍ରଥେ ବଧି ପଛେ ପାଳୁ ସର୍ବଧର୍ମ ।
ଦିବସରେ ମାରୁ ଅବା ରଜନୀରେ ମାରୁ
ସମରରେ ପାର୍ଥ ଟିକେ ହେଳା ଯେ ନ କରୁ ।
ଏହିପରି କହନ୍ତେଣ ଧର୍ମ ଯୁଧିଷ୍ଠିର
ତାଙ୍କ ବାକ୍ୟ ଶୁଣି ତହୁଁ ଗଲେ ବୃକୋଦର ।
ଜୟସେନ ଲୌହରଥ ସାଜିଦେଲା ଆଣି
ବହୁରତ୍ନ ମଣିରେ ସେ ହୋଇଛି ମଣ୍ଡଣି ।
ରଥ ପତାକାରେ ବହୁମୁକ୍ତା ଅଛି ଖଞ୍ଜି
ଯେହ୍ନେ ଅରୁଣ ଆଦିତ୍ୟ ରଥଯାଏ ସାଜି ।
ବାଛି କୃଷ୍ଣବର୍ଣ୍ଣ ଚାରି ଅଶ୍ୱକୁ ଯୋଚିଲା
ଦୁର୍ଗାଙ୍କୁ ସୁମରି ଭୀମ ରଣେ ବିଜେ କଲା ।
ଜୟସେନ ରଥ ବାହିନିଏ ଶୂନ୍ୟପଥେ
ପବନ ବେଗରେ ଅଶ୍ୱେ ଚାଲନ୍ତି ତ୍ୱରିତେ ।
କଉରବ ଥାଟ ମଧ୍ୟେ ହେଲା ରହୁବର
ମିଳିଲା ମାରୁତି ବ୍ୟୂହ ପ୍ରଥମ ଦୁଆର ।
ଭରଦ୍ୱାଜଙ୍କ ନନ୍ଦନ ସେହିଦ୍ୱାରେ ଥିଲେ
ଭୀମ ଆସିବା ଦେଖିଣ ଆଗେ ଉଗାଳିଲେ ।
ପଞ୍ଚଦଶ ନାରାଚ ସେ ବସାଇ ଧନୁରେ
ଆକର୍ଷି ବିନ୍ଧିଲେ ବେଗେ ଭୀମଙ୍କ ଉପରେ ।
ଶର ଆସିବାର ଦୂରୁ ଦେଖିଣ ମାରୁତି
ଲୋହଦଣ୍ଡ ଧନୁ ଧରି ଶର ବିନ୍ଧେ ଧାତି ।
ପରିଘ ନାରାଚ ପୁଣି ପାବନି ବିନ୍ଧିଲେ
ଦ୍ରୋଣ ଦିବ୍ୟଅସ୍ତ୍ର ପେଷି ତାହା ନିବାରିଲେ ।
ତା ପ୍ରତିଶର ନ ଜାଣେ ବୀର ଭୀମସେନ
ଦ୍ରୋଣଙ୍କର ଶସ୍ତ୍ରେ ଭୀମ ବାଣ ହେଲା ଚୂର୍ଣ୍ଣ ।
ମହୋକ୍ରୋଧେ ସେ ବିଚିତ୍ରବୀର୍ଯ୍ୟଙ୍କର ନାତି
ବେନିକରେ ଗଦା ଘେନି ଧାଇଁଲା ତଡ଼ତି ।

ବୁଲାଇ ସେ କାଳେବର ଗଦା ଭୀମସେନ
ସର୍ବସଂହରଣେ କିବା ଆସୁଛି ଶମନ ।
ରେରେକାର ଶବ୍ଦକରି ଭୀମସେନ ଉଠି
ଦ୍ରୋଣଙ୍କର ରଥେ ନେଇ ଗଦାବର ପିଟି ।
ଗିରିବର ଭାଙ୍ଗିବାକୁ ସମର୍ଥ ଯେ ଭୀମା
ଗଦାପଡ଼ି ଦ୍ରୋଣଙ୍କର ରଥ ହେଲା ଚୂନା ।
ପୁନଃ ପୁନଃ ଗଦା ତୋଳି ପିଟେ ବୀରଭୀମ
ତା ଦେଖି ଘୁଞ୍ଚିଲେ ଦ୍ରୋଣ ଦେଖି ତା ସଂଗ୍ରାମ
ଦ୍ରୋଣ ତୁଲେ ଥିଲେ ପାଞ୍ଚ ଅଇବ୍ରତ ରଥୀ
ଗୋଡ଼ାଇ ପିଟିଲା ଭୀମ କରି ପାଦଗତି ।
ବାସଭଗ୍ନ ପକ୍ଷୀ ଯେହ୍ନେ ପଳାବନ୍ତି ଡରେ
ଭୟେ ଯୋଦ୍ଧାଏ ପଳାନ୍ତି ସେହି ପରକାରେ
ମୁକୁଳା ଷଣ୍ଢ ଯେସନେ ଧାଏଁ ଗଳଗାଜି
ଗଦା ପ୍ରହାରେ ଅନେକ ରଥ ଗଲା ଭାଜି ।
ଏହିପରି ବହୁସୈନ୍ୟ କରିଣ ନିଧନ
ଦ୍ୱିତୀୟ ଦ୍ୱାରେ ପ୍ରବେଶ ହେଲେ ଭୀମସେନ
ସେ ଦ୍ୱାରକୁ ଜଗିଅଛି ବୀର ଦୁଃଶାସନ
ତାର ସଙ୍ଗେ ଛନ୍ତି ତିନିମର୍ଭୁତ ସଇନ୍ୟ ।
ବୃକୋଦର ରଥଧ୍ୱଜ ପତାକାକୁ ଦେଖି
ଦୁଃଶାସନ ଆଡ଼ହେଲା ସେ ଦ୍ୱାର ଉପେକ୍ଷି ।
ସୈନ୍ୟବଳ ପଳାଇଲେ ଏଣେତେଣେ ହୋଇ
ଭିତରେ ପଶିଲେ ଭୀମ ରଥକୁ ଚଳାଇ ।
ଛାଗଳ ପଲରେ ଯେହ୍ନେ ପଶେ ମତ୍ତବ୍ୟାଘ୍ର
ସେପରି ଯାଆନ୍ତି ଭୀମ ରଥ ବାହି ଶୀଘ୍ର ।
ସୈନ୍ୟ ପଳାଇବା ଦେଖି କୃପ ଆଉ ଶଲ୍ୟ
ହସ୍ତୀ ଚଢ଼ି ଓଗାଳିଲେ ଏହି ବେନି ମଲ୍ଲ ।
ମତ୍ତଗଜ ଚଳାଇଣ ଉଠେ ବେନି ଧାପେ
ପୃଥ୍ୱୀ ଦଲ ଦଲ ହେଲା ଭୀମସେନ କୋପେ
ମତ୍ତଗଜ ଦେଖି ଯଥା ସିଂହ କରେ ରାଗ
ସେହିପରି ଭୀମସେନ ଦେଖି ହେଲେ ଆଗ ।
ଲୌହ ଗିରିର ସଦୃଶ ଦିଶେ ଭୀମକାୟ
ନୟନ ବୁଲାଇ ଧାଏଁ କାଳସର୍ପ ପ୍ରାୟ ।
ବାଆନ ବାଆନ ଭାର ଗଦ୍ଧା ବେନି ହାତେ
ଯୋଦ୍ଧା ହୋଇ କେ ରହିବ ତାହାଙ୍କ ସାକ୍ଷାତେ
ବେନି ଗଦା ବୁଲାଇଣ ଆକର୍ଷିଣ ପିଟି
ପ୍ରବଳ ବତାସେ ଯେହ୍ନେ ରମ୍ଭାବନ ଲୋଟି ।
ଯୋଜନେ ଓସାର ହୋଇ ବଢ଼ିଅଛି କାୟ
ରକତରେ ବିଲେପନ ପବନ ତନୟ ।
ଯୋଜନେକ ଆୟତନେ ପଡ଼ିଲେ ନୃପତି
ରୁଧିରରେ ବିଲେପନ ହୋଇଲେ ସବୁନ୍ତି ।

ସୈନ୍ୟଙ୍କର ଭଗ୍ନ ଦେଖି ଶଲ୍ୟ ସାମରଥ
ଭୀମପରେ ଶର ବୃଷ୍ଟି କଲେ ଅପ୍ରମିତ ।
ପୁନଶ୍ଚ ସନ୍ଧାନ କଲେ ତୀକ୍ଷ୍ଣ ତୀକ୍ଷ୍ଣ ବାଣ
ଭୀମ ବାମଅଙ୍ଗେ ପଡ଼ି ହୋଇଯାଏ ଚୂର୍ଣ୍ଣ ।
ବାଣାଘାତେ ଅଗ୍ନି କଣା ଉଠଇ ଝଲକି
ନିର୍ଭୟରେ ବୃକୋଦର ଧାଏଁ ଡାକି ଡାକି ।
ସପତବଳେ ପ୍ରହାର କଲେ ସେ ନାରାଚ
ଭୀମଅଙ୍ଗେ ପଡ଼ି ସର୍ବ ହୋଇଗଲା ଭଙ୍ଗ ।
ପର୍ବତେ ପଥର ପଡ଼ି ଯେହ୍ନେ ହୁଏ ଚୂର୍ଣ୍ଣ
ବୃକୋଦରର ଶରୀର ଅଟେ ସେ ସମାନ ।
ବେଳ ଉଛୁର ଦେଖିଣ ଭୀମସେନ ଉଠି
ଶଲ୍ୟ କୃପଙ୍କୁ ଗଦାଏ ଗଦାଏ ସେ ପିଟି ।
ବଜ୍ରାଘାତେ ହସ୍ତୀ କୁମ୍ଭସ୍ଥଳ ଗଲା ଭାଜି
ମହାମତ୍ତ ନାଗ ଦୁଇ ପଡ଼ିଲେ ଗରଜି ।
ବାହନ ବିହୁନେ ଦୁହେଁ ହେଲେ ପାଦଚାରୀ
ଦ୍ୱାରଛାଡ଼ି ତହୁଁ ଦୁହେଁ ଗଲେ ଅପସରି ।
ଶକଟକୁ ଘେନି ପଦ୍ମ ବ୍ୟୁହରେ ପଶଇ
ନିଶାକାଳେ ତମ ଯେହ୍ନେ ଘୋଟିଣ ଆସଇ ।
ଦେଖିକରି ପଳାବନ୍ତି କଉରବ ଥାଟ
ସୈନ୍ୟଙ୍କର ଗହଳରେ ନ ପାଆନ୍ତି ବାଟ ।
ରଣରଙ୍ଗୀ ଭୀମସେନ ସମରେ ନିର୍ଦ୍ଧୟ
କାଳଦଣ୍ଡପାଣି ଯାକୁ ଦେଖି କରେ ଭୟ ।
ଘେନି ଗଦା ମୁଦୁଗର ଛେଲ ଚକ୍ରକାତି
ଲକ୍ଷେଯୋଦ୍ଧା ଏକମୁଖ ହୋଇଣ ମାରନ୍ତି ।
ପାଣି ପର୍ଶକୁଠାର ଯେ ଖଡ୍ଗ କୁନ୍ତ ମୁନା
ପଡ଼ି ବାମଅଙ୍ଗ ପାତେ ଭୀମ ମହାମନା ।
ବୁଲାଇ ପ୍ରଳୟ ଅଗ୍ନିସମ ଚକ୍ଷୁବେନି
ଗରଜିଣ ଗଦାବର ପିଟଇ ପାବନି ।
ରକତନଦୀ ବହିଲା ଭୀମସେନ ରଣେ
ପୃଥିବୀକୁ କରଦମ କଲା ଏକା ଜଣେ ।
ସୈନ୍ୟ ଗହଳ ଦେଖିଣ ଘେନି ବେନି ହସ୍ତୀ
ଉର୍ଦ୍ଧ୍ୱବାହୁ କରି ବୀର ପିଟିଲା ସବୁନ୍ତି ।
ହସ୍ତୀଆଦି କରି ସର୍ବେ ହୋଇଲେକ ଧୂଳି
ରଣଷଣ୍ଢ ବୋଲି ଏକ ପଡ଼ିଲା ବୋବାଳି ।
ଗଳାରେ କୁଠାର ଦନ୍ତେ ଧରିଣ ତିରଣ
ଶରଣ ରଖ ବୋଲିଣ ଫୁକାରନ୍ତି ସୈନ୍ୟ ।
ଶରଣ ବୋଇଲେ ଭୀମ ଦ୍ୱିଗୁଣ ମାରଇ
ଟିକେ ତାହାର ମନରେ ଦୟା ନ ହୁଅଇ ।
କେତେକ ନିସତ କେତେ ରଣରେ ପଶନ୍ତି
ପଞ୍ଚଦଶ ବିଂଶ ବାଣ ନିଠାଇ ବିନ୍ଧନ୍ତି ।

ବଜ୍ରରଠାରୁ କଠିନ ଯାହାର ଶରୀର
ସେ ଶରକୁ ଭୀମଟିକେ ନ କରେ ଖାତର ।
ଗଦାଧରି ଭୀମସେନ ମାରଇ ଗୋଡ଼ାଇ
ପଳାବନ୍ତି ଯୋଦ୍ଧାମାନେ ନ ପାରନ୍ତି ରହି ।
ପଳାଇଗଲେ ସଇନି ରଣେ ଭଙ୍ଗଦେଇ
ସୈନ୍ୟଙ୍କ ବିମୁଖ ଦେଖି ଅଶ୍ୱଥାମା ଧାଇଁ ।
କଣୟ ନିର୍ମିତ ରଥେ ଆରୋହିଣ ଦ୍ରୋଣି
ବ୍ୟୂହଦ୍ୱାରେ ସେହି ରଥ ଟେକାଇଲା ଆଣି ।



## ଅର୍ଜ୍ଜୁନ କେଶର ବ୍ୟୂହରେ ପ୍ରବେଶ ଓ କର୍ଣ୍ଣଦ୍ୱାରା ଭୀମଙ୍କର ପରାଭବ

ଏଥୁ ଅନ୍ତେ ଶୁଣ ରାଜା ପଦ୍ମବ୍ୟୂହ କଥା
ଅର୍ଜ୍ଜୁନକୁ ଓଗାଳିଲେ କର୍ଣ୍ଣ ମହାରଥା ।
କଣୟ ବଜ୍ରରଥରେ ବିକର୍ଣ୍ଣ ସାରଥି
ଯୋଚିଅଛି ହୟବର ଶାର୍ଦ୍ଦୂଳ ମୂରତି ।
ଦିଶଇ କର୍ଣ୍ଣ ଯେସନେ କନ୍ଦର୍ପ ମୂରତି
କୋଦଣ୍ଡ ସମାନ ଧନୁ କରେ ଧରିଛନ୍ତି ।
ଅସ୍ତକାଳେ ଦେଖାଯାନ୍ତି ଯେହ୍ନେ ଛାୟାପତି
ସେହିପରି ଦେଖାଯାଏ କର୍ଣ୍ଣର ମୂରତି ।
ଶ୍ୟାମ ମେଘରେ ବିଜୁଳି ଯେଉଁପରି ଦିଶି
ଅନୁକ୍ଷଣେ କର୍ଣ୍ଣ ଶର ତେମନ୍ତେ ବରଷି ।
କର୍ଣ୍ଣରୂପ ଦେଖି ପାର୍ଥ ବୋଲନ୍ତି ଶ୍ରୀହରି
ଏହାକୁ ଜିଣିଲେ ବ୍ୟୂହ ଯିବା ଜୟ କରି ।
ରାଧାର ନନ୍ଦନ କର୍ଣ୍ଣ ବଡ଼ ସାମରଥା
ଧାର୍ମିକ ବିବେକ ବୀରପଣେ ଜଗଜ୍ଜିତା ।
ଅର୍ଜ୍ଜୁନକୁ ଶତବାଣ ବିନ୍ଧେ ତୀକ୍ଷ୍ଣ ତୀକ୍ଷ୍ଣ
ଶ୍ରୀକୃଷ୍ଣ ସାରଥିଙ୍କି ସେ ମାରେ ଶତବାଣ ।
ଚାରି ଅଶ୍ୱଙ୍କୁ ବିନ୍ଧିଲା ଚାରିଶତ ଶର
ଶତେବାଣ ବିନ୍ଧେ କପିକେତନ ଉପର ।
ଚାରିଶତ ଶର ଚାରିସ୍ତମ୍ଭ ଉପରକୁ
ପାଞ୍ଚଶତ ବାଣ ବିନ୍ଧେ ରଥର ଧ୍ୱଜକୁ ।
ଅସ୍ତ୍ରବରଷିବା ଦେଖି ବୋଲନ୍ତି ଶ୍ରୀଧର
ଦେଖ ପାର୍ଥ ଧର୍ମ ଲଙ୍ଘି କର୍ଣ୍ଣ ବିନ୍ଧେ ଶର ।
କୃଷ୍ଣଙ୍କ ବଚନ ଶୁଣି କୋପେ ଫାଲଗୁନି
ଅଇବ୍ରତେକ ନାରାଚ ବିନ୍ଧିଲେ ସେକ୍ଷଣି ।
କର୍ଣ୍ଣର ସମସ୍ତ ଶର ପକାଇଲେ ଛେଦି
ଅର୍ଦ୍ଧଚନ୍ଦ୍ର ବାଣ ପାର୍ଥ ପୁନରପି ବିନ୍ଧି ।
ସେ ଅସ୍ତ୍ରର ପ୍ରତିଅସ୍ତ୍ର ରାଧେୟ କରିଲା
ପାର୍ଥକୁ ବିନ୍ଧିବା ଶର ବ୍ୟର୍ଥ କରିଦେଲା ।

ରୋହିତା ଶରକୁ ଯହୁଁ ବିନ୍ଧିଲେ ବିଜୟ
ଧାତିକାରେ ଛେଦିଲା ସେ କର୍ଣ୍ଣ ଚାରିହୟ ।
ଶର ଆଘାତରେ ତହୁଁ ବାଜୀ ପଡ଼ିଗଲେ
ହାବୋଡ଼ାସ୍ତ୍ରେ ପାର୍ଥ କର୍ଣ୍ଣ ରଥକୁ ଛେଦିଲେ ।
ଘାଏ ବିରଥୀ ହୋଇଣ ରାଧାର ନନ୍ଦନ
ଅନ୍ୟ ରଥରେ ବସିଣ ଯୁଝିଲା ବହନ ।
ନିର୍ଘାତ ବାଣକୁ ଯୋଚି ବିନ୍ଧେ ମହାରଥୀ
ସୂଚିମୁନା ବାଣେ ପାର୍ଥ ତାହାକୁ ବିକୋତି ।
ଅର୍ଜ୍ଜୁନ ବିନ୍ଧିଲେ ପୁଣି ମୁଦ୍ଗର ବାଣ
କର୍ଣ୍ଣ ରଥ ଅଶ୍ୱଙ୍କୁ ସେ କରିଦେଲେ ଚୂର୍ଣ୍ଣ ।
ପୁଣି ଏକ ଅନ୍ୟରଥ ଆରୋହିଣ କର୍ଣ୍ଣ
ପାର୍ଥ ସଙ୍ଗତରେ ପୁଣି ଆରମ୍ଭିଲା ରଣ ।
କର୍ଣ୍ଣର ଏ ରୀତି ଦେଖି ବୋଲନ୍ତି ମୋହନ
ତୋ ସଙ୍ଗେ ଯୁଦ୍ଧ କରିବା ନୁହେଁ ପ୍ରୟୋଜନ ।
ପୁଣ ପୁଣ ହାରି ତୁହି ନ ପାଉଛୁ ଲାଜ
ଯାଅ ଅପସରି ତୋର ମୃତ୍ୟୁ ନାହିଁ ଆଜ ।
ପ୍ରତିଜ୍ଞା କରିଛି ପାର୍ଥ ଜୟଦ୍ରଥ ପାଇଁ
ନୋହିଲେ ତୁହି କି ଆଜ ଯାନ୍ତୁ ପ୍ରାଣନେଇ ।
ଏତେ କହି ଜଗନ୍ନାଥ ବାହିଣ ତୁରଙ୍ଗ
କେଶର ବ୍ୟୂହ ଭିତରେ ପଶିଲେକ ବେଗ ।
ଦେଖିଲେ ମାନଗୋବିନ୍ଦ ତୁଳେ ସର୍ବ ଭାଇ
ଅଳମ୍ବୁଷ ଅଳାୟୁଧ ଜଗିଛନ୍ତି ତହିଁ ।
ବୀରବାହୁ ସୁବାହୁ ଯେ କଳିଙ୍ଗ ନୃପତି
ଏମାନେ ମଧ ସେଠାରେ ରହିଣ ଅଛନ୍ତି ।
ଶୁକବ୍ରହ୍ମା ଶୁତବ୍ରହ୍ମା ବେନି ମହାବଳ
ଦରଦସେନ କାଉଁରୀଦେଶ କାମପାଳ ।
ତ୍ରିହୁଡ଼ି ନିହୁଡ଼ି ଦେଶ ଉଡ଼ଙ୍ଗ ଭୂଷଣ୍ଡ
ଅସଂଖ୍ୟ ଯୋଦ୍ଧା ସେଠାରେ ସର୍ବେ ପରଚଣ୍ଡ
ଅଶୀ ମରଭୂତ ଯୋଦ୍ଧା ଦୁର୍ଯ୍ୟୋଧନ ତୁଳେ
ସୁଚୀବ୍ୟୂହକୁ ଏମାନେ ଜଗି ରହିଥିଲେ ।
ଗୋବିନ୍ଦ ବୋଇଲେ ଆହେ ବୀର ଧନଞ୍ଜୟ
ଦେଖ ପୁଣି ରହିଅଛି ଏଥେ କୁରୁରାୟ ।
ଅନେକ ଦେଶର ରାଜାମାନେ ଛନ୍ତି ରହି
ଜୟଦ୍ରଥ କାହିଁ ଅଛି ସେ ତ ଦିଶୁନାହିଁ ।
ପାର୍ଥ ବୋଇଲେ ଏହା ମୁଁ ଜାଣେ ଦାମୋଦର
ଶକଟ ବ୍ୟୂହ ଭେଦିବା ବଡ଼ହିଁ ଦୁସ୍ତର ।
ଏଥିର ଭିତରେ ଦେବ ପଦ୍ମବ୍ୟୂହ କଲା
ଶତପାଖୁଡ଼ା ମଧରେ କେଶର ରଚିଲା ।
କେଶର ଭିତରେ ସୂଚୀବ୍ୟୂହ ଏକ ରଚି
ସୂଚୀ ପଶାମଧ୍ୟେ ଜୟଦ୍ରଥ ଅଛି ଲୁଚି ।

ତାହା ଭେଦିବି ନିଶ୍ଚୟ ଜାଣ ଜଗନ୍ନାଥ
ତୁମ୍ଭ ପ୍ରସାଦେ ପାଇବି ମୁହିଁ ଜୟଦ୍ରଥ ।
କୃଷ୍ଣ ବୋଇଲେ ବାହୁଛି ମୁହିଁ ହୟ ଚାରି
ଉପ୍ରୋଧ ଛାଡ଼ିଣ ଯୁଦ୍ଧକର ଶସ୍ତ୍ର ଧରି ।
ନିଜେ ତୁ ମରିବୁ ଲୋଡୁ ସୋଦର କିପାଇଁ
ରିପୁ ବିନାଶନେ କିମ୍ପା ଦୟାକରୁ ତୁହି ।
କୃଷ୍ଣଙ୍କ ବଚନ ଶୁଣି ତୁଷ୍ଟ ଫାଲଗୁନି
ବିକ୍ରମ ମୂର୍ତ୍ତି ଧରିଣ ଶରହସ୍ତେ ଘେନି ।
ଗାଣ୍ଡୀବ ଧନୁରେ ଯୋଖି ବିନ୍ଧେ ଧନଞ୍ଜୟ
ଝଟକନ୍ତି ସେ ନାରାଚେ ବିଦ୍ୟୁତେଜ ପ୍ରାୟ ।
ଯେଉଁପରି ସର୍ପ ଯାଇ ବିବରେ ପଶଇ
ସେହ୍ନା ଭେଦି ଯୋଦ୍ଧାଙ୍କର ଶରୀରେ ଫୁଟଇ
ସେ ଲାଘବ ଯୁଦ୍ଧେ ବହୁ ଯୋଦ୍ଧାଏ ପଡ଼ିଲେ
ପୁଣି ପୁଣି ଧନଞ୍ଜୟ ଶର ବିନ୍ଧୁଥିଲେ ।
ଦୁର୍ଯ୍ୟୋଧନ ଆଜ୍ଞାଦେଲା ସର୍ବ ଯୋଦ୍ଧା ରାଇ
ଏକାଳେ ଏହାକୁ ଜିଣି ନ ପାରିବ କେହି ।
ଧର୍ମ ଅଧର୍ମ ବୋଲିଣ କିଛି ନ ବିଚାର
ଏକମୁଖ ହୋଇ ତୁମ୍ଭେ ଯାକୁ ଶର ମାର ।
ରାଜାଜ୍ଞା ପାଇ ସକଳ ଯୋଦ୍ଧାଏ ବେଢ଼ିଲେ
ଦ୍ୱାବିଂଶ ଶର ଯୋଖି ଏକଦ୍ରେ ବିନ୍ଧିଲେ ।
ନୀରଧାର ପ୍ରାୟ ବୃଷ୍ଟି ହୋଇବାରୁ ଶର
ଆକାଶେ ଅଦୃଶ୍ୟ ହେଲେ ଦେବ ଦିନକର ।
ଅପର୍ଯ୍ୟାପ୍ତ ଶରବୃଷ୍ଟି ଦେଖି ଧନଞ୍ଜୟ
ଛେଦିଲେ ଲାଘବ ଶରେ ସେହି ଅସ୍ତ୍ର ଚୟ ।
ସାତ୍ୟକିର ଯୁଦ୍ଧକଥା କହି ତ ନ ପାରି
ସଂଗ୍ରାମ ଦେଖି ପ୍ରଶଂସା କରନ୍ତି ମୁରାରି ।
ଏକ ଏକ ନାରାଚକେ ସୈନ୍ୟଅଙ୍ଗ ଫୁଟି
ଗଜ ଅଶ୍ୱ ଯୋଦ୍ଧାମାନେ ପଡ଼ନ୍ତି ଯେ ଲୋଟି
ଯେତେ ଯୋଦ୍ଧା ପ୍ରବେଶନ୍ତି ଆସି ତାର ଆଗେ
ରୋମ ରୋମକେ ନାରାଚ ବିନ୍ଧେ ଅତି ବେଗେ
ଯାହା ନାମ ଧରି ସେହି ବିନ୍ଧେ ଶରଗୋଟି
ସେଠାରୁ ସେ ନ ଚଳିଣ ପଡ଼େ ମହୀଲୋଟି ।
ବହୁତ ସମର କରେ ସେହି ଏକାକୀରେ
ଆବର ଅର୍ଜ୍ଜୁନ ଆସି ପଶିଲା ସମରେ ।
ଏମନ୍ତ ସମୟେ ଯାଇ ବୀରବର ଭୀମା
ପଦ୍ମବ୍ୟୂହ ଭେଦନ୍ତେ ସେ ଘରେ ଅଶ୍ୱତ୍ଥାମା ।
ଇନ୍ଦ୍ରଙ୍କ ସମାନ ମୂର୍ତ୍ତି ଦିଶେ ଗୁରୁସୁତ
ନବନିଶି କୁନ୍ତ ସେହୁ ଧରିଅଛି ହସ୍ତ ।
ଆରେକ ହସ୍ତେ ଗାଣ୍ଡିବ ସମ ଏକ ଧନୁ
ଶନିଶ୍ଚର ରୂପ ପ୍ରାୟ ଦିଶେ ଦ୍ରୋଣସୂନୁ ।

ରୁଦ୍ରଙ୍କ ସମାନ ସେହି ଅଟେ ମହାବଳୀ
ଚ୍ରିଜୀବୀ ବର ମାଗିଲେ ଖଟି ଅଂଶୁମାଳୀ ।
ଅଭେଦ୍ୟ କବଚ ଯାର ଜିଣି ଇନ୍ଦ୍ର ସେହ୍ନା
ଦେବତାଙ୍କୁ ଯୁଦ୍ଧେ ସେହୁ ନ କରେ ଗଣନା ।
ରଣରଙ୍ଗ ମଧ୍ୟରେ ସେ ଅଟଇ ଅଜେୟ
ତେଣୁ ତାକୁ ମୁକୁଟ ନ ବାନ୍ଧେ କୁରୁରାୟ ।
ଭୀମସେନ ଡାକେ ଚାହିଁ ଅଶ୍ୱତ୍ଥାମା ମୁଖ
ଅଶ୍ୱତ୍ଥାମା ବୋଲେ ଭୀମ ହୋଇଲୁ ନିରେଖ
ଦୁଃଶା ଦୁର୍ଯ୍ୟୋଧନ ପରି ମୋତେ ତୁ ନ ବୁଝ
ଭାରତ ସମରେ ଏକା ହୋଇ ତୁ ନ ଯୁଝ ।
ଅଶ୍ୱାଥାମା ବାକ୍ୟେ ଦେହ କମ୍ପାଇଣ ଭୀମ
ଓଷ୍ଠଭିଡ଼ି କୋପେ ଚାହେଁ ହୋଇ ତମ ତମ ।
କାଳଦଣ୍ଡ ସମ ଗଦା ଘେନି ବେନିହସ୍ତେ
ଧାଇଁଣ ପିଟିଲା ଭୀମ ଅଶ୍ୱତ୍ଥାମା ରଥେ ।
ପର୍ବତ ନ ସହେ ଯେଉଁ ଗଦାବର ଘାତ
ଏକା ପ୍ରହାରେ ଭାଜିଲା ଅଶ୍ୱତ୍ଥାମା ରଥ ।
ସେହିକ୍ଷଣି ଅନ୍ୟ ରଥ ଆରୋହିଣ ଦ୍ରୋଣି
ଭୀମସେନ ସାକ୍ଷାତରେ ରଥ କଲା ଆଣି ।
ଦେଖି ବୃକୋଦର ଉଠେ ରାଗେ ଶିରଝୁଣି
କାଳଦଣ୍ଡ ପ୍ରହାରିଲା ଦ୍ରୋଣୀ ରଥେ ପୁଣି ।
ମହାବଳିଷ୍ଠ ପାଣ୍ଡବ ବୀରବର ଷଣ୍ଢ
ଅଶ୍ୱତ୍ଥାମା ରଥ ଗୋଟି କରିଦେଲା ଗୁଣ୍ଡା ।
ପୁନରପି ଗଦାବର ବୁଲାଇ ପିଟିଲା
ଭୀମ ବାମଅଙ୍ଗେ ପଡ଼ି ଗୁଣ୍ଡା ହୋଇଗଲା ।
ତହୁଁ ଗଜେକ ଆରୋହି ଅଶ୍ୱତ୍ଥାମା ରଥୀ
ରାଗେ ଭୀମକୁ ମାଇଲା ଅମୋଘ ଶକତି ।
ସହସ୍ର କିରଣ ସମ ସେ ଅସ୍ତ୍ରର ତେଜ
ତାରଘାଏ ମୋହଗଲା ପବନ ଆତ୍ମଜ ।
ଶକତିର ଘାୟେ ଭୀମ ମହୀରେ ଲୋଟନ୍ତି
ଗଜୁ ଅଶ୍ୱାଥାମା ଓହ୍ଲାଇଣ ହାମ୍ପୋଡ଼ନ୍ତି ।
ଅପାର ପ୍ରତିଜ୍ଞା କରୁଥିଲୁ ଆରେ ଭୀମ
କିଅଂତ ଯୁଦ୍ଧେ ହୋଇଲୁ କିମ୍ପା ଅସାକ୍ଷମ ।
ଖଡ଼ଗକୁ ବୁଲାଇଣ ଅଶ୍ୱାଥାମା ଗର୍ଜି
ମୋହ ତେଜି ଭୀମସେନ ଉଠେ ଗଳଗାଜି ।
ଯେସନେକ ଗିରିବର ପଡ଼ିଣ ଉଠନ୍ତି
ଉଠିଣ ଅଶ୍ୱାଥାମାକୁ ଘୋଟିଲା ମାରୁତି ।
ଧାଇଁ ତହୁଁ ଅଶ୍ୱତ୍ଥାମା ବୁଲାଇଣ ଖଣ୍ଡା
ଭୀମ ଅଙ୍ଗେ ପଡ଼ି ହୋଇଗଲା ମସିଗୁଣ୍ଡା ।
ପୁଣି ଗୁରୁଜ ବୁଲାଇ ଭୀମକୁ ପିଟିଲା
ଭୀମ ବାମ ଅଙ୍ଗେ ପଡ଼ି ତାହା ଗୁଣ୍ଡା ହେଲା ।

ନବନିଶି କୁନ୍ତ ବୁଲାଇଣ ବୀର ଦ୍ରୋଣି
ଭୀମସେନ ଅଙ୍ଗେ ତାହା ପ୍ରହାରିଲା ଆଣି ।
କୁନ୍ତ ପ୍ରହାରନ୍ତେ ତାହା ସହିଣ ମାରୁତି
ହସିଣ ଅଶ୍ୱଥାମାକୁ ବଚନ ବୋଲନ୍ତି ।
ଏକବେଳ ମୋର ଗଦାଘାତ ସହ ଦ୍ରୋଣି
ତେବେ ଜାଣିବା କିପରି ଅଟୁ ବୀରମଣି ।
ଗୁରୁପୁତ୍ର ବୋଲି ତୋର ଅପାର ସହିଲି
ଜ୍ୟେଷ୍ଠଭ୍ରାତ ବୋଲି ଜାଣି ହେଳା ଯୁଦ୍ଧ କଲି
ସମ୍ଭାଳ ଏଥର ତୁମ୍ଭେ ବୋଲି ସେ ଗଦାକୁ
ଧାତିକାରେ ପିଟେ ନେଇ ସେ ଅଶ୍ୱଥାମାକୁ ।
ଉତପାତ କାଳେ ଯେହ୍ନେ ନିର୍ଘାତ ପଡ଼ଇ
ଭୀମସେନ ଗଦାଘାତେ ଦ୍ରୋଣି ମୋହଯାଇ
ତହୁଁ ଭୀମ ବୋଲେ ସୁଖେ ଶୋଇଥାଅ ଭାଇ
ତୁମ୍ଭେ ତ ଗୁରୁଙ୍କ ପୁତ୍ର କିସ କହିବଇଁ
ଅସାଷ୍ଟମେ ଅଶ୍ୱଥାମା ମୋହେଅଛି ପଡ଼ି
ପଦ୍ମବ୍ୟୂହ ପାଶେ ଭୀମ କରେ ଜୟରଡ଼ି ।
ବହୁରଥ ଗଜ ଅଶ୍ୱ ସଇନି ପଡ଼ନ୍ତି
ଅସଂଖ୍ୟ ବଳ ଭେଦିଣ ଭୀମସେନ ଯାନ୍ତି ।
ଶକଟ ବ୍ୟୂହ ଭେଦନ ଭୀମ ନ ଜାଣଇ
ଅର୍ଜୁନ ଗଲା ପଥକୁ ନିରୋପି ଗମଇ ।
ରଥ ଗଜ ଅଶ୍ୱ ବହୁ ପଡ଼ିଣ ଅଛଇ
ଯେ ଅବା ଜୀଇଁଛି ଭୟେ ପଡ଼ିଅଛି ତହିଁ ।
ଯମ ବିଜେ କରିଛି କି କାଳଦଣ୍ଡ ଘେନି
ଭୀମ ରଡ଼ି ଭୀମ ଘାତେ କମ୍ପଇ ମେଦିନୀ ।
ଯଦ୍ୟପି ତହିଁ ଅଛନ୍ତି ମହା ମହା ରଥୀ
ଭୀମସେନ ସଙ୍ଗେ ଯୁଦ୍ଧ କରି ନ ପାରନ୍ତି ।
ପଳାନ୍ତି ସୈନ୍ୟ ନିର୍ଭୟ ରୂପ ତାଙ୍କ ଦେଖି
ରଥ ଗଜ ଅଶ୍ୱଆଦି ସମସ୍ତ ଉପେକ୍ଷି ।
ପୁନଶ୍ଚ ଗଦା ବୁଲାଇ ଚଉକତି କ୍ଷେପି
ଏକଇ ପାଣ୍ଡବ କଉରବ ବଳ ବ୍ୟାପି ।
ପଳାନ୍ତି ସଇନ୍ୟମାନେ ହୋଇ ନିରିମାକ୍ଷୀ
ସୈନ୍ୟ ଭାଜିବାର ନେତ୍ରେ କର୍ଣ୍ଣବୀର ଦେଖି
ଅର୍ଜୁନ ଅପରାଜୟେ ଦ୍ୱାର ଛାଡ଼ିଥିଲା
ଭୀମସେନଙ୍କୁ ଦେଖିଣ ପଥ ନିରୋଧିଲା ।
ନାରାଚ ଗୁଣେ ବସାଇ ଭୀମକୁ ଆକର୍ଷି
ଲୁହାର ପଞ୍ଚ ନାରାଚ ଯହୁଁ ଦେଲା ପେଷି ।
ଆସନ୍ତେଣ ଭୀମସେନ ପାତି ବାମଅଙ୍ଗ
ଲୁହାର ଶର ପଡ଼ିଣ ମୁନ ହେଲା ଭଙ୍ଗ ।
ପୁଣି ତୂଣୀରୁ ବାଛିଣ ତୀକ୍ଷ୍ଣ ତୀକ୍ଷ୍ଣ ବାଣ
ଭୀମକୁ ସନ୍ଧାନ କରି ବିନ୍ଧେ ବୀରକର୍ଣ୍ଣ ।

ଅସଂଖ୍ୟ ଶର ଆସିବା ଦେଖିଣ ମାରୁତି
ତୀକ୍ଷ୍ଣ ନାରାଚ ମାରି ସେ ଛେଦେ ତତ୍‌କ୍ଷଣାତି
ରଣେ ମହାମଲ୍ଲ ସେହି ସମରେ ନ ହଟି
ଆର୍ଦ୍ରାବଳି ଶର ଘେନି ଭୀମ ରଥେ ପିଟି ।
ଭୀମସେନ ପ୍ରହାରିଲା କାଳବର ଗଦା
ସେ ଆଘାତେ କର୍ଣ୍ଣ ରଥ ଭାଙ୍ଗି ହେଲା ପଦା ।
ପୁଣି ଆରେକ ନାରାଚ ପୂରାଇଣ କର୍ଣ୍ଣ
ଭୀମସେନ ଉପରକୁ ବିନ୍ଧିଲେ ବହନ ।
ପାଦଗତି କରି ଭୀମ ମହାରାଗେ ଉଠି
ପୁନଶ୍ଚ କର୍ଣ୍ଣ ରଥରେ ଗଦାବର ପିଟି ।
ଗଦା ପଡ଼ନ୍ତେ କର୍ଣ୍ଣର ରଥ ହେଲା ଚୂନା
ରଣେ ବିହରେ ପାଣ୍ଡବ ବୀରବର ଜେନା ।
ପୁଣି ଆରୋହଣ କରି କର୍ଣ୍ଣ ଏକରଥ
ଭୀମସେନର ଉପରେ ହୋଇ କୋପଚିତ୍ତ ।
ସୂଚୀମୁନା ଅସ୍ତ୍ର କାଢ଼ି ବିନ୍ଧିଲା ସେ ପାଞ୍ଚ
ଭୀମ ଅଙ୍ଗେ ପଡ଼ିଲେ ସେ ନାରାଚ ପ୍ରପଞ୍ଚ ।
ରୋମେ ରୋମେ ଶର ଭୀମ ଦେହେ ଗଲା ଗଳି
ରାଗେ ଗରଜି ଉଠିଲା ଭୀମ ମହାବଳୀ ।
ବୁଲାଇଣ ଗଦାବର ପିଟେ ବୀରଷଣ୍ଡା
କର୍ଣ୍ଣର ରଥ ଭାଜିଣ ହେଲା ମସିଗୁଣ୍ଡା ।
ଶୁଣ ଆହେ ଚଇତନ କର୍ଣ୍ଣ କ୍ଷତ୍ରିପଣ
ଆରେକ ରଥରେ ସେହି ଆରୋହି ତତ୍‌କ୍ଷଣ
ପୁଣି ଖୁର୍ପ ନାରାଚ ସେ ବିନ୍ଧିଲେ ଯେ ଧରି
ପଡ଼ିଲା ଭୀମ ଉପରେ ଗରଜନ କରି ।
ବେନିସୋଦର ସେ ଦୁହେଁ ଅଟନ୍ତି ଅଭେଦ
କ୍ଷତ୍ରିବୃତ୍ତି ରଖିବାରେ ନିରପେକ୍ଷ ଯୁଦ୍ଧ ।
ଦୁହିଁଙ୍କର ସମର ଯେ ଅଟେ ଅକଳନା
ଦୁହେଁ ମହାମଲ୍ଲ କେହି ନୁହନ୍ତି ଯେ ଊଣା ।
ଧାମଇ ସେ ବୃକୋଦର କୋପେ ଗଳଗାଜି
ଗଦାବର ଘାତେ ଗଲା କର୍ଣ୍ଣ ରଥ ଭାଜି ।
ରଣେ ଅପମାନ ପାଇ ରାଧାର ନନ୍ଦନ
ପାଦଗତିରେ ଧାଇଁଲା ଧରି ଧନୁର୍ବାଣ ।
ବାମକରେ କମାଣ ସେ ଧରି କୋପେ ଉଠି
ଭୀମସେନ ଉପରକୁ କଲା ଶରବୃଷ୍ଟି ।
ଭୀମ ଉପରେ ପଡ଼ିଲା ତୀକ୍ଷ୍ଣମୁନା ଶର
ପ୍ରତି ରୋମରୁ ରୁଧିର ବହିଲା ପ୍ରଖର ।
ଶରାଘାତେ ବୃକୋଦର ହେଲା ଅସାଷ୍ଟମ
ତାହା ଦେଖି କର୍ଣ୍ଣବୀର ଧାଏଁ ତମ ତମ ।
ତର୍ଜନ ଗର୍ଜନ କରେ କ୍ଷତ୍ରୀ ମହାମଲ୍ଲ
ବାମକରେ ଧଇଲା ସେ ବୃକୋଦର ବାଳ ।

ଡାହାଣ କରେ କୃପାଣ ଧରି ବୋଲେ କର୍ଣ୍ଣ
ରେ ରେ ପାଣ୍ଡବ ଆଜି ମୁଁ ଘେନିବି ତୋ ପ୍ରାଣ
ଏ କୌରବ ସିନ୍ଧୁବୋଲି ନ ଜାଣୁ କି ଭୀମା
ଏ ସୈନ୍ୟ ସାଗରେ ପଶି ଦେଖାଉ ଗାରିମା ।
ପଶ୍ଚିମ ଦିଗର ରାଜା ପରାୟେ ତୁ ବୁଝୁ
ସେହି ସାହସରେ ଆସି ଏକା ହୋଇ ଯୁଝୁ ।
ବ୍ୟୂହ ଭେଦ ନ ଜାଣି ତୁ ପଶିଲୁ ମରିବୁ
ପାଣ୍ଡବ ଶିରୀ ସମ୍ପଦ ବୁଡ଼ିବରେ ବାବୁ ।
ହର ବ୍ରହ୍ମା ବିଷ୍ଣୁ ଆଜି କେ ରଖିବ ରଖୁ
ତୋ ପ୍ରାଣ ଘେନିବି ମୋର ପ୍ରତିଜ୍ଞା ସେ ଦେଖୁ
ଶମନ ହାତେ ପଡ଼ିଲା ଆଜି ତୋର ବାଳ
ଫେରିଣ ଯିବୁ କି ଆଉ ତୋର ନିଜ ଆଳ ।
ପ୍ରତିଜ୍ଞା କରଇ କର୍ଣ୍ଣ ଭୀମ ବାଳ ଧରି
ଡାହାଣ କରେ ଖଡ଼ଗ ଧରିଣ ଉଭାରି ।
ଭାରତେ ଭାରୋଇମଲ୍ଲ ବୋଲାଉରେ ଭୀମା
ମୋହର ଆଗରେ ଆଜି ସରିଲା ଗାରିମା ।
ରେ ଭୀମ ଗର୍ଜନ କରୁଥିବା ମତ୍ତହସ୍ତୀ
କେଶରୀ ଦେଖିଲେ ତାର ହୁଏ ଯେଉଁ ଗତି ।
ଅନେକ ଆରମ୍ଭ କରୁଥାଇ ଯେ ଶୃଗାଳ
ବ୍ୟାଘ୍ରକୁ ଦେଖିଲେ ତାର କିସ ଆଉ ବଳ ।
ମହା ଗର୍ଜନ ଇନ୍ଦୁର କରଇ ବିବରେ
ଉଭା ହୋଇ ପାରଇ କି ମଞ୍ଜାରୀ ଛାମୁରେ ।
ଫଣା ଟେକି ଗରଜନ କରୁଥାଏ ନାଗ
ରହିଣ ପାରଇ କି ସେ ବୈନତେୟ ଆଗ ।
ନ ଜାଣି ଅଇଲୁ ଯେବେ ପ୍ରାଣ ହରାଇଲୁ
ସଦାଧର୍ମ ପାଳି ଏବେ ଅଧର୍ମରେ ଗଲୁ ।
ଅଭିମନ୍ୟୁ ବଧକଲା ବୀର ଦୁଃଶାସନ
ଜୟଦ୍ରଥେ ବାଧା ଦେଉ ସେ କଲା ନିଧନ ।
ସଦା ମିଥ୍ୟା କଥା କହି ବର୍ତ୍ତନ୍ତି ଯେ ପ୍ରାଣୀ
ମନୁଷ୍ୟକୁ ଭଣ୍ଡିଲେ କି ଧର୍ମ ହୁଏ ଜିଣି ।
ସତ୍ୟବନ୍ତକୁ ଦେଖାଇ ଦେଲୁ ଅସତ୍‌ବାଟ
ସେହି ଦୋଷେ ଆରେ ଭୀମା ହେଲୁ ମୁଣ୍ଡକାଟ
କହୁ କହୁ କୋପେ କର୍ଣ୍ଣ ହୋଇଣ ଅନଳ
ବୋଇଲାରେ ଭୀମା ଆଜି ପୂରିଲା ତୋ କାଳ
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଏ ତିନି ଭୁବନରେ
ଯେତେ ଛନ୍ତି ଦେବ ଆଉ ନାଗଲୋକ ନରେ
ଏ ପଞ୍ଚକଟକେ ରାଜା ମାନଚକ୍ରବର୍ତ୍ତୀ
କୌରବ ମାନୋଦ୍ଧାରଣ ମୁହିଁ କର୍ଣ୍ଣ ରଥୀ ।
ସୁମରରେ ଭୀମା ତୋର ଯେ ଇଷ୍ଟ ଦେବତା
ସୁମରରେ ଭୀମା ତୋର ଯେହୁ ପିତାମାତା ।

କର୍ଣ୍ଣର ଏହି ନିଷ୍ଠୁର ବଚନକୁ ଶୁଣି
ସୁମରଣା କଲେ ଭୀମ କୁନ୍ତୀ ମହାମ୍ରାଣୀ ।
କୁନ୍ତୀ କୁନ୍ତୀ କହନ୍ତେଣ ପବନ ଦୁଲାଳ
ଭୀମ କେଶ ଛାଡ଼ିଦେଲା କର୍ଣ୍ଣ ମହାବଳ ।
ଯାହା ସତ୍ୟ କରାଇଛି ମାତା ମୋତେ ପୂର୍ବେ
ତା କଥା ଲଙ୍ଘନ ମୁହିଁ ନ କରିବି ଏବେ ।
ଜ୍ଞାନ ଥାଉଁ ଥାଉଁ ଏହା ଲଙ୍ଘିବି କେମନ୍ତ
କୃଷ୍ଣ ପାର୍ଥ ଆଗେ ଯାଇ କହ ଏ ବୃତ୍ତାନ୍ତ ।
ଆଉବେଳେ ନ ପଶିବୁ ଏ ଘୋର ସମରେ
ପଶିଲେ ବର୍ତ୍ତି ନ ଯିବୁ ଜାଣିଥା ମନରେ ।
କେଶ ଛାଡ଼ନ୍ତେ ସାଷ୍ଟାମ ବୀର ବୃକୋଦର
ବେନିକରେ ଧଇଲା ସେ ଗଦା କାଳବର ।
ଶତସିଂହ ସୁମରିଣ ଭୀମ ଗଳଗାଜି
କର୍ଣ୍ଣର ମୁଖକୁ ଚାହିଁ କହଇ ଗରଜି ।
ପିତାସମ ମାନି ତୋତେ କରନ୍ତେ ଉପ୍ରୋଧ
ତେଣୁ କି ଜିଣିଲୁ ମୋର ସଙ୍ଗେ କରି ଯୁଦ୍ଧ ।
ପାଞ୍ଚଥର ମୁହିଁ ରଥ ଭାଙ୍ଗିଲି ତୋହର
ପ୍ରାଣ ନ ଘେନିଲି ଯେଣୁ ତୁ ମୋର ସୋଦର ।
କୁନ୍ତୀ ଜ୍ୟେଷ୍ଠପୁତ୍ର ବୋଲି ପାଳିଲି ମୁଁ ଧର୍ମ
ମାତା କ୍ରୋଧେ ଡରି କଲି ହେଳାର ସଂଗ୍ରାମ
ଯେବେ କି ରଣରଙ୍ଗରେ ମୋ ଛାମୁରେ ମିଳ
ଜାଣିବା ତୋ କ୍ଷତ୍ରିବୃତ୍ତି କେତେ ତୋର ବଳ ।
କର୍ଣ୍ଣ ବୋଲେ ଉପେକ୍ଷଲି ଯାହାକୁ ମୁଁ ରଣେ
ତାକୁ କିପାଇଁ ବଧିବି ଅଶାସ୍ତ୍ର ବିଧାନେ ।
କୋପରେ ଗର୍ଜି କହଇ ପବନତନୟ
ରତ୍ନଗିରି ସମ ତାର ଦେଖାଯାଏ କାୟ ।
କାଳାନ୍ତକ ରୂପ ଭୀମସେନର ଯେ ଦେଖି
ରଣେ ପଳାଇଲେ କର୍ଣ୍ଣ ସମର ଉପେକ୍ଷି ।
ସମସ୍ତ ଯୋଦ୍ଧାଏ ପଳାଇଲେ ରଣତେଜି
ଭିତରେ ପଶିଲା ବୃକୋଦର ଗଳଗାଜି ।
କର୍ଣ୍ଣ ରାଗରେ ଅନେକ ଯୋଦ୍ଧାଙ୍କୁ ସଂହାରି
ଭୟେ ଯୋଦ୍ଧାମାନେ ତହୁଁ ଗଲେ ଅପସରି ।
ଭୀମ ରଣରେ ପଡ଼ିଲେ ବହୁତ ଯେ ଥାଟ
ଏକାପାଣ୍ଡବ ଯେ କୁରୁସୈନ୍ୟ କଲା ନଷ୍ଟ ।
କେଶର ବ୍ୟୂହେ ମାଇଲା ଅନେକ ସଇନି
ଶୁଭେ ଯାଇ ଭେଟିଲା ଯେ କୃଷ୍ଣ ଫାଲଗୁନି ।
ଗୋବିନ୍ଦ ବୋଇଲେ ତୁ ହୋ ଶୁଣ ଧନଞ୍ଜୟ
ଭୀମ ଏବେ କରିଲାଣି ସବୁ ସୈନ୍ୟକ୍ଷୟ ।
ଶୁଣିଣ ଅତି ଆଶ୍ଚର୍ଯ୍ୟ ହୋଇଲା କିରୀଟୀ
ବୃକୋଦର ମୂର୍ତ୍ତି ଅଛି ଭୀମର ପ୍ରକଟି ।

ରଥେ ଥାଇ ନମସ୍କାର କରିଣ ବୋଲଇ
ଯୁଧିଷ୍ଠିରଙ୍କୁ କିମ୍ପା ଛାଡ଼ି ଅଇଲ ଗୋସାଇଁ ।
ଭୀମସେନ ବୋଇଲେରେ ଶୁଣ ଫାଲଗୁନି
ଯୁଧିଷ୍ଠି ବିକଳ ବେଳ ଅବସାନ ଘେନି ।
ପ୍ରହରେକ ବେଳଥାଉଁ ପଠାଇଲେ ମୋତେ
ତୁମ୍ଭରି କୁଶଳବାର୍ତ୍ତା ନେବାର ନିମନ୍ତେ ।
ଭୀମାର୍ଜ୍ଜୁନ ସାତ୍ୟକି ଏ ତିନି ମହାବୀର
ବ୍ରହ୍ମା ରୁଦ୍ର ଇନ୍ଦ୍ର ବିଜେ କଲାକ ପ୍ରକାର ।
ରଣରଙ୍ଗେ ପଶିଛନ୍ତି କିବା ଦିଗପାଳେ
କେ ଆନ ଜିଣିବ ତାଙ୍କୁ ସମରର ଗୋଳେ ।
ଗୋବିନ୍ଦ ବୋଇଲେ ଆହେ ଶୁଣ ବୃକୋଦର
ଶକଟ ଭେଦିଣ ପଦ୍ମବ୍ୟୂହର ଭିତର ।
କେଶର ବ୍ୟୂହ ଭିତରେ ସୂଚୀବ୍ୟୂହ ରଚି
ସେ ବ୍ୟୂହ ମଧରେ ଜୟଦ୍ରଥ ଲୁଚିଅଛି ।
ଅସଂଖ୍ୟ ଅଗୋଚର ଏ ଦୁର୍ଲ୍ଲଭ ଚରିତ
ଏ ବ୍ୟୂହ ଭେଦନେ ଏକା ତୁହି ସାମରଥ ।
ଭୀମ ବୋଲେ ତୁମ୍ଭେ ଦେବ ପ୍ରଳୟାନ୍ତକର
ତୋତେ କେଉଁ କଥା ଦେବ ଅଛି ଅଗୋଚର
ସୃଷ୍ଟି ସ୍ଥିତି ଯେ ପ୍ରଳୟ ରଚନା ତୋହର
ଆଦି ମଧ ଅନ୍ତ ତୁହି ଜାଣୁ ଦେବେଶ୍ୱର ।
ଏକା ତୁ ସକଳ କରୁ ତୋ ତହୁଁ କେ ନାହିଁ
ଜଳ ସ୍ଥଳ ପାତାଳରେ ଦେଖିବାକୁ କାହିଁ ।
ଏ ସଂସାର ଅଟଇ ଯେ ମାୟା ଜଳ ସିନ୍ଧୁ
ଏଥୁ ତାରିବାକୁ ଦେବ ତୁହି ଆମ୍ଭ ବନ୍ଧୁ ।
ବ୍ରହ୍ମା କ୍ଷତ୍ରୀ ବୈଶ୍ୟ ଶୂଦ୍ର ଜାତି ଆଦିକରି
ଦୁଃସହ ସଙ୍କଟୁ ତାରିବାକୁ ଯେ କାଣ୍ଡାରୀ ।
ମନ ବଚନ କର୍ତ୍ତବ୍ୟେ ଭାବିଲି ମୁଁ ଯାହା
ପ୍ରଳୟାନ୍ତକ ଶ୍ରୀକୃଷ୍ଣ ମୋତେ ହୁଅ ସାହା ।
ସମୟେ ସମୟେ ହୃଦଗତେ ଦୁଃଖୀପାଇଁ
ମହୀଭାରା ଧ୍ୱଂସ ରାମକୃଷ୍ଣ ବେନିଭାଇ ।
ସମସ୍ତଙ୍କୁ ଦିଅ ଧର୍ମ ଅର୍ଥ କାମ ମୋକ୍ଷ
କାଳଦଣ୍ଡ ନାଶକରୁ ତୁହି ଯେ ପ୍ରତ୍ୟକ୍ଷ ।
ଜ୍ଞାନେ ଅଜ୍ଞାନେ ବଚନେ କର୍ତ୍ତବ୍ୟେ ଯେ ଚିତ୍ତେ
ହୃଦଗତେ ଭାବଇ ମୁଁ ଏକା ଜଗନ୍ନାଥେ ।
ରାଗ ମୋହ ଅହଙ୍କାର ହିଂସା ଅପବାଦୁଁ
ଏଥିରୁ ତରିବି ନାଥ ତୋହରି ପ୍ରସାଦୁଁ ।
ନୃତ୍ୟ ଗୀତେ କିଏ ତୋର ରଞ୍ଜିପାରେ ମନ
ହୃଦଗତେ ଧରିଛି ତୋ ଶଙ୍ଖ ଚକ୍ର ଚିହ୍ନ ।
ମହାଭାରତ ଚରିତ ଇକ୍ଷୁଦଣ୍ଡ ମଧେ
ମୁହିଁ ବିକାଶ କରିଲି ଏ ଭାରତ ଯୁଦ୍ଧେ ।
ତୁଳସାର ବଲ୍ଲଭ ଯେ କକ୍ଷା ଜଗନ୍ନେଠି
ଶୂଦ୍ରମୁନି ଶାରଳା ଯେ ମହୀପାଦେ ଲୋଟି ।
ଜୟ ମାତ ସରସ୍ୱତୀ ବୀଣାଜିଣା ବାଣୀ
ଜୟମାତ ସରସ୍ୱତୀ ବିଷ୍ଣୁର ଘରଣୀ ।
ତୋହର ବୀଣା ଶୁଣିଣ ବିଷ୍ଣୁ ମୋହ ହୋଇ
ସବୁବେଳେ ତୋତେ ପାଶେ ରଖିଥାନ୍ତି ସେହି
ଏହାକୁ ଯେ ପଢ଼େ ଶୁଣେ ଧାର୍ମିକ ସେ ଜନ
ଅଇଶ୍ୱର୍ଯ୍ୟ ପୁତ୍ର ପୁଣି କଲ୍ୟାଣବର୍ଦ୍ଧନ ।
ସକଳ ଦୋଷ ମୋହର ନ ଘେନିବ ଚିତ୍ତେ
ବ୍ୟସ୍ତ ହୋଇବ ମାନସ ଗହନ ଲେଖନ୍ତେ ।
ତେଣୁକରି ଲେଖିଲି ମୁଁ ଠିକ ଠିକ କରି
ସିଦ୍ଧ ଶାରଳା ପ୍ରସାଦେ ଭାରତ ବିଚାରି ।
ବିସ୍ତାରିଣ କହିବାକୁ କିସ ମୋ ଶକତି
ଗୃହୀ ହୋଇ ଚଳୁଅଛି ଘେନି ପୁତ୍ର ପୌତ୍ରୀ ।
ଯାହା ଇଚ୍ଛା ଦେଉଛନ୍ତି ଅନ୍ନପୂର୍ଣ୍ଣା ମାତ
ହେ ବୁଧଜନେ ମୁଁ ମୂର୍ଖ ପୁଣି ଅପଣ୍ଡିତ ।
କୁସ୍ଥାନବାସୀ ଅଟଇ ମୂର୍ଖବଂଶେ ଜାତ
ଜ୍ଞାନୀଜନଙ୍କ ସଙ୍ଗରେ ନାହିଁ ମୋ ସଙ୍ଗତ ।
ଗ୍ରାମର ପାଠଶାଳାରେ ପଢ଼ିନାହିଁ ଭଲେ
ନିକଟେ ଶାସନେ ନାହିଁ ପୌରାଣିକ ତୁଲେ ।
ଝଙ୍କଡ଼ ନିବାସୀ ଚଣ୍ଡୀ ଶ୍ରୀ ଶାରଳା ସେବି
ତାହାଙ୍କ ପ୍ରସନ୍ନେ ମୁହିଁ ବୋଲାଉଛି କବି ।
କରିନାହିଁ ବହୁସେବା ତାହାଙ୍କ ପାଦରେ
ଅଦଭୂତେ ଆଜ୍ଞାଦେଲେ ମୋତେ ସ୍ୱପନରେ ।
ମୋହର ହୃଦ ମଧରେ ବସି ମହାମାୟୀ
ସକଳ ପୁରାଣମାନ ଦେଉଛନ୍ତି କହି ।
ବିଷ୍ଣୁ ପୁରାଣ ମାର୍କଣ୍ଡ ପୁରାଣାଦି କରି
ସର୍ବ ପୁରାଣେ କହିଲେ ସେ ମା ଶାକମ୍ଭରୀ ।
ତାଙ୍କର ଆଜ୍ଞାରେ ମୁହିଁ ସମସ୍ତ ଲେଖିଲି
ଏତେ ପୁରାଣକୁ ମୁହିଁ ପ୍ରକାଶ କରିଲି ।
ଶ୍ରୀଚଣ୍ଡୀ ଶାରଳାଙ୍କର ଭୃତ୍ୟର ମୁଁ ଭୃତ୍ୟ
ଶାରଳା ଦାସ କହଇ ଭାରତ ଚରିତ ।

■ ■ ■

## ଜୟଦ୍ରଥ ବଧ

ପୁଣି ରାଜା ଅଗସ୍ତିଙ୍କ ପାଦତଳେ ପଡ଼ି
ପୁଚ୍ଛାକଲେ ଉଭାହୋଇ ବେନିକର ଯୋଡ଼ି ।
କହ ମୁନି ତେଣେ ପାର୍ଥ କଲେ କେଉଁ କୃତ୍ୟ
ଏହା ଶୁଣିଲେ ମୋହର ତୋଷ ହେବ ଚିତ୍ତ ।
କହିଲେ ଅଗସ୍ତି ମୁନି ଶୁଣ ହେ ରାଜନ
କେଶର ବ୍ୟୂହେ ପ୍ରବେଶ ବାସବ ନନ୍ଦନ ।

ସେ କେଶରବ୍ୟୂହେ ଯେତେ ରାଜାମାନେ ଥିଲେ
ନାନା ଅସ୍ତ୍ର ବିନ୍ଧି ପାର୍ଥ ପଥ ନିରୋଧିଲେ ।
ବେଲାଳ ଦେଶର ରାଜା କାଶୀ କଉଶିକ
ମହୋଦର ଭୂପାଳ ଯେ ମରୁ ବର୍ଣ୍ଣିନିକ ।
ବରଦସେନ ମଦନସେନ ବିରୂପାକ୍ଷ
ଭଇରବ ଦେଶରେ ସେ ରାଜା କୂଳୁପାକ୍ଷ ।
ବକ୍ରଗିରି ନଗ୍ରରାଜ କଣୟ ଭୂମନ୍ୟୁ
ଅରବିନ୍ଦ ମହ୍ଲାର ସେ ଭୂତଦେଶ ମନୁ ।
କୁବ୍‌ଜ କନାଉଜ ଭଙ୍ଗଦେଶ ଦଣ୍ଡଧର
ତିନି ତିହୁଡ଼ି ଆବର ମନ୍ଦ ଅନୁସାର ।
ଏତେ ଦେଶ ରାଜା ଘେନି ମାନଚକ୍ରବର୍ତ୍ତୀ
ବାଲମୀକ ସୋମଦତ୍ତ କଳିଙ୍ଗ ନୃପତି ।
ଏହାଙ୍କର ତୁଲେ ଛନ୍ତି ମର୍ଦ୍ଦୁତେକେ ବୀର
ପଦ୍ମେକ ରଥ ଆବର ଅଶ୍ୱ ତ୍ରିସାଗର ।
ବତିଶ କ୍ଷଉଣୀ ସୈନ୍ୟ ଏହାଙ୍କର ମୂଳେ
ଅର୍ଜୁନଙ୍କୁ ଚାରିଆଡ଼େ ବେଢ଼ିଲେ ସକଳେ ।
ଅଳମ୍ବୁଷ ଅଳାୟୁଧ ଦୁର୍ଜ୍ଜୟ ଦୁର୍ମନ
ଦୁର୍ବିନ୍ଦ ଯେ ଦୁରାନ୍ତକ ଦୁର୍ବାଳ ଦୁକର୍ଣ୍ଣ ।
ଏତେକ ଭାଇଙ୍କୁ ଘେନି ରାଜା ଧାର୍ତ୍ତରାଷ୍ଟ୍ରି
ସୈନ୍ୟ ତୁଲେ ଆବୋରିଛି ସେହି ବ୍ୟୂହଗୋଟି
ପଞ୍ଚଦଶ ଘଡ଼ିବେଳ ହୋଇଲାଣି ତହିଁ
ଜୟଦ୍ରଥ ଚିହ୍ନ ବର୍ଣ୍ଣ ନ ଦିଶଇ କାହିଁ ।
ଅଗମ୍ୟ ଗହନ ଥାଟ କିଏ ପାରୁ କଳି
ଯୋଜନେ ବିସ୍ତାର ପଦ୍ମ କେଶରର ସ୍ଥଳି ।
ବ୍ୟୂହ ପ୍ରମାଣ କିପରି ବୁଝ ଆହେ ରାଜ
କହନ୍ତେ ଅନ୍ତ ନୁହଇ ସେ ଭାରତ ଯୁଦ୍ଧ ।
ସଂକ୍ଷେପେ ସବୁ କହଇ ତୋହର ଅଗ୍ରତେ
ରାଜାଏ ଶର ବର୍ଷିଲେ ଅର୍ଜୁନ ସାକ୍ଷାତେ ।
ଅନେଶତ ଭାଇ ସଙ୍ଗେ ଘେନି କୁରୁପତି
ଅର୍ଜୁନର ଆଗେ ଆସି ମିଳିଲେ ଝଟତି ।
ନବସସ୍ର ରଥୀ ଏକସସ୍ର ରାଜା ତୁଲେ
ଅଶୀଲକ୍ଷ ଯୋଦ୍ଧା ଭୀମସେନକୁ ବେଢ଼ିଲେ ।
ଦୁଇସସ୍ର ରଥୀ ପଦାତିକ ଅଇବ୍ରତେ
ବେଢ଼ି ପ୍ରହାର କଲେ ସେ ନନ୍ଦିଘୋଷ ରଥେ ।
ସମସ୍ତଙ୍କୁ ବହୁ ଶସ୍ତ୍ର ବିନ୍ଧଇ ଅର୍ଜୁନ
ମତ୍ତହସ୍ତୀ ଯୋଦ୍ଧାମାନେ ପଡ଼ି ହୁନ୍ତି ଚୂର୍ଣ୍ଣ ।
ଯେସନେ ଗିରିରେ ମାଡ଼ି ପଡ଼ି ହୁନ୍ତି ଚୂର୍ଣ୍ଣ
ଯୋଦ୍ଧାଙ୍କ ଶସ୍ତ୍ରକୁ ତେସନେକ ଭୀମସେନ ।
ଶର ବିନ୍ଧି ବିନ୍ଧି ସର୍ବେ ହୋଇଲେ ବିମୁଖ
ଧନୁ ଧରି ନ ପାରିଣ ହୋଇଲେ ନିରକ୍ଷ ।

ରଥ ଛାଡ଼ି ବୀର ଭୀମ ଡେଇଁଲାକ ବେଗେ
ଛାଗଳ ପଲକୁ ବ୍ୟାଘ୍ର ଧାଏଁ କି ସରାଗେ ।
ବା'ନ ବା'ନ ଭାର ଗଦା ଘେନି ବେନି ହସ୍ତେ
ପିଟନ୍ତେ କୌରବବଳ ଶୋଇଲେ ସମସ୍ତେ ।
ନାରାଚ ବିନ୍ଧନ୍ତେ ଦିଗ ଦିଶଇ ଅନ୍ଧାର
ନିର୍ଭୟରେ ଯୁଦ୍ଧ କରେ ବାସବ କୁମର ।
ସ୍ୱଭାବେ ପାର୍ଥ ଅଟଇ ମହାଧନୁର୍ଦ୍ଧର
ତାଙ୍କ ଅସ୍ତ୍ରେ ଅସ୍ତ ମାରି କରିଦ୍ୟନ୍ତି ଚୂର ।
କୌରବ ରାଜା ଯୋଦ୍ଧାଙ୍କ ଶର ସର୍ପଚୟ
ପାର୍ଥଶର ନାଶ କରେ ହୋଇ ବୈନତେୟ ।
ସାତ୍ୟକିର ଯୁଦ୍ଧକଥା କହିତ ନ ପାରି
ଯାହାର ଭାଇ ଅଟନ୍ତି ଦେବ ଦଇତ୍ୟାରି ।
ଯୋଦ୍ଧାଙ୍କୁ ଘୋଟି ବିନ୍ଧିଲା ବାଣ ଜ୍ୱାଳାବଳି
ଆକାଶରେ ଅଦୃଶ୍ୟ ଯେ ହେଲେ ଅଂଶୁମାଳି
ବହୁସୈନ୍ୟ ଲୋଟାଇଲେ ଭୀମ ଗଦା ପିଟି
ବାତ ବିଘାତେ ଯେସନେ ରମ୍ଭାବନ ଲୋଟି ।
ତେହ୍ନେ ମହୀରେ ପଡ଼ନ୍ତି କୌରବଙ୍କ ଥାଟ
ମୃତପିଣ୍ଡ ଗହଳରେ ରୁଦ୍ଧ ହେଲା ବାଟ ।
ଡାହାଣରେ ବୃକୋଦର ବାମରେ ସାତ୍ୟକି
କୃଷ୍ଣଙ୍କ ସଙ୍ଗରେ ଇନ୍ଦ୍ର କୁବେର ବିଜେ କି ।
ଖଡ଼ଗ କୁଠାର ଆଦି ଅସ୍ତ୍ର ପରିତାଳେ
ଉଠଇ ଅନଳ ଶିଖା ଗଗନ ମଣ୍ଡଳେ ।
ଧ୍ରୁବମଣ୍ଡଳ ପର୍ଯ୍ୟନ୍ତ ହୁଏ ଶରଜାଳ
ହେଲାଣି ଚଉଦ ଘଡ଼ି ଦିବା ଶେଷକାଳ ।
ଗହନ ବନ ପରାୟେ କୁରୁରାଜ ସୈନ୍ୟ
ଦେଖି ନ ପାରିଲେ ଯହୁଁ ଜୟଦ୍ରଥ ବର୍ଣ୍ଣ ।
ନନ୍ଦିଘୋଷ ରଥେ ଥିଲା ବୀର ହନୁମନ୍ତ
ହରି ପୁଚ୍ଛିଲେ ତୋତେ କି ଦିଶେ ଜୟଦ୍ରଥ ।
ହନୁମନ୍ତ ବୋଲେ ଦେବ ଅଛି ଗୋପ୍ୟ ହୋଇ
କାହିଁ ରହିଅଛି ସେହି ମୋତେ ନ ଦିଶଇ ।
ଦୁସ୍ତର ଏ ବ୍ୟୂହ ଦେବ ବଡ଼ଇ ଗହନ
ଏ ବ୍ୟୂହ ଭେଦିବା ଅଟେ ଅତ୍ୟନ୍ତ କଠିନ ।
ସୈନ୍ୟବଳ ଘେନି ଏଥେ ବିଜେ କୁରୁଈଶ
ତୁ ଦେବ ଚକ୍ରେ ସବୁଙ୍କୁ ବେଗେ କର ନାଶ ।
କଉରବ ବଳ କିଛି ହୋଇଲେ ନିପାତ
ଗହଳ ଭାଙ୍ଗିଲେ ଦେଖାଯିବ ଜୟଦ୍ରଥ ।
କୃଷ୍ଣ ବୋଇଲେ ପୂର୍ବରୁ କରିଛି ନିୟମ
ଦେଖିଛୁ ତ ଭୀଷ୍ମପର୍ବେ କୋପ କଲେ ରାମ ।
ଏକ୍ଷଣି ସବୁଙ୍କୁ ମୁହିଁ ବିନାଶି ପାରଇ
କେବଳ ବଳରାମଙ୍କ କୋପକୁ ଡରଇ ।

ହନୁମନ୍ତ ବୋଲେ ଶୁଣ ହେ ମଧୁସୂଦନ
ତୁ ଥାଉଁ ଥାଉଁ ଅର୍ଜ୍ଜୁନ ହେବ କି ଦହନ ।
ତୁମ୍ଭେ ମୁହିଁ ଥାଉଁ ଯେବେ ପାର୍ଥ ଯିବ ନାଶ
ଧିକ ଆମ୍ଭେ ଜୀଇଁବାର ପ୍ରୟୋଜନ କିସ ।
ପ୍ରଭୁ ତୁମ୍ଭେ ସୃଷ୍ଟି ସ୍ଥିତି ପ୍ରଳୟ କରତା
ତୋତେ କି ବିଚିତ୍ର ଅଟେ ଏହି ଛାରକଥା ।
ହନୁମନ୍ତ ଠାରୁ ପ୍ରଭୁ ଶୁଣିଣ ଏସନ
ସେହିକ୍ଷଣି ଚକ୍ରକୂଟ କଲେକ ରଚନ ।
ପାର୍ଥ ଜାଣି ନ ପାରିଲେ ଚକ୍ର ରାଇ ହରି
ବୋଇଲେକ ଥାଅ ସୂର୍ଯ୍ୟ ତୁ ଉହାଡ଼ କରି ।
ନାରାୟଣଙ୍କ ଆଜ୍ଞାରେ ଚକ୍ର ଗଲା ବେଗେ
ସୂର୍ଯ୍ୟ ତେଜ ବୁଡ଼ାଇଲା ରହି ଶୂନ୍ୟମାର୍ଗେ ।
ସନ୍ଧ୍ୟାସମ ମଧ୍ୟପୁରେ ଅନ୍ଧାର ଦିଶିଲା
ସକଳ ଜନ ଭାବିଲେ ସୂର୍ଯ୍ୟ ଅସ୍ତ ଗଲା ।
କଉରବ ଥାଟରେ ଯେ ଶୁଭେ ଜୟ ଜୟ
ଯୁଦ୍ଧ ରହୁ ବୋଲି ଆଜ୍ଞା ଦେଲା କୁରୁରାୟ ।
ଦିବା ଅସ୍ତ ହୋଇ ଯହୁଁ ହୋଇଲା ରଜନୀ
ପ୍ରତିଜ୍ଞା ବ୍ୟର୍ଥ ହୋଇଲା ପାଣ୍ଡବ ଫାଲ୍‌ଗୁନି ।
ଅସ୍ତ୍ର ଶସ୍ତ୍ର ରଖିଦେଇ ସକଳ ସଇନ
ଦେହୁଁ ରକ୍ତ ଛଡ଼ାଇଲେ ଗଙ୍ଗାରେ ପଶିଣ ।
ନିଷ୍ଫଳ ହୋଇଲା ଯହୁଁ ପ୍ରତିଜ୍ଞା ପାର୍ଥର
କୃପ ଶଲ୍ୟ କର୍ଣ୍ଣଆଦି ଗଲେ ତା ପାଶର ।
ମାନଗୋବିନ୍ଦ ସକଳ ଭାଇଙ୍କ ସଙ୍ଗରେ
ଶକୁନିସହ ପ୍ରବେଶ ଅର୍ଜ୍ଜୁନ ପାଶରେ ।
ଅର୍ଜ୍ଜୁନର ମୁଖ ଚାହିଁ ଦୁଃଖେ କୁରୁରାୟ
ହା ଦଇବ ବୋଲି ଭାଲେ ମାରେ କରଦ୍ୱୟ ।
ଦ୍ରୋଣର ମହିମା ବାବୁ ଜାଣୁ ଜାଣୁ ତୁହି
ଏପରି ପ୍ରତିଜ୍ଞା ବୃଥା କଲୁ କାହିଁ ପାଇଁ ।
ଜୟଦ୍ରଥେ ମାରିବାକୁ ଏ ପ୍ରତିଜ୍ଞା କଲୁ
ତୋରପରା କ୍ଷତ୍ରି ହୋଇ ବିନାଯୁଦ୍ଧେ ମଲୁ ।
ତୁହି ମରନ୍ତେ ତୋହର ଆଉ ଚାରିଭାଇ
କୃଷ୍ଣ ସହିତେ ସେମାନେ ବଞ୍ଚିବେ କି ସେହି ।
ଏ ସମୟେ ପାର୍ଥ ବୋଲେ ଶୁଣ ଦାମୋଦର
ପ୍ରତିଜ୍ଞା ନିଷ୍ଫଳ ଏବେ ହୋଇଲା ମୋହର ।
ଚିତା ଆରୋହଣ ପ୍ରଭୁ କର ହେ ତ୍ୱରିତ
ପଶିବି ଅନଳ ମଧ୍ୟେ ରହୁ ମୋର ସତ୍ୟ ।
ଅର୍ଜ୍ଜୁନ ବଚନ ଶୁଣି ବୋଲନ୍ତି ମୁରାରି
ଜୟଦ୍ରଥକୁ ମାରିବା ରାତ୍ରେ ଯୁଦ୍ଧକରି ।
ପୂର୍ବରୁ ଯେଉଁ ବିଧାନ କଲା ପ୍ରଜାପତି
ଦିବସ ଯାର ଅଟଇ ତାର ଅଟେ ରାତି ।
ରାତ୍ରି ଦିବସ ଏ ଦୁଇ ଜାଣ ତୁହି ଏକା
ଚାରି ଯୁଗରେ ଏ କଥା ହୋଇଅଛି ଲେଖା ।
ରାତ୍ରଯୁଦ୍ଧେ ଯେବେ ତାକୁ ମାରି ନ ପାରିବୁ
ତେବେ ତୁହି ଅନଳରେ ନିଶ୍ଚେ ଝାସ ଦେବୁ ।
ପୁଣି ବୋଇଲେ ଶସ୍ତ୍ର ନ ଧରୁ କିମ୍ପା ପାର୍ଥ
ଥାଟେ ଅବା ଲୁଚିଥିବ ସେହି ଜୟଦ୍ରଥ ।
ଭୀମସେନ ବୋଲେ ଶୁଣ ମାନଚକ୍ରବର୍ତ୍ତୀ
ସୈନ୍ୟ ସଜାଅ ଯୁଝିବା ଆଜି ଦିବାରାତି ।
ଭୀମ ବାକ୍ୟେ ବୋଇଲାକ ରାଜା ଦୁର୍ଯ୍ୟୋଧନ
ପାର୍ଥ ମୁଖେ କହୁ ସତ୍ୟ କଲି ମୁଁ ଲଙ୍ଘନ ।
ଯେବେ ଧନଞ୍ଜୟ ସତ୍ୟ ଧର୍ମକୁ ଲଙ୍ଘିବ
ତେବେ ଏହି ରଜନୀରେ ନିଶ୍ଚେ ଯୁଦ୍ଧ ହେବ ।
ଏହା କହି ଦୁର୍ଯ୍ୟୋଧନ ବୋଲେ ହେ ଶ୍ରୀବତ୍ସି
କ୍ଷତ୍ରିୟ ପ୍ରତିଜ୍ଞା ତୋର ଏପରି କି ଅଛି ।
କ୍ଷତ୍ରି ହୋଇକରି ଯେବେ ନ ରଖିବ ଧର୍ମ
ବ୍ରାହ୍ମଣ ହୋଇ ଯେବେ ସେ ନ ପାଳିବ କର୍ମ ।
ଯୋଗୀ ହୋଇଣ ଯଦ୍ୟପି ନ ସାଧଇ ଯୋଗ
ମନ୍ତ୍ରୀ ସୁବୁଦ୍ଧି ନ କହେ ଯେବେ ରାଜା ଆଗ ।
ପଣ୍ଡିତ ହୋଇଣ ଯେବେ ଛାଡ଼େ ଧର୍ମପଥ
ସ୍ତିରୀ ହୋଇ ଯେବେ ପରପୁରୁଷରେ ରତ ।
ରାଜା ହୋଇଣ ଦଣ୍ଡଇ ଯେବେ ପରଜାଙ୍କୁ
ସ୍ୱର୍ଗରେ ବାସ ନ ମିଳେ ଏପରି ଲୋକଙ୍କୁ ।
ତୁ ଯେ ପ୍ରତିଜ୍ଞା କରିଲୁ ସୂର୍ଯ୍ୟ ଅସ୍ତଯାଏ
ନ ମାଇଲେ ଜୟଦ୍ରଥ ସମରେ ନିଶ୍ଚୟେ ।
ଅନଳ ଜାଳି ମାରିବି ଏକଥା ମୋ ସତ୍ୟ
ଏତେବେଳେ କାହିଁପାଇଁ ହେଉଛୁ ନିସତ ।
ଏବେ ସମର କରନ୍ତେ ସୂର୍ଯ୍ୟ ଅସ୍ତ ଗଲା
ଯେବେଣ ପ୍ରତିଜ୍ଞା କରି ନିଷ୍ଫଳ ହୋଇଲା ।
କ୍ଷତ୍ରିୟର ପ୍ରତିଜ୍ଞା ଯେ ପାଷାଣର ଗାର
ଏହା ଜାଣୁ ଜାଣୁ ତୁହି ଲଙ୍ଘୁକି ପ୍ରକାର ।
କ୍ଷତ୍ରିୟ ହୋଇଣ ଯେବେ ପ୍ରତିଜ୍ଞା ଲଙ୍ଘିବ
ତେବେ ଏ ସଂସାର କେଉଁ ପରାୟେ ଚଳିବ ।
ସତ୍ୟ ଲଙ୍ଘି ପୃଥିବୀକି ମାଡ଼ିଯିବ ସିନ୍ଧୁ
ରାଜା ହୋଇଣ ଯେବେଟି ହୋଇବ ଅସାଧୁ ।
ମାତା ପିତାଙ୍କୁ ଯେବେ ନ ଆବୋରିବେ ସୁତ
ସଜ୍ଜନ ହୋଇ ଯେବେ କି ଦ୍ୱିଜେ ଅଭକତ ।
ଅଗ୍ନି ଦେବତା ଯେବେ କି ଲଙ୍ଘେ ଗୃହବାସ
ଧନ ଥାଉଁ ପିତୃ ଲୋକେ କରେ ଯେ ନିରାଶ ।
ସ୍ତିରୀ ହୋଇ ଯେବେ ନୋହେ ପତିରେ ଭକତା
ଧନବନ୍ତ ହୋଇ ଯେବେ ନ ବୋଲାଏ ଦାତା

ଏ ସଂସାରେ ଏତେ କଥା ଯଦ୍ୟପି ଲଙ୍ଘିବ
ବେଦ ଶାସ୍ତ୍ର ପୁରାଣାଦି ମିଥ୍ୟା କି ହୋଇବ ।
ମାନଗୋବିନ୍ଦ ବଚନେ ବୋଲେ ଫାଲଗୁନି
କେ ଏହା ଲଙ୍ଘିବ ଜାତ ହୋଇଣ ମେଦିନୀ ।
ପ୍ରତିଜ୍ଞା ଲଙ୍ଘନ ପାପ କହିଲେ କି ସରି
ଯେହୁ ଯୁଦ୍ଧେ ସାମରଥ ଅସ୍ତ୍ର ଶସ୍ତ୍ର ଧାରୀ ।
କୃଷ୍ଣ ଭୀମ ସାତ୍ୟକି ଯେ ଶୋକରେ ଅବଶ
ଅଗ୍ନି ଯୋଗ ନ କଲେ କେ ଶୋକରେ ଅବଶ
ମୃତ୍ୟୁକାଳେ ଅଗ୍ନିଦାନ କରଇ ଯେ ସଖା
କୁଟୁମ୍ବର ମଧ୍ୟରେ ଯେ ତାକୁ କରି ଲେଖା ।
ଶୁଣି ଦୁଃଶାସନ କର୍ଣ୍ଣ ଦୁର୍ଜ୍ଜୟ ଦୁଃସନ୍ତ
କାଠ ଆଣି ଗଦାକଲେ ବନରୁ ବହୁତ ।
ମାନଗୋବିନ୍ଦ ତହିଁରେ ଲଗାଇଲା ବହ୍ନି
ତାଙ୍କୁ ସୋଦର ବୋଲିଣ ପ୍ରଶଂସେ ଫାଲ୍‌ଗୁନ
ଶ୍ରୀକୃଷ୍ଣଙ୍କୁ ବୋଲେ ପାର୍ଥ ଆଜ୍ଞାଦିଅ ନାଥ
ଜନ୍ମେ ଜନ୍ମେ ତୁମ୍ଭ ପାଦେ ରହିଥାଉ ଚିତ୍ତ ।
ଶ୍ରୀକୃଷ୍ଣ ବୋଇଲେ ଆହେ ଶୁଣ ଫାଲଗୁନି
ଶତ୍ରୁର ବଚନେ କିମ୍ପା ତ୍ରାସ ମନେ ଘେନି ।
ଦେଖ ହେଉଛନ୍ତି ସର୍ବେ କିପରି ସାନନ୍ଦ
କପଟ କଲା ବଦନେ ସେ ମାନଗୋବିନ୍ଦ ।
ତୁ କ୍ଷତ୍ରି କ୍ଷୋହଡ଼ ବୀରବର ରଣରଙ୍କା
ଶତ୍ରୁର ଉସତ ବାକ୍ୟେ ନ କର ତୁ ଶଙ୍କା ।
ପୂର୍ବପରି ସମରକୁ କରି ଆଚରଣ
ମାରି ନ ପାରିଲେ ହେବ ଅନଳେ ଦହନ ।
ଅର୍ଜ୍ଜୁନ ବୋଇଲେ ଦେବ ନିୟମ ଯେ କଲି
ଜୟଦ୍ରଥ ନ ମାଇଲେ ଭସ୍ମ ହେବି ବୋଲି ।
ସତ୍ୟଭଗ୍ନ କରେ ଯେଉଁ ପ୍ରାଣୀ ନାହିଁ ଗତି
ଲଭଇ ନର୍କରେ ସେହୁ ବହୁତର ଶାସ୍ତି ।
ଆହେ ନାରାୟଣ ମୋତେ ନ କର ନିଷେଧ
ନିଶ୍ଚୟ ଅଗ୍ନି ମଧ୍ୟରେ ହୋଇବି ମୁଁ ଦଗ୍‌ଧ ।
ମରିବାକୁ ଅନଳରେ ପଶୁଛି ଅର୍ଜ୍ଜୁନ
ହରଷ ବିସ୍ମୟେ ଧାଇଁଛନ୍ତି ବହୁଜନ ।
ଭାରୋଇମଲ୍ଲ ଶରଣପଞ୍ଜର ବୀରଧୁ
ଅର୍ଜ୍ଜୁନ ଅଟଇ ପୁଣି ତ୍ରୈଲୋକ୍ୟର ସାଧୁ ।
ବହୁ ଅଗୁରୁ ଚନ୍ଦନ କାଷ୍ଠ ବହିଆଣି
ବେଢ଼ି ଅଗ୍ନିରେ ପକାନ୍ତି କୌରବ ସଇନି ।
ଏକକୁ ଆରେକ ପୁଣି ବେଗେ ଉଚ୍ଚେ ଡାକେ
ଆସ ଦେଖିବା ଅର୍ଜ୍ଜୁନ ପଶିବ ପାବକେ ।
ରାଜା ଯୋଦ୍ଧାମାନେ ବହୁ ହୁଅନ୍ତି ବିକଳ
ଏହା ପରା କ୍ଷତ୍ରୀ ଏବେ ପଶିବ ଅନଳ ।

ଶକୁନି ଡାକେ ବ୍ୟୂହରୁ ଆସ ଜୟଦ୍ରଥ
ଦେଖିବା ଅନଳେ ଦଗ୍‌ଧ ହେଉଅଛି ପାର୍ଥ ।
ସର୍ବେ କହନ୍ତି ଅର୍ଜ୍ଜୁନ ମୁଖକୁ ଅନାଇ
ଜଗଜ୍ଜନ ସୋଦର ଏ ବିବସ୍ତ ଅଟଇ ।
ସଞ୍ଜୟ ଶକୁନି ଧୃତରାଷ୍ଟ୍ରୀଙ୍କର ତୁଲେ
ଦଶସସ୍ର ରଥୀ ଘେନି ଜୟଦ୍ରଥ ଗଲେ ।
ଅନେକ ସମ୍ଭର୍ବେ ସିନ୍ଧୁଦେଶ ଅଧିପତି
ଅନଳ ଜାଳିବା ସ୍ଥାନେ ମିଳିଲା ତଡ଼ତି ।
କୃଷ୍ଣ ବୋଇଲେ ଅଇଲା ଦେଖ ଜୟଦ୍ରଥ
ପ୍ରତିଜ୍ଞା ନିଷ୍ଫଳେ ତୋର ହୋଇ ଆନନ୍ଦିତ ।
ବହୁତ ଆନନ୍ଦ ହୁଏ ସିନ୍ଧୁ ରାଜା ସୁତ
କୌରବଙ୍କ ସଙ୍ଗେ ଉଭା ହୋଇ ଆନନ୍ଦିତ ।
ତତକ୍ଷଣେ ଅରଜୁନ ଦିବ୍ୟବେଶ ହୋଇ
ଶ୍ରୀଫଳ ଗୋଟିଏ ନିଜ କରେ ଘେନିଛନ୍ତି ।
ଅଗ୍ନିରେ ପଶିବ ବୋଲି ବାସବର ଶିଷ୍ୟ
ଲକ୍ଷେକ ମୁକୁତା କରେ ହୋଇ ସେ ପ୍ରବେଶ ।
ଶ୍ରୀକରେ ଶ୍ରୀଫଳ ଘେନି ପାର୍ଥ ବୁଲେ ବହ୍ନି
ପଶିବାକୁ ଦୃଢ଼ବ୍ରତ କଲା ଫାଲଗୁନି ।
ଜୟଦ୍ରଥ ଆସି ବୋଲେ ଶୁଣରେ ଫାଲଗୁନି
କି ଯୋଗେ ଅଇଲୁ ଏବେ ମରଣକୁ ଘେନି ।
ତୋହର ବୈରୀ ଅଟନ୍ତି ଧୃତରାଷ୍ଟ୍ର ପୋଏ
ଅଧର୍ମେ ମାରି ଲୋଡୁଛୁ ମୋତେ ତୁ ଅନ୍ୟାୟେ
ଧର୍ମକୁ ଛାଡ଼ି ଅଧର୍ମେ କରିଲୁ ତୁ ଆଶା
ବିହନ୍ତା ପୁରୁଷ ତୋତେ କରିଲା ନିଆଶା ।
କେତେଦିନ ବର୍ତ୍ତିବୁ ତୁ କଲୁ ଏ ଉକ୍ରର୍ମ
ମନ ଜାଣି ଶାସ୍ତି ତୋତେ ଦେଉଅଛି ଧର୍ମ ।
ଦୁର୍ଜନେ ଭୟ କରିଣ ସାଧୁ ଲୋଡୁ ମାରି
ଅକାଳରେ ରେ ପାଣ୍ଡବା ମରୁ ପୋଡ଼ିକରି ।
ଶକୁନି ବୋଇଲା କୃଷ୍ଣ ଯାହାର ସାରଥି
ଶକଟବ୍ୟୂହ ଭେଦି ନ ପାରିଲା ତା ରଥୀ ।
ଅଖ ଚକବାଟେ ଯେବେ ଭେଦନ୍ତା ପ୍ରଥମେ
ପାଞ୍ଚ ଘଡ଼ିରେ ମିଳନ୍ତା ଆମ୍ଭ ସନ୍ନିଧାନେ ।
ନ ଜାଣିବାପରେ ବ୍ୟୂହ ନ ପାରିଲୁ ଭେଦି
ମରଣ କାଳକୁ ହେଲା ବିପରୀତ ବୁଦ୍ଧି ।
ପ୍ରତିଜ୍ଞା କଲୁ ତୁ ଯାହା ମତ୍ତଗର୍ବ ପଣେ
ଦିବାରାତ୍ର ବୋଲି କିମ୍ପା ନ ବୋଇଲୁ ରଣେ ।
ଆଦ୍ୟରୁ ଏ ଜୟଦ୍ରଥ ଅଟେ ତୁମ୍ଭ ସଲ
ଏହାଯୋଗେ ତୁମ୍ଭର ଯେ ନୋହିଲାକ ଭଲ ।
ଭୀମସେନ ବୋଲେ ହସ୍ତେ ଶସ୍ତ୍ର ଧର ପାର୍ଥ
ଉଦୟ ସନ୍ଧ୍ୟାରେ ମାର ଏହି ଜୟଦ୍ରଥ ।

ମୋତେ କିପାଇଁ ନ କହୁ ଆରେ ଫାଲଗୁନି
ଏକ୍ଷଣି ପିଟନ୍ତି କାଳବର ଗଦା ଘେନି ।
ଅର୍ଜୁନ ବୋଇଲେ ଦେବ ହେବି କି ତ୍ରିଜୀବୀ
ଧର୍ମ ଲଙ୍ଘି ରଖାଇବି କଥା ଏହୁ ଭାବି ।
ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତେ ଯେବେ ପାରିଥାନ୍ତି ମାରି
ରଣେ ଜୟ ଜୟ ଧ୍ୱନି ଶୁଭନ୍ତା ମୋହରି ।
କ୍ଷଣେଟି ଆଦିତ୍ୟଦେବ ଥାନ୍ତେ ଯେବେ ରହି
ଏକ୍ଷଣିତାକୁ ମାରନ୍ତି ରଖନ୍ତା କେ ନାହିଁ ।
ଅରଜୁନର ପ୍ରତିଜ୍ଞା ଶୁଣି ନାରାୟଣ
କାଳଚକ୍ର କାଢ଼ିଦେଲେ ଆକାଶୁଁ ତକ୍ଷଣ ।
ପଶ୍ଚିମ ଦିଗରେ ଦିଶିଲେକ ମାରତଣ୍ଡ
ଦେଖିଲାକ ବେଳଅଛି ଦୁଇ ତିନି ଦଣ୍ଡ ।
ସମସ୍ତ ଯୋଦ୍ଧାଏ ଦେଖି ହୋଇଲେ ଆଶ୍ଚର୍ଯ୍ୟ
କହନ୍ତି ଅର୍ଜୁନ ମୁଖ ଚାହିଁ ଦେବରାଜ ।
ପାର୍ଥକୁ ଚାହିଁ କହିଲେ ହସି ଜନାର୍ଦ୍ଦନ
ପ୍ରତିଜ୍ଞା ନିଷ୍ଫଳେ କିମ୍ପା ହୋଇବୁ ଦହନ ।
ଶକୁନି ଚାହିଁ କହିଲା ଶ୍ରୀକୃଷ୍ଣ ବଦନ
ଏ ସବୁ କୂଟ କପଟ ତୋହର ଭିଆଣ ।
ହରି କହିଲେ ସକଳ କହୁ ତୁହି ସତ୍ୟ
ଅସ୍ତ୍ର ଗହଳେ ଅଦୃଶ୍ୟ ଥିଲା ଏ ଆଦିତ୍ୟ ।
ଆବର ସୈନ୍ୟମାନଙ୍କ ଉଡ଼ି ପାଦଧୂଳି
ଆଚ୍ଛାଦିତ ହୋଇଥିଲେ ଦେବ ଅଂଶୁମାଳି ।
ସଂଗ୍ରାମ ଶେଷ ହୁଅନ୍ତେ ଧୂଳି ବିଶ୍ରାମିଲା
ସେ କାରଣୁ ସୂର୍ଯ୍ୟରଶ୍ମି ପ୍ରକାଶ ହୋଇଲା ।
ଗଦାବର ଘେନି ଭୀମ କରନ୍ତେ ଗର୍ଜନ
ଭୟେ ଭାଜି ପଳାଇଲେ କୌରବ ସଇନ ।
ଗୋବିନ୍ଦ ବୋଇଲେ ବେଗେ ଅସ୍ତ୍ର ଧରି ପାର୍ଥ
ଦଶସସ୍ର ରଥୀ ତୁଲେ ମାର ଜୟଦ୍ରଥ ।
ଦୁର୍ଯ୍ୟୋଧନ ବୋଲେ ଏହା ନଟକୂଟ କଥା
ଲଙ୍ଘନ କରୁଛ ତୁମ୍ଭେ ଧର୍ମକୁ ସର୍ବଥା ।
ଚାରିଯୁଗରେ ଯେ ଧର୍ମ ଅଟଇ ପ୍ରଧାନ
ପ୍ରତିକାର ନାହିଁ ଧର୍ମ କଲେକ ଲଙ୍ଘନ ।
ମୁହିଁ ସତ୍ୟେ ପ୍ରତିଜ୍ଞା ଯେ କରିଣ ଅଛଇ
ବିନା ଯୁଦ୍ଧେ ପାଣ୍ଡବଙ୍କୁ ଭୂମି ନ ଦିଅଇ ।
ଭୀଷ୍ମ ନାଶଗଲା ଭୂରିଶ୍ରବାହିଁ ପଡ଼ିଲା
ଅନେକ ବାନ୍ଧବ ମଲେ ଦୁର୍ଦ୍ଧଷହିଁ ଗଲା ।
ଯଦି ରଣେ ପଡ଼ିବେ ମୋ ଅନେଶତ ଭାଇ
ଗ୍ରାମେ କରି ପାଣ୍ଡବଙ୍କୁ ନ ଦିଅଇ ମହୀ ।
ଗୋବିନ୍ଦ ବୋଇଲେ ତୋର ମହିମାକୁ ଧନ୍ୟ
କି ସୁକ୍ଷଣେ ତୋତେ ମାତା କରିଥିଲା ଜନ୍ମ ।

ତୁହିପରା ଭୀମସେନ ନିମନ୍ତ୍ରଣେ ନେଲୁ
ପୁରଞ୍ଜନ ହାତେ ବିଷଲଡୁ ଖୁଆଇଲୁ ।
ଭୁଞ୍ଜି ବୃକୋଦର ଯହୁଁ ହେଲା ଅସାକ୍ଷମ
ଜଳେ ଫିଙ୍ଗିଲୁ ନାଗୁଣୀ ଖାଇବ ବୋଲିଣ ।
ଜତୁଘର ଭିଆଇଲୁ ଥିଲୁ ଧର୍ମବାଟେ
ଜଉ ସଜଳସ ଗୁଆଘୃତ ଛଣପଟେ ।
ପାଣ୍ଡବେ ମରନ୍ତୁ ବୋଲି ରାତ୍ରେ ଦେଲୁ ପୋଡ଼ି
ପ୍ରାଣ ପାଇଲେ ସେ ସୁର ନଦୀତୀରେ ପଡ଼ି ।
ନିମନ୍ତି ଗାନ୍ଧାରସେନ ବଂଶକୁ ଆଣିଲୁ
ନେଇ ପଥର ଘରରେ ତାହାଙ୍କୁ ଭରିଲୁ ।
ଅନେଶତ ଜଣ ତାର କୁଟୁମ୍ବ ସହିତେ
ଅନ୍ନ ନ ଦେଇ ମାଇଲୁ ଧର୍ମୀ ତୁ ଜଗତେ ।
ସେ ପଥର ଘରୁ ଧର୍ମେ ବଞ୍ଚିଣ ଶକୁନି
ଧାର୍ମିକ ପୁରୁଷ ତୁମ୍ଭେ କର୍ଣ୍ଣମନ୍ତ୍ରୀ ଘେନି ।
ଚକ୍ରବ୍ୟୂହ ସମରେ ତ କଲ ଧର୍ମବୃତ୍ତି
ଅଭିମନ୍ୟୁକୁ ବେଢ଼ିଲେ ଦଶସସ୍ର ରଥୀ ।
ବେଢ଼ି ତାକୁ ମାଇଲେ ଯେ ଦଶସସ୍ର ରାୟେ
ଦୁଃଶାକୁ ରାଇ ପେଷିଲୁ ତୁହି କୁରୁରାୟେ ।
ଧାଇଁଯାଇ ଦୁଃଶା ଗଦା ପଛରୁ ପିଟିଲା
ସେ ଆଘାତେ ଅଭିମନ୍ୟୁ ମ୍ୟାରେ ଲୋଟିଲା
ମୋହର କୁମର ତଳେ ଗଡ଼େ ଯେତେବେଳେ
ବେଢ଼ି କରିଣ ମାଇଲ ତାକୁ ତେତେବେଳେ ।
ଜୟଦ୍ରଥ ଗଦା ପିଟେ କୁମର ବୁକୁରେ
ତୁମ୍ଭ ଧର୍ମ କଥାମାନ କହିଲେ ନ ସରେ ।
ସବୁବେଳେ ଧର୍ମପଥେ ତୁମ୍ଭେ ଥାଅ ରହି
ପୁତ୍ରଶୋକେ ଧନୁଧରେ ଅର୍ଜୁନ ନ ସହି ।
ଅର୍ଜୁନ ଧନୁ ଧରନ୍ତେ ଭୀମ କୋପେ ଉଠି
ଦନ୍ତରେ ଅଧର ଚାପି ଚାହଁଇ ତରାଟି ।
ବେନିଗଦା ବୁଲାଇଣ ଉଠି ଶିରଝୁଣି
କୃତାନ୍ତକ ରୂପ ଦେଖି ଭାଜିଲେ ସଇନି ।
ଦଶସସ୍ର ରଥୀ ତୁଲେ ସିନ୍ଧୁ ନରନାଥ
ଭୟେ ପଳାଇଲେ ସର୍ବେ ହୋଇ ଇତସ୍ତତଃ ।
ଦୁର୍ଯ୍ୟୋଧନ ବୋଲେ ବେଳ ଦୁଇଘଡ଼ି ଅଛି
ପଳାଇ ତୁ ପ୍ରାଣରଖ କେଉଁଠାରେ ଲୁଚି ।
ଜୟଦ୍ରଥ ବୋଲେ ମୋର ସୈନ୍ୟ ରଖ ରାୟେ
ରଥ ତେଜ୍ୟାକରି ଏବେ ପଳାଉଛି ପାୟେ ।
ଭୟରେ ପଳାଇ ତହିଁ ଗଲା ଜୟଦ୍ରଥ
ବସ୍ତ୍ର ଅସମ୍ଭାଳ ତାର କେଶ ମୁକୁଳିତ ।
ଭୀମ ସାତ୍ୟକି ଏ ଦୁହେଁ ସୈନ୍ୟବଳ ଧ୍ୱଂସି
ଦଶସହସ୍ର ଯୋଦ୍ଧାଙ୍କୁ ମାଇଲେ ଆକର୍ଷି ।

ନନ୍ଦିଘୋଷ ତେଜ୍ୟାକରି କୃଷ୍ଣ ଫାଲଗୁନି
ଗୋଡ଼ାଇଣ ଜୟଦ୍ରଥେ ଅସ୍ତ୍ର ଶସ୍ତ୍ର ଘେନି ।
ଇନ୍ଦ୍ର ପ୍ରଶସ୍ତ ନାମରେ ଏକଇ ପର୍ବତ
ତହିଁତଳେ ପଳାଇଣ ଯାଏ ଜୟଦ୍ରଥ ।
ପାର୍ଥ ଡାକଦିଏ ରହ ସିନ୍ଧୁ ଅଧିପତି
ମୃତ୍ୟୁକାଳେ ଲୁଚିଲେ କି ଛାଡ଼େ ଜନ୍ତୁପତି ।
ଭଗ୍ନିର ବଲ୍ଲଭ ତୁହି ପଶିଲୁ ସମରେ
ବଂଶ ନାଶିଲୁ ମାରିଣ ବାଳୁତ କୁମରେ ।
ପାର୍ଥ ଅସ୍ତ୍ର ଛାଡ଼ିଦେଲେ ହସ୍ତୁ ଯେତେବେଳେ
ଅଗ୍ନି ଆରୋପଣ କଲେ ଯମୁନାର କୂଳେ ।
ତାହା ଦେଖି ଧାତିକାରେ ଦୂତ ଧାଇଁଗଲା
ଯୁଧିଷ୍ଠିର ଆଗେ ସବୁ ବାରତା କହିଲା ।
ସ୍ୱାମୀ ଯୁଦ୍ଧକରୁଁ ସୂର୍ଯ୍ୟଦେବ ଅସ୍ତହେଲେ
ସଂଗ୍ରାମ ତେଜି ଅର୍ଜ୍ଜୁନ ଶସ୍ତ୍ର ଯେ ଛାଡ଼ିଲେ ।
କଉରବବଳ ଆଣି ଲଗାଇଲେ ବହ୍ନି
ଅନଳେ ଝାସିବ ତୁମ୍ଭ ଭାଇ ଫାଲଗୁନି ।
ଏହା ଶୁଣି ଯୁଧିଷ୍ଠିର ହୋଇଲେ ଦୁଃଖିତ
ନକୁଳ ସହଦେବଙ୍କୁ ଘେନିଣ ସହିତ ।
ଯୁଦ୍ଧସ୍ଥାନକୁ ଧାଇଁଲେ ହୋଇ ଉଦବେଗ
ଶିଖଣ୍ଡୀ ଯେ ଧୃଷ୍ଟଦ୍ୟୁମ୍ନ ଗଲେ ତାଙ୍କ ସଙ୍ଗ ।
ଦ୍ରୂପଦ ନୃପତି ଘଟଉତ୍କଚ ବିରାଟ
ପକ୍ଷ ଘେନି ଧାଇଁଲେ ଏ ପାଣ୍ଡବଙ୍କ ଥାଟ ।
ସିନ୍ଧୁରାଜାକୁ ଯହିଁକି ଧରିଛି କିରୀଟୀ
ଇନ୍ଦ୍ରପ୍ରସ୍ଥ ଗିରିତଳେ ହେଲେ ଭେଟାଭେଟି ।
ଶୁଭ ଶକୁନେ ଭେଟିଲେ ଯାଇଁ କୃଷ୍ଣପାର୍ଥ
ଅତି ଆନନ୍ଦରେ ସର୍ବେ ହେଲେ କୃତକୃତ୍ୟ ।
ଗୋଡ଼ାଇ ଭେଟିଲେ ଯହୁଁ କୁରୁ ସୈନ୍ୟବଳ
ଉଭୟବଳ ଥାଟରେ ହୋଇଲା ଗହଳ ।
ଅର୍ଦ୍ଧଚନ୍ଦ୍ର ବାଣ ଘେନି ରାଗରେ କିରୀଟୀ
ଜୟଦ୍ରଥ ଧନୁ ଦ୍ରୋଣ ପକାଇଲା କାଟି ।
ଶୂନ୍ୟହସ୍ତେ ଜୟଦ୍ରଥ ହୋଇଅଛି ଉଭା
ବିଦ୍ୟାଧର ପରାୟେକ ଦିଶେ ଅତି ଶୋଭା ।
ଜୟଦ୍ରଥ ବୋଲେ ଶୁଣ ଆହେ ପାର୍ଥ ବୀର
ଶରଣ ରକ୍ଷଣ ବାନା ଉଡ଼ଇ ତୋହର ।
ତୋହର ବଇରୀ ଯେବେ ନିଅସ୍ତ୍ର ହୁଅଇ
ନ ମାରି ତାହାକୁ ଛାଡୁ ତୁହି ଦୟାବହି ।
ପିଠିଦିଏ ଅବା ମୁଖେ ଅଙ୍ଗୁଳି ଭରଇ
ଏପରି ଶତ୍ରୁକୁ ପାର୍ଥ ନ ମାରୁ ଯେ ତୁହି ।
ତୋହର ହୋଇ ମୁଁ ଥାଏ ଏ ପ୍ରାଣକୁ ଘେନି
ତୁ ଯେ କ୍ଷତ୍ରିୟମାନଙ୍କ ଅଟୁ ଶିରୋମଣି ।

ଦ୍ରୌପଦୀ ହରଣ କାଳେ କଲୁ ସାତବେଣ୍ଟି
ସେହିଦିନୁ ମୁଁ ତୋହର ଭୃତ୍ୟର ଭୃତ୍ୟଟି ।
ଶିରେ କରଦେଇ ବୋଲେ ରଖ ମୋତେ ପାର୍ଥ
ଏମନ୍ତ ଶୁଣି ବାସବୀ ହେଲେ ସ୍ତମ୍ଭୀଭୂତ ।
ଅର୍ଜ୍ଜୁନ ବୋଇଲେ ହରି କିମ୍ପା କଲୁ ଦ୍ୱନ୍ଦ୍ୱ
ଏହାକୁ ମାଇଲେ କିସ ପାଇବି ସମ୍ପଦ ।
ସମ୍ପଦ ନିମନ୍ତେ ଯେହୁ ନାଶେ ବନ୍ଧୁଜନେ
ପରଲୋକେ ସେହୁ ହୁଏ ନରକେ ପତନ ।
ଗୋବିନ୍ଦ ବୋଇଲେ ତୁ ଯେ ପର ଉପକାରୀ
ଶରଣ ରଖୁ ଏହାକୁ ନିଜ ପ୍ରାଣହାରି ।
ଆଦ୍ୟରୁ ଏହି ପ୍ରତିଜ୍ଞା କିମ୍ପା କଲୁ ପାର୍ଥ
ତୁ ପ୍ରତିଜ୍ଞା ଲଘି ହୋଇବୁ କି ଅଧଃପାତ ।
ଅଗ୍ନି ମଧ୍ୟେ ପଶିବୁ ତୁ ଯାଇ ଯେତେବେଳେ
ନ ରହିବ ପାଣ୍ଡବଙ୍କ ଚିହ୍ନ ରଣଗୋଳେ ।
ପୁତ୍ରଶତ୍ରୁ ତୋର କେହ୍ନେ ଯାକୁ ଛାଡୁ ତୁହି
ଯେ ଏହା ନ କରେ ନିଶ୍ଚେ ନର୍କରେ ପଡ଼ଇ ।
ଏହିକ୍ଷଣି ଗଲେ ପାର୍ଥ ପଡ଼ିବ ପ୍ରମାଦ
କିମ୍ପାଇଁ ମଉନ ହେଲୁ ବେଗେ ଶିରଚ୍ଛେଦ ।
ତୋର ପ୍ରତିଜ୍ଞା ନିମନ୍ତେ କରିଅଛି ଏହା
ଏହିକ୍ଷଣି ବୃକୋଦର ବିଦାରିବ ହିଆ ।
ସାତ୍ୟକି ଶ୍ରୀଖଣ୍ଡୀ ଧୃଷ୍ଟଦ୍ୟୁମ୍ନ ଗଳଗାଜି
ଏହିକ୍ଷଣି ମାଂସ ତାର ପକାଇବେ ପିଙ୍ଗି ।
ଅନ୍ୟାୟେ ବଧିଲା ଯେଣୁ ମୋହର ଭଣଜା
ଚକ୍ରରେ ଛେଦିବି ଶିର ତୁହି କଲେ ତେଜ୍ୟା ।
ମାୟାଧର ପ୍ରଭୁ ନାନା ମାୟା କଥା କହି
ଅର୍ଜ୍ଜୁନର ହୃଦମଧ୍ୟେ ପ୍ରବେଶିଲେ ଯାଇ ।
ତହୁଁ ପାର୍ଥ ପେଷିଲାକ ଶର କାଳଦଣ୍ଡ
ପ୍ରଖରେ ଚଳିଲା ଅତି ହୋଇଣ ପ୍ରଚଣ୍ଡ ।
ନିରପେକ୍ଷ ବାଣ ଗଲା ରଣ ରଙ୍ଗେ ଘୋଟି
କନ୍ଧେ ପଡ଼ି ଜୟଦ୍ରଥ ଶିର ଦେଲା କାଟି ।
କନ୍ଧରୁ ମସ୍ତକ ଛିଡ଼ି ଭୂମିରେ ପଡ଼ିଣ
ପୁଣି ସେ ମୁଣ୍ଡ କନ୍ଧରେ ଲାଗିଲା ବହନ ।
ରୋଷଭରେ ଜୟଦ୍ରଥ ଧାଏଁ ଗଳଗାଜି
କରେ କୃପାଣ ବୁଲାଇ ଅତି ରୋଷେ ଗର୍ଜି ।
ପୁଣି ପାର୍ଥ ଖୁର୍ପଶର ବିନ୍ଧିଲେକ ଟାଣି
ଜୟଦ୍ରଥ ଶିର ବେଗେ ପକାଇଲେ ହାଣି ।
ଭୂମିରେ ପଡ଼ିଣ ମୁଣ୍ଡ ଲାଗିଲାକ ଯାଇଁ
ଶୁଣି ପାର୍ଥ ଶର ମାରି ଦେଲାକ ଛିଣ୍ଡାଇ ।
ପୁଣି ଛିଡ଼ି ପୁଣି ମୁଣ୍ଡ ଲାଗଇ ତ୍ୱରିତେ
କାଟିଲା ଅନେକବାର ପାର୍ଥ ଏହିମତେ ।

ଏହା ଦେଖି ରଖି ଦେଇ ପାର୍ଥ ଧନୁଶର
କାହୁଁ ପାଇଲା ଏ ବର କହ ଚକ୍ରଧର ।
ସହଦେବ ମୁଖ ଚାହିଁ ପୁଚ୍ଛିଲେ ଅଚ୍ୟୁତ
କହ ମନ୍ତ୍ରୀବର ଏହା କେବଣ ଚରିତ ।
ସହଦେବ ବୋଇଲେକ ଶୁଣ ଚକ୍ରପାଣି
ଏଥିର ତବନ୍ତ ଭେଦ ଅଛଇ ମୁଁ ଜାଣି ।
ଦ୍ରୌପଦୀଙ୍କୁ ହରିନେଲା ଏହି ଯେତେବେଳେ
ଜୟଦ୍ରଥେ ଭୀମ ଧରି ମାଡ଼ିଣ ବସିଲେ ।
ରୁହାଇଲେ ଦେବ ଧର୍ମ ମୁଣ୍ଡକୁ ମୋଡ଼ନ୍ତେ
ଛଡ଼ାଇ ନେଇ ତାହାକୁ ଦୁଃଶୀଳା ନିମନ୍ତେ ।
ରାଗେ ଅର୍ଜ୍ଜୁନ ଏହାକୁ କରି ସାତବେଣ୍ଟି
ଛାଡ଼ିଣ ଦେଲେ ତାହାର ଚୋଟିକୁ ନ କାଟି ।
ଭୀମସେନ ଗଳାଇଲେ ଦୁଇ ଜାନୁତଳେ
ବୋଲାଉ ଏ ପାଣ୍ଡବଙ୍କ ଭୃତ୍ୟ ସର୍ବକାଳେ ।
ଅପମାନ ପାଇଣ ନ ଗଲା ସିନ୍ଧୁ ଦେଶେ
ତପେ ବସିଲାକ ଯାଇ ଶିବ କଇଳାସେ ।
ଦୃଢ଼ ଯୋଗାସନେ ଚିନ୍ତାକରି ବିଶ୍ୱନାଥ
ଦ୍ୱାଦଶ ବରଷ ତପ କଲା ଜୟଦ୍ରଥ ।
ପ୍ରସନ୍ନ ହୋଇଣ ଶିବ ତା ପାଶେ ମିଳିଲେ
କି ବର ମାଗିବୁ ମାଗ ବୋଲିଣ କହିଲେ ।
ଜୟଦ୍ରଥ ବୋଲେ ପ୍ରଭୁ ଏହି ବର ଦେବେ
ସମରରେ ସରି ମୋତେ ନୋହିବେ ପାଣ୍ଡବେ
ଈଶ୍ୱରଙ୍କୁ ବୋଇଲା ସେ ଦୁଃଶୀଳାର କାନ୍ତ
କୃଷ୍ଣସହ ଜିଣିବି ମୁଁ ପାଣ୍ଡବ ସମସ୍ତ ।
ଶିବ ବୋଇଲେ ବାଞ୍ଛିଲୁ ତୁ ଦୁଃସହ ବର
ଅର୍ଜ୍ଜୁନ ବାଦୀ ହୋଇଲେ ରକ୍ଷା ନାହିଁ ତୋର ।
ସମରେ ଜିଣି ପାରିବୁ ଯୁଧିଷ୍ଠିର ଦେବ
ଆବର ଭୀମ ନକୁଳ ବୀର ସହଦେବ ।
ହର ବ୍ରହ୍ମା ଇନ୍ଦ୍ର ଆଦି କୁବେର ସହିତେ
ସମର କରିଣ ମାରି ନ ପାରିବେ ତୋତେ ।
ଚାରି ଦିଗପାଳ ଯେବେ ହେବେ ଏକ ଜଣେ
ନିଶ୍ଚୟ ଶିର ଛେଦନ ହୋଇବ ତୋ ରଣେ ।
ଶୁଣି ଜୟଦ୍ରଥ ପୁଣି କହଇ ଏସନ
ଛିଡ଼ନ୍ତେ ମୁଣ୍ଡ ଲାଗିବ ମୋର ପୁଣ ପୁଣ ।
ଶିବ ବୋଇଲେ ତୋହର ଲାଗିବ ଯେ ଶିର
ମୁଣ୍ଡ ପଡ଼ିବଟି ଯେବେ ତୋ ପିତା ହସ୍ତର ।
ଉତ୍ତର ସାଗରେ ତୋର ପିତା ତପ କରେ
ତା ତପ ଭାଙ୍ଗିବା ଯାଏ ଲାଗିବ କନ୍ଧରେ ।
ଜୟଦ୍ରଥ ବୋଲେ ପ୍ରଭୁ କହିଲ ଅସାଧ
ଜାଣିବି ନା ମୁଁ କେମନ୍ତେ ହୋଇବି ନା ବଧ ।

ପ୍ରତି ବାକ୍ୟରେ ଉତ୍ତର ଦେଲେଟି ଧୂର୍ଜଟି
ତୋର ମୃତ୍ୟୁଭେଦ ଅଟେ ପାଣ୍ଡବ କିରୀଟୀ ।
ରଥ ଗଜ ଅଶ୍ୱ ପରେ ଚଢ଼ିଣ ନ ଥିବ
ପାଦଗତି ହୋଇ ତୋତେ ଶର ଯେ ପେଷିବ
ବ୍ରହ୍ମା ବିଷ୍ଣୁ ଶିବ ହୋଇଥିବେ ଅବତାର
ଏସନକ ରୂପେ ତୋତେ କରିବେ ସଂହାର ।
ରାତ୍ର ନୋହିଥିବ ପୁଣି ଦିବା ନୋହିଥିବ
ପିନାକ ସମାନ ଧନୁ ତାର କରେ ଥିବ ।
ମୋର ପାଶୁପତ ଶରେ ଛେଦିବ ତୋ ଶିର
ମୁଣ୍ଡ ପଡ଼ିବ ଯାଇ ତୋ ପିତାର ହସ୍ତର ।
ଭସ୍ମ ହେଉ ବୋଲି କହି ପକାଇ ଦିଅନ୍ତେ
ତୋହର ମୁଣ୍ଡ ଦହନ ହୋଇବ ଏମନ୍ତେ ।
ସହଦେବ କହିଲେକ ଜଗନ୍ନାଥ ପାଶ
ଏହିପରି ଜୟଦ୍ରଥ ହୋଇବ ବିନାଶ ।
ଅର୍ଜ୍ଜୁନ ଯେବଣ କାଳେ ହୋଇଲେ ସଞ୍ଚାର
ବ୍ରହ୍ମାଙ୍କର ମୁଣ୍ଡ ଆଉ ବିଷ୍ଣୁଙ୍କ ରୁଧିର ।
ଈଶ୍ୱର ବିଭୂତି ଦେବ ଭ୍ୟାଇଲେ ପିତୁଳି
ବାସବର ଆତ୍ମା ଦେଇ ଅର୍ଜ୍ଜୁନକୁ ତୋଳି ।
ବିଧିରେ ଅର୍ଜ୍ଜୁନ ଏହି ଚାରିଙ୍କର କାୟ
ଗାଣ୍ଡୀବ ଧନୁକୁ ଦେଇଛନ୍ତି ଦେବରାୟ ।
ପାଶୁପତ ଶରଦେଇ ଅଛନ୍ତି ଈଶାନ
ସନ୍ଧ୍ୟାକାଳ ହେଉଅଛି ଦେଖ ବର୍ତ୍ତମାନ ।
ସହଦେବ ବାକ୍ୟ ଶୁଣି ହୃଷ୍ଟ ଜଗନ୍ନାଥ
ଗାଣ୍ଡୀବେ ପାଶୁପତାସ୍ତ୍ର ଯୋଚିଲେକ ପାର୍ଥ ।
ଆକର୍ଣ୍ଣ ପର୍ଯ୍ୟନ୍ତେ ଗୁଣ ଓଟାରି କିରୀଟୀ
ଛାଡ଼ନ୍ତେ କାଟିଲା ଜୟଦ୍ରଥ ମୁଣ୍ଡ ଗୋଟି ।
ଉଡ଼ାଇ ଦେଲେ ସେ ମୁଣ୍ଡ ପବନାସ୍ତ୍ର ଘାତେ
ମୁଣ୍ଡ ପଡ଼ିଲା ଆକାଶୁଁ ସୁରଥର ହସ୍ତେ ।
ନୟନ ବୁଜି ପ୍ରସାରିଥିଲା ସେହୁ କର
ତହିଁରେ ପଡ଼ିଲା ଯାଇ ଜୟଦ୍ରଥ ଶିର ।
ଭସ୍ମହେଉ ବୋଲି ଛାଡ଼ିଦ୍ୟନ୍ତେ କରାଞ୍ଜଳି
ଚାହାଁନ୍ତେ ନେତ୍ର ଅନଳେ ମୁଣ୍ଡ ଗଲା ଜଳି ।
ଜୟଦ୍ରଥ ପଡ଼ନ୍ତେଣ ପାଣ୍ଡବଙ୍କ ଜୟ
ପାଞ୍ଚଜନ୍ୟ ଶଙ୍ଖ ଶବ୍ଦ କଲେ ଦେବରାୟ ।
କୁରୁବଳ ସୈନ୍ୟ ଶୁଣି ସ୍ତବ୍ଧ ବିସ୍ମୟେ
କ୍ରୋଧେ ଅଧୀର ହୋଇଲା ଦୁର୍ଯ୍ୟୋଧନ ରାୟେ
ଜୟ ଜୟ ନାରାୟଣ ଶଙ୍ଖ ଚକ୍ରଧାରୀ
ସିନ୍ଧୁ ସୁତା କମଳାଙ୍କ ହୃଦୟ ବିହାରୀ ।
ଭକ୍ତଙ୍କ କଷଣ ତୁମ୍ଭେ ସହି ଯେ ନ ପାର
ତାଙ୍କପାଇଁ ଧର ବାବୁ ନାନା ଅବତାର ।

ଯୁଗେ ଯୁଗେ ତୁମ୍ଭ ଯଶ ରହିଅଛି ପୂରି
ମୁଁ ଛାର ନର ମାତର କିସ ବର୍ଣ୍ଣିପାରି ।
ଧନ୍ୟ ଧନ୍ୟ ତବଲୀଳା ହେ ଦେବ ରମେଶ
ଶାରଳା ଦାସର ରହୁ ତବପାଦେ ଆଶ ।



## ସୁରଥ ରାଜାର ତପସ୍ୟା

ବିଲଙ୍କ ଦେଶର ବୈବସ୍ୱତ ମନୁ ରାଜା
ପୁଚ୍ଛାକଲା ଅଗସ୍ତିଙ୍କୁ କରି ଦିବ୍ୟ ପୂଜା ।
ବଡ଼ ଦୁରାପଦ ଏହି ଯୁଦ୍ଧର ବ୍ୟବସ୍ଥା
ଶୁଣି ଆଶ୍ଚର୍ଯ୍ୟ ହୋଇଲି ଜୟଦ୍ରଥ କଥା ।
ପିତା ତାର କି ନିମନ୍ତେ ଅଛି ତପୀ ହୋଇ
ଉତ୍ତରାଙ୍କୁରେ ବସିଛି କେଉଁ ଫଳପାଇଁ ।
ଏହା ବିସ୍ତାରିଣ ମୋତେ କହ ତପୋବନ୍ତ
ଶୁଣି ମୋର ଭ୍ରାନ୍ତିଫିଟୁ ଯାଉ ମୋ ଦୁଷ୍କୃତ ।
ବୋଲନ୍ତି ଅଗସ୍ତି ମୁନି ଆହେ ମନୁ ଗଣ
ଯାହା ତୁ ପୁଚ୍ଛା କରିଲୁ ଏକଲୟେ ଶୁଣ ।
ଉତପାତ ବଂଶେ ଜାତ ହେଲେ ମହାରଥ
ଏହାଙ୍କ କୁମର ନାମ ନିରିମଳ ରଥ ।
ନିର୍ମଳ ରଥରୁ ପୁତ୍ର ନିରାକୁଳ ରଥ
ପ୍ରତାପ ରଥ ବୋଲିଣ ହେଲା ଯାର ସୁତ ।
ତାହାର ନନ୍ଦନ ନାମ ଅଟେ ଅମୁରଥ
ଅମୁରଥର ନନ୍ଦନ ସେ ଭୂମନ୍ୟୁ ରଥ ।
ଭୂମନ୍ୟୁ ରଥର ପୁତ୍ର ନାମ ଶମ୍ଭୁ ମନୁ
ବିରଥ ବୋଲିକରି ଯେ ହେଲା ତାର ସୂନୁ ।
ବିରଥର ପୁତ୍ର ନାମ ହେଲା ଦଶରଥ
ଏହାଙ୍କର ପୁତ୍ର ହେଲା ଭାସ୍କର ସୁରଥ ।
ସୁରଥ ବାଲ୍ୟକାଳରୁ ଅଟଇ ଯେ ତପୀ
ରାଜା ହୋଇ ଦିଗ୍‌ବିଜୟ କରଇ ଯଦ୍ୟପି ।
ମାରଇ ଦୁଷ୍ଟ ଦାନବ ବଳବନ୍ତେ ସାଧି
ମହୀମଧ୍ୟେ ବୋଲାଇଲା ଏକ ମହାଯୋଦ୍ଧୀ ।
ବଡ଼ଇ ପ୍ରତାପୀ ଏହୁ ସିନ୍ଧୁ ଦେଶ ରାଜା
କୁବେର ସମାନେ ଧନ ଧର୍ମେ ପାଳେ ପ୍ରଜା ।
ଧାର୍ମିକ ବିବେକ ପୁଣି ସେ ପରମ ଯୋଗୀ
ଚଣ୍ଡାଳ ବଳଧ୍ୱଂସନ ବୀରଗର୍ବ ଗଞ୍ଜି ।
ଦଶସସ୍ର ରଥ ତୁଲେ ଦିଗ୍‌ବିଜୟ କରେ
ପଶି ନ ପାରନ୍ତି ଶତ୍ରୁ ତାହାଙ୍କ ସୀମାରେ ।
ଏହିପରି ସେହି ରାଜା ଦ୍ୱାପର ଯୁଗରେ
ତିନିସସ୍ର ବର୍ଷ ରାଜ୍ୟ କଲା ମଧ୍ୟପୁରେ ।
ସୁରଥ ରାଜାର ଭାର୍ଯ୍ୟା ନାମ ଯେ କାନ୍ତାନୀ
ଜୟଦ୍ରଥ ବିଷ୍ଣୁରଥ ହେଲେ ପୁତ୍ର ବେନି ।
ବିଷ୍ଣୁରଥ ଥିଲା କାଳଦମନର ତୁଲେ
ଗୋମତ ଯୁଦ୍ଧରେ ହଳୀ ତାହାଙ୍କୁ ବଧିଲେ ।
ସୁରଥ ରାଜାର ମନ୍ତ୍ରୀ ନାମ ଅନିରୁଦ୍ଧ
ଭୂତ ଭବିଷ୍ୟତଜ୍ଞାତା ଅଟେ ସର୍ବସିଦ୍ଧ ।
ସୁରଥ ମହାରାଜା ଯେ ବଡ଼ ଭାଗ୍ୟବନ୍ତ
ତାହାର ଥିଲେକ ନବସସ୍ର ଶତ ସୁତ ।
ରାଜା ହୋଇବାକୁ ଜୟଦ୍ରଥର ଯେ ସଧ
ଭାଳେ ମୁହିଁ ହୋଇଲିଣି ଆସି ଅତି ବୃଦ୍ଧ ।
ତୁଳମାସ କୃଷ୍ଣପକ୍ଷ ନବମୀର ତିଥି
ମଘା ନକ୍ଷତ୍ର ସେ ଦିନ ଭୃଗୁବାର ଯୁକ୍ତି ।
ବାୟବ୍ୟ ନାମେ କରଣ ଧୃତିନାମେ ଯୋଗ
ଜୟଦ୍ରଥ ଉଭା ହୋଇଅଛି ରାଜା ଆଗ ।
କୁମରକୁ ଦେଖିକରି ବୋଇଲେ ନୃପତି
ତୁଳ କୃଷ୍ଣ ଚତୁର୍ଦ୍ଦଶୀ ଦିନ ପିତୃ ତିଥି ।
ଶ୍ରାଦ୍ଧ ସେ ଦିନ ହୋଇବ ଆରେ ଜୟଦ୍ରଥ
ଗଣ୍ଡା ଏକ ମାରି ଆଣ ବୋଇଲେ ସୁରଥ ।
ଜୟଦ୍ରଥ ବୋଲେ ମୁଁ ନ ଚିହ୍ନେ ଗଣ୍ଡାଜୀବ
ସେ ବୋଇଲେ ଯାଉ ମନ୍ତ୍ରୀ ଚିହ୍ନାଇଣ ଦେବ
ଜୟଦ୍ରଥ ବୋଇଲାକ ଗଣ୍ଡା ନ ପାଇଲେ
ଶ୍ରାଦ୍ଧ ହୋଇବ କି ନାହିଁ ଆନ ଜୀବ ହେଲେ ।
ସୁରଥର ପୁରୋହିତ ବ୍ରାହ୍ମଣ ସୁଦେବ
ସେ ବୋଇଲା ବନେ ଯେବେ ଗଣ୍ଡା ନ ପାଇବ
ମୃଗ ବାହୁଟିଆ ଶଶା ହରିଣ ଶମ୍ବର
ଗୟଳ ଖୁରଙ୍ଗ ଆଉ ବଣର ଶୂକର ।
ଖୋଜି ଖୋଜି ନପାଇବୁ ଯେବେ ବନେ ହେରି
ଶ୍ରାଦ୍ଧ ବିଧାନ କରିବା ମୀନ ଛେଳି ମାରି ।
ଏ ସକଳ ନ ପାଇଲେ ଆଣ ଏକ ବାରହା
ପିତୃକାର୍ଯ୍ୟ ଶ୍ରାଦ୍ଧପାଇଁ ଯୋଗାଇବା ତାହା ।
ସୁରଥ ବୋଲେ ଏହାକି ଯୋଗାଇ ଯୁକତେ
ସୁଦେବ ବୋଇଲା ଦେବ ପିତୃକାର୍ଯ୍ୟ ଅର୍ଥେ ।
ସୁରଥ ବୋଇଲା ଯେବେ ଏମନ୍ତ ଅଟଇ
ପ୍ରତେ କରିବାକ ଦେଖା ଶାସ୍ତ୍ର ବାଟେ ନେଇ ।
ସୁଦେବ ପଣ୍ଡା ବୋଇଲା ସତ୍ୟଯୁଗ କଥା
ଶୁଣ ମହାରାଜା ପିତୃ କାର୍ଯ୍ୟର ବାରତା ।
ବିରଳାକ୍ଷ ଦେଶ ମନୋହର ନାମେ ବନ
ସରଯୂ ନାମେଣ ନଦୀତୀର ସନ୍ନିଧାନ ।
ମଣିକର୍ଣ୍ଣିକା ବୋଲିଣ ଅଛି ପର୍ବତେକ
ତା ଉପରେ ରୁଦ୍ରନାମେ ପଲ୍ଲୀ ଶବରଙ୍କ ।
ମେରୁତୃଷ୍ଣା ବୋଲି ଜରାଶବର ଯେ ଯୋଧୀ
ଜଇନ୍ତା ବ୍ୟାଧର ପୁତ୍ର ହିରଣ୍ୟପରାଧି ।

ସେ ବ୍ୟାଧର ଉପୁଜିଲା ଦୁଇଗୋଟି ସୂନୁ
ଏକଇ ନାମ ହିରଣ୍ୟ ଆର ନାମ ହନୁ ।
ହନୁ ନାମ ବ୍ୟାଧର ଯେ ସାତୋଟି ନନ୍ଦନ
ଏକୁ ଏକଙ୍କର ନାମ ଅଟେ ଅନୁପମ ।
ତନୁ ସୁରତି ଆବର ଭାନୁ ସୁରକ୍ଷିତି
ରତି ମୂରତି ଏସନ ସପତ ସନ୍ତତି ।
ପିତୃ ତିଥିରେ ବସାଇ ସେହି ସାତ ସୂନୁ
ଗଣ୍ଡାମାରି ଆଣ ବୋଲି ଆଜ୍ଞା ଦେଲା ହନୁ ।
ପିତାର ଆଜ୍ଞାରେ କର ନିବେଶିଣ ଶିରେ
ସପତ ବ୍ୟାଧ ପଶିଲେ ଅରଣ୍ୟ ଭିତରେ ।
ଗଣ୍ଡା ବାହୁଟିଆ ଆଦି ଯେତେ ଜନ୍ତୁ ଅଛି
ମୃଗ ଶମ୍ବର ସହିତେ ନ ପାଇଲେ କିଛି ।
ନ ପାଇଲେ ଦିବାରାତ୍ରେ ଲୋଡ଼ି ହନୁ ପୋଏ
ବାହୁଡ଼ି ଆସନ୍ତେ ପଥେ ଦେଖି ଷଣ୍ଢଟିଏ ।
ରତିନାମେ ବ୍ୟାଧ ବୋଲେ ଫେରିଗଲେ ଆଜ
ଆମ୍ଭ ଶବର ବଂଶକୁ ହେବ ବଡ଼ ଲାଜ ।
ଏ ଷଣ୍ଢ ଗୋଟାକୁ ମାରି କାର୍ଯ୍ୟ ଚଳାଇବା
ଚର୍ମ ପକାଇ ଏହାର ମାଂସ ଘେନିଯିବା ।
ନ କହିବ ପିତାଆଗେ ଏହି ଯେ ଗୋ ମାଂସ
ଏହା ଘେନି ପିତା ପିତୃକାର୍ଯ୍ୟ କରୁ ଶେଷ ।
ଏହିପରି ଭାବି ବ୍ୟାଧେ ଏକ ମନ ହୋଇ
ଷଣ୍ଢକୁ ବିନ୍ଧିଲେ ସର୍ବେ ନାରାଚ ପୁରାଇ ।
ମାରିଣ ଷଣ୍ଢକୁ ତାର କେଳାଇଲେ ମାଂସ
ସାତ ପୁତ୍ରଯାକ ଆଣି ଦେଲେ ପିତା ପାଶ ।
ଯତନ କରି ଶବର ଥୋଇଲା ତା ପଲ୍ଲୀ
ପିତୃଗଣଙ୍କୁ ବାଢ଼ିଲା ଗଣ୍ଡାମାଂସ ବୋଲି ।
ତାର ପଲ୍ଲୀ ନିକଟରେ ଥିଲେ ଯେତେ ବ୍ୟାଧ
ପିତୃଶ୍ରାଦ୍ଧେ ତାର ଘରେ ଖାଇହେଲେ ବୋଧ
କାଳବଶେ ସାତଜଣ ପାଆନ୍ତେ ମରଣ
ଦୂତମାନେ ନେଇଗଲେ ଯମର ଭୁବନ ।
ଦେଖି ଚିତ୍ରଗୁପ୍ତ ବୋଲେ ଯାଙ୍କୁ ଧରି ନିଅ
ବଧ କରିଛନ୍ତି ଷଣ୍ଢ ନରକେ ପକାଅ ।
ଚିତ୍ରଗୁପ୍ତ ଏହିପରି ଦୂତଙ୍କୁ କହନ୍ତେ
ଧରମ ଦେବତା ତାଙ୍କୁ ବୋଇଲେ ଏମନ୍ତେ ।
ନୁହନ୍ତି ଏ ଦୋଷୀ ଛାଡ଼ିଦିଅ ସପ୍ତବ୍ୟାଧ
ପିତୃକାର୍ଯ୍ୟ ଅର୍ଥେ ଏହି କଲେ ଷଣ୍ଢବଧ ।
ଏମନ୍ତ ଶୁଣିଣ ଦୂତେ ତାଙ୍କୁ ଛାଡ଼ି ଦେଲେ
ଯମ ତାଙ୍କୁ ତାରାଗଣେ ନେଇ ବସାଇଲେ ।
ଏ ସପ୍ତ ବ୍ୟାଧଙ୍କ ମାତା ନାମ ଯେ ହରିତା
ଗୋମାଂସ ରାନ୍ଧି ବାଢ଼ିଲା ହୋଇଣ ଅଜ୍ଞାତା

ସେ ଏକ ନକ୍ଷତ୍ର ହୋଇ ଉଦେ ହେଲା ସ୍ୱର୍ଗେ
ପିତୃକାର୍ଯ୍ୟ ଫଳଶ୍ରୁତି କହିଲୁ ତୋ ଆଗେ ।
ପୁରୋହିତଙ୍କ ବଚନ ଜୟଦ୍ରଥ ଶୁଣି
ଅରଣ୍ୟକୁ ଗଲା ସେହି ମନ୍ତ୍ରୀ ସଙ୍ଗେ ଘେନି ।
ଗଣ୍ଡାଜୀବ ଲୋଡ଼ି ଲୋଡ଼ି ନ ପାଇଲା କାହିଁ
ଏଣେତେଣେ ବୁଲି ବୁଲି ବହୁଶ୍ରମ ପାଇ ।
ବସିଲେ ସେ ଦୁହେଁ ଯାଇ ନିମ୍ବ ବୃକ୍ଷତଳ
ସେହିଠାରେ ଜୟଦ୍ରଥ ଧରି ମନ୍ତ୍ରୀବାଳ ।
ବାମହସ୍ତେ କେଶ ଦକ୍ଷକରେ ଖଡ୍ଗ ଧରି
ବୋଇଲା ଇଷ୍ଟଦେବତା ସୁମର ତୋହରି ।
ମନ୍ତ୍ରୀ ବୋଇଲେକ ମୁହିଁ କଲି କେଉଁ ଦୋଷ
ତୋର ଶରଣ ମୋତେ ନ କର ପ୍ରାଣେ ନାଶ
ଜୟଦ୍ରଥ ବୋଇଲା ମୁଁ ହେଉଅଛି ବୃଦ୍ଧ
ବଳ ବପୁକାଳେ ରାଜପଣ କରି ସଧ ।
ତୁ ମନ୍ତ୍ରୀ ପଣ୍ଡିତ ଜାଣୁ ଭୂତ ଭବିଷ୍ୟତ
କିମ୍ପା ବିଚାରି ମୋତେ ନ କଲୁ ନୃପନାଥ ।
ମନ୍ତ୍ରୀ ସତ୍ୟକରି ବୋଲେ ଛାଡ଼ ବାଳ ମୋର
ରାଜା ହେବାପାଇଁ ଯେବେ ଇଚ୍ଛା ଥିଲା ତୋର
ଏ କଥା ଆଗହୁଁ ମୋତେ କହିଥିଲେ ତୁହି
କେତେଦିନରୁ ରାଜ୍ୟରେ ଥାନ୍ତୁ ରାଜାହୋଇ
ହେଉ ରାଜାପଣେ ମନ ବଳାଇଲୁ ଯେବେ
ରାଜାଙ୍କୁ ହାଣିଣ ତୋତେ ରାଜ୍ୟଦେବି ଏବେ
ମନ୍ତ୍ରୀ ବାକ୍ୟେ ଜୟଦ୍ରଥ କୋପ ସଂହରିଲା
ତହିଁ ମନ୍ତ୍ରୀକି ଘେନିଣ ପୁରେ ପ୍ରବେଶିଲା ।
ମନ୍ତ୍ରୀକି ହକାରି ପୁଚ୍ଛା କରିଲା ସୁରଥ
ବେଣ୍ଟ ବିନୋଦେ ମୋ ପୁତ୍ର କେଡ଼େ ସାମରଥ
ମନ୍ତ୍ରୀ ବୋଲେ ବନେ ଗଣ୍ଡା ନ ପାଇଲୁ କାହିଁ
ବେଣ୍ଟବିନୋଦର କଥା କି କହିବି ମୁହିଁ ।
ମନ୍ତ୍ରୀର ବଚନ ଶୁଣି ସୁରଥ କହଇ
ଗଣ୍ଡା ବିନା ଆନ ଜୀବ ନ ଥିଲେ କି ତହିଁ ।
ରାଜା କଥା ଶୁଣି ମନ୍ତ୍ରୀ କହେ କରି କ୍ରୋଧ
ଗଣ୍ଡା ନ ପାଇଲୁ ଆନଜୀବେ କିସ ସଧ ।
ପୁଣି ମନ୍ତ୍ରୀ ବୋଲେ ତୋର ପୁତ୍ର ହୁଏ ବୃଦ୍ଧ
ତୋତେ କହି ନ ପାରେ ସେ ରାଜ୍ୟେ ତାର ଶ୍ରଦ୍ଧ
ଜୟଦ୍ରଥେ ରାଜାକରି ହୁଅ ତୀର୍ଥବାସୀ
ମୁହିଁ କିସ ଅରଜିବି ତୋ ପ୍ରାଣ ବିନାଶି ।
ସକଳ ବିଷୟ ମନ୍ତ୍ରୀ କହିଲା ଏକାନ୍ତେ
ସମୟେକ ବଞ୍ଚ ଯାଇ ଆୟୁ ଅଛି ଯେତେ ।
ରାଜାକୁ ଘେନିଣ ମନ୍ତ୍ରୀ ଚଳିଲା ନିଶାରେ
ରାଜ୍ୟ ଛାଡ଼ି ପଶିଲାକ କ୍ରିୟା ମଣ୍ଡଳରେ ।

ସମସ୍ତ ତ୍ୟାଗ କରିଣ ଚଳିଲା ସୁରଥ
ପ୍ରାଣ ବିକଳେ ପଶିଲା ଭଦ୍ରାଙ୍କୁର ତୀର୍ଥ ।
ମୁନି କହିଲେ ରାଜନ ଶୁଣ ମନଦେଇ
ଜୟଦ୍ରଥ ଭୟେ ତପ ତା ପିତା କରଇ ।
ଯଦି ଜୟଦ୍ରଥ ଆସି ହେବ ମୋର ପାଶେ
ମୁଖ ନ ଚାହିଁବି ତାର ଭାଳିଣ ମାନସେ ।
ଚକ୍ଷୁ ବୁଜି ପ୍ରଭୁ ଧାୟି ନିରାଶେ ବସିଲା
ଏହି ପରକାରେ ତହିଁ କିଛିଦିନ ଗଲା ।
ଦିନେ ଭାଳେ ଉପବାସେ ମୋ ଦେହ ଜଳଇ
ପୁତ୍ର ରାଜା ହୋଇ ତେଣେ ଐଶ୍ୱର୍ଯ୍ୟ ଭୁଞ୍ଜଇ ।
ଉପବାସେ ଦେହ ଦଗ୍ଧ ହେଉଛି ମୋର
ମୋ ଯୋଗେ ଜୟଦ୍ରଥର ନ ତୁଟେ ଶରୀର ।
ସୁରଥ ଏପରି ମନେ ଭାବିବା ବେଳରେ
ଜୟଦ୍ରଥ ମୁଣ୍ଡ ପଡ଼େ କର ଅଞ୍ଜଳିରେ ।
ଭସ୍ମ ହେଉ ବୋଲି ଦେଖି ଛାଡ଼ିଲା ଅଞ୍ଜଳି
ଜୟଦ୍ରଥର ମସ୍ତକ ତହିଁ ଗଲା ଜଳି ।
ଜୟ କାତ୍ୟାୟିନୀ ମାଗୋ ଶ୍ରୀସର୍ବ ମଙ୍ଗଳେ
ମନ୍ଦାର ମାଳା ଲମ୍ବଇ ତୋର ବକ୍ଷସ୍ଥଳେ ।
ଜୟ ଜୟ ମାହେଶ୍ୱରୀ ପ୍ରସନ୍ନ ବଦନି
ଶରଣ୍ୟ ତ୍ର୍ୟମ୍ବକେ ଗୌରୀ ନମୋନାରାୟଣୀ
ଶଇଳନନ୍ଦିନୀ ମାଗୋ ଅଟୁ ବାରାନିଧି
ଯାହାରେ ପ୍ରସନ୍ନ ହେଉ ତାର ସର୍ବସିଦ୍ଧି ।
ନର ମୁଣ୍ଡମାଳ ମାଗୋ ବିକାଶଇ ହୃଦେ
ପ୍ରସନ୍ନ ହୁଅ ତୁ ମୋତେ ସଦୟ ସାନନ୍ଦେ ।
କାମନା ପୂରଣ କର ତୁହି ମା କାମାକ୍ଷୀ
ଛାୟାରୂପରେ ବିହାର କରୁ ସଫଳାକ୍ଷି ।
ନିରାକାର ନିର୍ବିକାରରୂପିଣୀ ତୁ ମାତ
କ୍ଷଣେ କରୁ ମହାକୋପ କ୍ଷଣେ ହେଉ ଶାନ୍ତ ।
ସମ୍ପତ୍ତି ବଢ଼ଇ ମାତ ତୋର ପରସାଦେ
ମହାଭାରତ କହୁଛି ବସ ମମ ହୃଦେ ।
ଏତିକି କହୁଛି ମାତ ପୂରାଅ ମୋ ଆଶ
କହଇ ଯେ ଶୂଦ୍ରମୁନି ଶ୍ରୀ ଶାରଳା ଦାସ ।



## ରାତ୍ରି ଗୋଳଯୁଦ୍ଧେ ଦ୍ରୁପଦ ରାଜାର ମୃତ୍ୟୁ

ମନୁରାଜା ପୁଚ୍ଛାକଲେ ପୁଣି ଅଗସ୍ତିଙ୍କି
ଜୟଦ୍ରଥ ବଧ ହେଲା ହୋଇଲାକ ରାତି ।
କାଶୀରଥ ଦାଶରଥ ହରିରଥ ତିନି
ପାଣ୍ଡବଙ୍କୁ ଓଗାଳିଲେ ସସ୍ରେରଥୀ ଘେନି ।
ସାତ୍ୟକି ଭୀମ ସମରେ ଅତି ଅନର୍ଗଳ
ସୈନ୍ୟ ଦେଖି ଭେଟିଲେ ସେ କ୍ଷତ୍ରୀ ମହାବଳ
ବୀରଙ୍କ ଷଣ୍ଢ ଭାରୋଇମଲ୍ଲ ସେହୁ ଦୁଇ
ବିଶ୍ୱରୂପ ବିକାଶିଲେ ମାରିବାର ପାଇଁ ।
ବିଶେଷରେ ନିଶାକାଳ ଦିବାଯୁଦ୍ଧ ଶ୍ରମି
ରଣରଙ୍ଗା ବୃକୋଦର ସମରରେ ଭ୍ରମି ।
କଉରବଙ୍କର ସୈନ୍ୟ ବହୁତ ଗହଳ
ଭୀମ ସାତ୍ୟକି ମାରନ୍ତେ ଉଠିଲା ଚହଳ ।
ପଡ଼ିଲେ ଏଗାରକ୍ଷୌଣୀ ରକ୍ତ ହେଲା ବୃଷ୍ଟି
ଯେତେ ସୈନ୍ୟଥିଲେ ସବୁ ପାର୍ଥ ଦେଲେ କାଟି
ବାରଣ ନ ହେଲା ସୈନ୍ୟ ପର କି ଆପଣେ
ଦୁର୍ଯ୍ୟୋଧନର ଅଗ୍ରତେ କହନ୍ତି ଯେ ଦ୍ରୋଣେ
ଥାଟ ଘୁଞ୍ଚାଅ ନୋହିବ ଆମ୍ଭ କିଛି ଯଶ
ଏ ରଜନୀ ଅନ୍ତେ ରହୁଁ ହୋଇବ ଦିବସ ।
ବ୍ୟୂହ ଏକ ଭିଆଇବି ମାୟାର କୁଣ୍ଡଳୀ
ଭେଦି ନ ପାରିବେ ତାକୁ ବ୍ରହ୍ମା ଇନ୍ଦ୍ର ଭଳି ।
ଶୁଣି ହସିଲେ ଶକୁନି ଶଲ୍ୟ କୃପ ବ୍ରହ୍ମା
କର୍ଣ୍ଣ ଆଉ ଦୁଃଶାସନ ଦୁର୍ଜ୍ଜୟ ଦୁରାତ୍ମା ।
ଶକୁନି ବୋଲେ ଭ୍ୟାଇଲ ତୁମ୍ଭେ ଚକ୍ରବ୍ୟୂହ
ବହୁଯୋଦ୍ଧା ମରାଇଲ ଲାଜନାହିଁ କହ ।
ପୁଣି କୌଶଳେ ଶକଟ ବ୍ୟୂହଟିଏ କଲ
ତହିଁରେ ପଡ଼ିଲେ ଏକାଦଶ କ୍ଷୌଣୀ ବଳ ।
କିସ ଅବା କୌରବଙ୍କୁ ଉପ୍ରୋଧ ତୁମ୍ଭର
ସମରେ ନିଜେ ପଡ଼ିଲେ ସିନ୍ଧୁ ନରବର ।
କୃପ ବୋଇଲେ ପଳାଇଯାଅ ଜୟଦ୍ରଥ
ଦେଶାନ୍ତରେ ରହ ହୋଇ ସମରରୁ କ୍ଷାନ୍ତ ।
ପ୍ରାଣ ରଖିଥାନ୍ତା ଅନ୍ୟ ଦେଶରେ ସେ ପଶି
ଏ ମହାତ୍ମା ରଖାଇଲେ ତାହାକୁ ଆଶ୍ୱାସି ।
ତୋର ବଚନେ ସମସ୍ତେ କରିଲୁ ଭରସା
ରହିଣ ସିନ୍ଧୁ ରାଜନ ହୋଇଲା ନିରାଶା ।
ପ୍ରଥମ ଦୁଆରେ ଥିଲୁ ଆପଣେ ଆବୋରି
ଅର୍ଜ୍ଜୁନକୁ ଦେଖି ତୁହି ଗଲୁ ଅପସରି ।
ଆହେ ଦ୍ରୋଣ ସାତ୍ୟକି ଯେ ଅଟେ ଯେଉଁଯୋଧି
ତାହାକୁ ନ ପାରିଲୁ ତୁ ଦୁଆର ନିରୋଧି ।
ସେ ପୁଣି ବ୍ୟୂହ ଭେଦିଲା ଯୁଦ୍ଧେ ତୋତେ ଜିଣି
ଏକା ଭୀମ ଧସାଇଣ ପଶିଲାକ ପୁଣି ।
ଚାରିପାଣ୍ଡବେ ଯେବେଟି ହୋଇଥାନ୍ତେ ମେଳ
ଆଜିରେ ସମସ୍ତଙ୍କର ପୂରିଥାନ୍ତା କାଳ ।
ଆହେ ଦ୍ରୋଣ ଜୟଦ୍ରଥ ପ୍ରାଣେ ହେଲା ନଷ୍ଟ
ତୋହର ମୁଣ୍ଡେ ପଡ଼ିଲା ଦୁଃଶୀଳା କଷ୍ଟ ।

ବିଶ୍ୱାସଘାତକ ପୁଣ କଲୁ ଦ୍ରୋଣଗୁରୁ
ପଳାଇ ଗଲେ ବର୍ତ୍ତିବା ତୋହର ସଙ୍ଗରୁ ।
ହେ ଗୁରୁ ବିଶ୍ୱାସଘାତୀ ଅଟେ ଯେଉଁ ଜନ
ଜୀବନେ ଅକୀର୍ତ୍ତି ମଲେ ନରକେ ପତନ ।
ଧିକ ଜୀବନ ତୋହର ଆଉ କଥା କହୁ
ଦୁଇବଳ ମଧ୍ୟେ ପଶି ଲଜ୍ଜା ଯେ ନ ପାଉ ।
କୃପ ବୋଲେ କେହ୍ନେ ମୁଖ ଦେଖାଉଛୁ ଦ୍ରୋଣ
ମୂର୍ଦ୍ଧନା ଫାଟି ନ ଯାଇ ରହିଛି ତୋ ପ୍ରାଣ ।
କ୍ଷଣକେ ବର୍ତ୍ତିବା ଧିକ ହୋଇ ମାନଭଙ୍ଗ
ପଳା ଯା ଦ୍ରୋଣ ନ ରହ କୌରବଙ୍କ ସଙ୍ଗ ।
ଆହେ ଚଇତନ ମାନଗୋବିନ୍ଦ କ୍ରୋଧରେ
ଜୟଦ୍ରଥକୁ ସୁମରେ କର ମାରି ଶିରେ ।
ଦ୍ରୋଣକୁ ବହୁ ଝିଙ୍ଗାସ କୃପ କଲେ ଯହୁଁ
ରାଗରେ ଦ୍ରୋଣ ଉଠିଲେ ଶିର ଝୁଣି ତହୁଁ ।
କାଳଚକ୍ର ପ୍ରାୟ ବେନି ଡୋଳାକୁ ବୁଲାଇ
ଧାଡିକାରେ କୃପ ବାଳ ଧଇଲେତ ଯାଇଁ ।
ବୁଲାଇ କୃପାଣ ଦ୍ୟନ୍ତେ ଅଧରକୁ ଚାପି
ବୋଇଲେକ ତୋତେ ରକ୍ଷାକରୁ କେ ଅଦ୍ୟାପି
ତାଙ୍କ ହସ୍ତକୁ ଧଇଲେ ଯାଇ ଅଶ୍ୱତ୍ଥାମା
ବୋଇଲେ ନ ମାର ବିପ୍ର ଅଟେ କୃପବ୍ରହ୍ମା ।
ଦୁର୍ଯ୍ୟୋଧନ ବୋଲେ ଯାଇ ଦ୍ରୋଣ କର ଧରି
ଶତ୍ରୁକୁ ଜିଣି ନ ପାରି ନିଜେ ମରାମରି ।
ରାଜାର ବଚନେ ଛାଡ଼ିଦେଲେ ତାର କେଶ
ରଣରଙ୍ଗ ଦେଖିବାକୁ ମୋର ତୁଲେ ଆସ ।
କରିବି ସମର ମୁଁ ଯେ ଏ ନିଶାର ମଧ୍ୟେ
ପାଣ୍ଡବଙ୍କୁ ବିନାଶିବି ନିଶ୍ଚେ ଏହି ଯୁଦ୍ଧେ ।
ଯୁଧିଷ୍ଠି ଭୀମ ନକୁଳ ସହଦେବ ପାର୍ଥ
ମାରି ନ ପାରିଲେ ପ୍ରାତେ ମରିବି ମୁଁ ସତ୍ୟ ।
କୃପ ବୋଇଲେ ସମସ୍ତ କଥା ଅଟେ ମିଛ
ମରଣ କଥାଟି ସତ୍ୟ ଜାଣୁଛି ପ୍ରତ୍ୟକ୍ଷ ।
ସାଜନ୍ତେଣ ସମଦଣ୍ଡ ସେନାପତି ଦ୍ରୋଣ
ରହବୋଲି ଡାକ ଦେଲେ ସେ କୃପ ବ୍ରାହ୍ମଣ ।
କୃପର ବଚନ ଶୁଣି ରହିଲେକ ସେନା
ବୋଲେ ଏକା ଭୀମ ବଳ ନୁହଇ କଳନା ।
ଶକୁନି ବୋଲେ ଯାଇଣ ସମର କରିବା
ଅନ୍ଧକାରେ ପାଣ୍ଡବଙ୍କୁ କିପରି ପାଇବା ।
ଶକୁନି ବଚନ ଶୁଣି ଭରଦ୍ୱାଜ ଶିଷି
ଲଗାନ୍ତେଣ ଗଜହୁଳା ଅନ୍ଧାର ବିନାଶି ।
ଗଜକେ ପଞ୍ଚାଶ ହୁଳା ଅଶ୍ୱେ ପଞ୍ଚବିଂଶ
ତିମିର ଫାଟି ଦିଶିଲା ଦିବସ ସଦୃଶ ।

ଦ୍ରୋଣଗୁରୁ ଉଠିଲେକ ଶୁଭଖମ୍ଭ ପରେ
ଆରେ ରେ ପାଣ୍ଡବ ବୋଲି ଡାକିଲେ ପଛରେ
ଶୁଣି ଯୁଧିଷ୍ଠି ନକୁଳ ସହଦେବ ଭୀମ
ଶିଖଣ୍ଡୀ ଧୃଷ୍ଟଦ୍ୟୁମନ ତୁଲେ ସର୍ବସୈନ୍ୟ ।
ଧାମନ୍ତି ପାଣ୍ଡବବଳ ସଂଗ୍ରାମ ମଣ୍ଡଳେ
ଦ୍ରୋଣଗୁରୁଙ୍କର ଡାକ ଶୁଣି କର୍ଣ୍ଣେ ବିଳେ ।
ଦ୍ରୁପଦ ବୋଲେ କୌରବ ଥାଟେ ଶୁଭେ ଧ୍ୱନି
ସମରରେ ବିଅର୍ଥ କି ହେଲା ଫାଲଗୁନି ।
ଜୟଦ୍ରଥ ତିନିଭ୍ରାତ ସସ୍ତ୍ରରଥୀ ତୁଲେ
ଭୀମ ସାତ୍ୟକି ଯାଇଣ ପଥେ ଓଗାଳିଲେ ।
ବୃକୋଦର ଗଦାବର ଧରି ମହାବଳେ
ରଥ ଗଜ ଅଶ୍ୱପରେ ପିଟିଲେ ସବଳେ ।
ଗ୍ରହ ବିବାଦେ ପ୍ରୟାଣ କରେ ଯେହ୍ନେ ରାହୁ
କଚାଡ଼ଇ ଗଜ ରଥ ଭୀମ ମହାବାହୁ ।
ରଣରଙ୍ଗେ ଧନ୍ଦୋଳ ସେ ଭୀମ ବୀରବର
ଗଦାଘାତେ ରଥ ଗଜ କରିଦ୍ୟନ୍ତି ଚୂର ।
ହରିରଥ ଦାସରଥ କାଶୀରଥ ତିନି
ଭୀମତୁଲେ ରଣକଲେ ଗଦାଯୁଧ ଘେନି ।
ଶର ଗଦା ଖଡ଼୍ଗ ଅସି ଘେନି ଦାସରଥ
ଭୀମକୁ ପ୍ରହାର କଲା ହୋଇ କୋପଚିତ୍ତ ।
ଦେଖି ମାରୁତି ପାତିଲେ ନିଜ ବାମଅଙ୍ଗ
ଭାଜିଯାନ୍ତେ ସର୍ବଶସ୍ତ୍ର ରଣେ ଦେଲା ଭଙ୍ଗ ।
ରେରେକାର ଶବଦକୁ କରିଣ ମାରୁତି
ହରିନାଥ ପରେ ଗଦା ପିଟିଲେକ ଧାଡି ।
ଗଦା ପିଟନ୍ତେ ଫାଟିଲା ତାର ବଜ୍ରସେହ୍ନା
ରଥସହ ତାହା ଦେହ ହୋଇଗଲା ଚୁନା ।
ହରିରଥର ମରଣେ କାଶୀରଥ ବେଗେ
ଗଦାଘେନି ପିଟିଲେକ ଭୀମସେନ ଅଙ୍ଗେ ।
ଗଦା ପିଟନ୍ତେ ଧଇଲା ବୀର ବୃକୋଦର
ସେହି ଗଦାକୁ ପିଟିଲା କାଶୀରଥ ପର ।
ଗଦା ପଡ଼ନ୍ତେ କାଶୀର କମ୍ପିଲା ଯେ ପିଣ୍ଡ
ତଳେ ପଡ଼ି କାଶୀର ଯେ ଚୂର୍ଣ୍ଣ ଗଣ୍ଡି ମୁଣ୍ଡ ।
କାଶୀରଥର ମରଣେ ରାଗେ ଶିରଝୁଣି
ଦାସରଥ ଗଦା ଭୀମେ ପ୍ରହାରିଲା ପୁଣି ।
ବାମମହସ୍ତ ପାତି ଭୀମ ଉଛୁଳିଲା ଗଦା
ତାର ସୈନ୍ୟକୁ ପିଟିଣ କରିଦେଲା ପଦା ।
ଦାସରଥକୁ ପିଟିଣ କରିଲା ନିଧନ
ନୃସିଂହପ୍ରାୟ ଗର୍ଜ୍ଜିଇ ବୀରବର ଭୀମ ।
ତିନିଙ୍କି ମାରିଣ ଭୀମ ନୋହିଲାକ ଶାନ୍ତି
ଗଦା ପ୍ରହାରି ନାଶିଲା ଦଶସସ୍ର ରଥୀ ।

ସିନ୍ଧୁ ରାଜାର ଥିଲେକ ଯେତେ ବନ୍ଧୁବର୍ଗ
ସାତ୍ୟକିର ପ୍ରହାରରେ ସର୍ବେ ଗଲେ ସ୍ୱର୍ଗ ।
ଦ୍ରୋଣ ଆଜ୍ଞା ଦେଲେ ସନ୍ନିଧକୁ ରାଇ କର୍ଣ୍ଣ
ନବସସ୍ର ରଥୀ ତୁଲେ ପାଞ୍ଚକ୍ଷୌଣୀ ସୈନ୍ୟ ।
ଲକ୍ଷେକ କ୍ଷଉଣୀ ହସ୍ତୀ ଲକ୍ଷେକ୍ଷୌଣୀ ଅଶ୍ୱ
ଏତେକ ଘେନିଣ କର୍ଣ୍ଣ ଥିବୁ ମୋର ପାଶ ।
ପାଣ୍ଡବଙ୍କ ସଙ୍ଗେ ଆମ୍ଭେ ଭେଟାଭେଟି ହେଲେ
ଯୁଦ୍ଧ କରିବୁ ଶିଖଣ୍ଡୀ ଦ୍ରୁପଦର ତୁଲେ ।
ପାଞ୍ଚସସ୍ର ରାଜା ଆଉ ପାଞ୍ଚସସ୍ର ରଥୀ
ବୃନ୍ଦେ ଯୋଦ୍ଧା ବୃନ୍ଦେ ଅଶ୍ୱ ତିନିଲକ୍ଷ ହସ୍ତୀ ।
ଏତେ ବଳ ଘେନି ତୁହୋ ମହାରଥୀ ଶଲ୍ୟ
ସମର କରିବୁ ଯାଇ ଦୁର୍ଦ୍ଦକ୍ଷର ତୁଲ ।
ତିନି ଅୟୁତ ଯେ ହସ୍ତୀ ଅୟୁତେକ ରଥୀ
ସାତକୋଟି ଅଶ୍ୱାରୋହୀ କ୍ଷୌଣୀଏ ପଦାତି
ଏତେକ ସଇନ୍ୟ କୃପ ଆଚାର୍ଯ୍ୟ ଘେନିବ
ଧୃଷ୍ଟଦ୍ୟୁମନର ତୁଲେ ସମର କରିବ ।
ଅର୍ବୁଦେକ ରଥ ବେନି ଅର୍ବୁଦ ଯେ ନାଗ
ଚାରିପରାର୍ଦ୍ଧ ପଦାତି ପରାର୍ଦ୍ଧେ ତୁରଙ୍ଗ ।
ଏତେ ସୈନ୍ୟ ତୁଲେ ବାଲମୀକ ମହାରଥୀ
ସାତ୍ୟକି ତୁଲେ ସମର କରିବ ସବୁନ୍ତି ।
ଅୟୁତେକ ରଥ ବେନି ଅୟୁତ ଯେ ହସ୍ତୀ
ଚାରିସସ୍ର ଅଶ୍ୱାରୋହୀ ଅୟୁତେ ପଦାତି ।
ଦ୍ରୋଣାଚାର୍ଯ୍ୟ ଆଜ୍ଞାଦେଲେ ଏତେ ସୈନ୍ୟଘେନି
ସହଦେବ ତୁଲେ ରଣ କରିବ ଶକୁନି ।
ହେ ଚୈତନ୍ୟ ବୃନ୍ଦେ ରଥ ବେନିବୃନ୍ଦ ହସ୍ତୀ
ଚାରିବୃନ୍ଦ ଅଶ୍ୱ ତିନି ସାଗର ପଦାତି ।
ଏତେକ ସୈନ୍ୟ ଘେନିଣ ବୀର ଦୁଃଶାସନ
ଭୀମସେନ ସଙ୍ଗତରେ କରିବ ଯେ ରଣ ।
ଏକ କ୍ଷୌଣୀ ଯୋଦ୍ଧା ଘେନି ଦୁର୍ମଦ ଯେ ଯିବ
ନକୁଳର ସହିତରେ ସମର କରିବ ।
ଶଙ୍ଖେ ରଥାରୋହୀ ବେନି ଶଙ୍ଖେକ ପଦାତି
ଚାରି ଶଙ୍ଖ ଅଶ୍ୱାରୋହୀ ବେନି ଶଙ୍ଖ ହସ୍ତୀ ।
ଏତେକ ସୈନ୍ୟ ଘେନିଣ ବୀର ଅଳମ୍ବୁଷ
ସମର କରିବ ଘଟଉତ୍କଚର ପାଶ ।
ବେନି ଅୟୁତେକ ଯୋଦ୍ଧା ଅଳାୟୁଧେ ଦେଲେ
ବିରାଟ ସହିତ ଯୁଦ୍ଧ କରିବୁ ବୋଇଲେ ।
ପଞ୍ଚାଶ ସାଗର ହସ୍ତୀ ତିନିକ୍ଷୌଣୀ ରଥୀ
ସାଗରେ ଅଶ୍ୱାରୋହୀ ଯେ ସାଗରେ ପଦାତି
ଏତେକ ସୈନ୍ୟ ଘେନିଣ ଦୁର୍ଯ୍ୟୋଧନ ଯିବ
ଯୁଧିଷ୍ଠିର ସହିତରେ ସମର କରିବ ।
ସୈନ୍ୟବାଣ୍ଟି ଅଶୀପଦ୍ମ ଯୋଦ୍ଧା ଗୁରୁଦ୍ରୋଣେ
ପାର୍ଥ ସଙ୍ଗେ ଯୁଝିବାକୁ ରଖିଲେ ଆପଣେ ।
ଏରୂପେ ସବୁଙ୍କୁ ସୈନ୍ୟ ବାଣ୍ଟିକରି ଦେଲେ
ଦୁଃସହ ପ୍ରତିଜ୍ଞା କରି ରଥରେ ବସିଲେ ।
ବାଜିଲା ଯେ ବିଜିଘୋଷ ଟମକ ଦାଉଣ୍ଡି
ସର୍ବଯୋଦ୍ଧା ଯେ ଯାହାର ରଥ ଯାଇ ମଣ୍ଡି ।
ଯୁଧିଷ୍ଠି ବୋଇଲେ କିଛି ନ ମିଳେ ଉଦନ୍ତ
ପୁଣି ଶୁଣିଲେ ରଣରେ ହତ ଜୟଦ୍ରଥ ।
ତହୁଁ ତାହାଙ୍କର ଫିଟିଗଲା ମନେ ଭ୍ରାନ୍ତି
ବୋଇଲେ ପ୍ରତିଜ୍ଞା ସିଦ୍ଧ କରିଲେ ଶ୍ରୀପତି ।
ଶ୍ରୀକୃଷ୍ଣ ପାର୍ଥ ସାତ୍ୟକି ଆଉ ଭୀମସେନ
ସିଂହ ରଡ଼ିରେ କମ୍ପାଇ ଦେଲେ ଯୁଦ୍ଧସ୍ଥାନ ।
ହରି ବୋଇଲେ କି ବୁଦ୍ଧି କରିବା ହେ ପାର୍ଥ
ପ୍ରତିଜ୍ଞା ରକ୍ଷା କରିଲୁ ମାରି ଜୟଦ୍ରଥ ।
ଏବେ ଯିବା ଚାଲ ଇନ୍ଦ୍ରପ୍ରଶସ୍ତ ଗ୍ରାମକୁ
ପ୍ରଭାତ ହେଲେ ଆସିବା ରଣ କରିବାକୁ ।
କାଲି ପ୍ରଭାତେ ଆସିବା ଦଣ୍ଡବଳ ଘେନି
କି ରଣ କରିବା ଆଉ ହେଲାଣି ରଜନୀ
ଯିବା ଇନ୍ଦ୍ରପ୍ରସ୍ଥେ ଏବେ ସମର ରୁହାଅ
ଏହା ଶୁଣି କମ୍ପିଲା ଯେ ବୃକୋଦର ଦେହ ।
ଗୋବିନ୍ଦ ବୋଇଲେ ରହ ରହ ବୃକୋଦର
ଚାଲ ଇନ୍ଦ୍ରପ୍ରସ୍ଥେ ଯିବା ନ କର ସମର ।
ଭୀମ କହିଲେକ ଶୁଣ ପ୍ରଭୁ ଦେବରାଜ
ରଥେ ବସି ରାତ୍ର ଯୁଦ୍ଧ ଦେଖ ମୋର ଆଜ ।
କେବଳ ସହାୟ ମୋତେ ହୋଇଥିବ ହରି
ମାରିବି କୌରବବଳ ନ ପାହୁଁ ଶର୍ବରୀ ।
ବିଜେକର ଅର୍ଜ୍ଜୁନକୁ ଘେନି ଇନ୍ଦ୍ରପ୍ରସ୍ଥ
କେବଳ ସାତ୍ୟକି ଥାଉ ମୋହର ସହିତ ।
ଦ୍ରୌପଦୀ କେଶ ବାନ୍ଧିବି ଦୁଃଶାକୁ ଦେଖିଲେ
ଶତେ ଭାଇଙ୍କି ମାରିବି ଯୁଧିଷ୍ଠି ବୋଇଲେ ।
ପାଞ୍ଚଲକ୍ଷ ଯୋଦ୍ଧା ଘେନି ଦୁର୍ଦ୍ଦକ୍ଷ କୁମର
ସମର କରିବା ପାଇଁ ହୋଇଲେ ବାହାର ।
ଭାରତ ସମରେ ରଣ ବତ୍ସଳତା ବନ୍ଧୁ
ଲକ୍ଷେକ ରାଜା ମଧ୍ୟରେ ମହିମା ତା ସାଧୁ ।
ଧୃଷ୍ଟଦ୍ୟୁମନ ଶିଖଣ୍ଡୀ ବୀର ସେ ପାଞ୍ଚାଳ
ଶଙ୍ଖ ଉତ୍ତର ସହିତେ ବିରାଟର ବାଳ ।
ଏ ସର୍ବ ଯୋଦ୍ଧା ଭାଳିଲେ ପ୍ରିୟଭାବେ ବସି
କେ କାହାସଙ୍ଗେ ଯୁଝିବ ସମରରେ ପଶି ।
ଯୁଧିଷ୍ଠିର ବୋଇଲେକ ସହଦେବ ଶୁଣ
ମୋହର ଭାଗେ ରହିଲା ରାଜା ଦୁର୍ଯ୍ୟୋଧନ

ସହଦେବଙ୍କୁ ଉତ୍ତର କୁମର ବୋଇଲା
ମୋହ ଭାଗେ ଦେବ ଦୁଃଶାସନ ଯେ ରହିଲା
ଶିଖଣ୍ଡୀ ତହିଁ ବୋଇଲା ସହଦେବ ଆଗେ
ସେନାପତି କର୍ଣ୍ଣ ଦେବ ରହିଲା ମୋ ଭାଗେ ।
ଧୃଷ୍ଟଦ୍ୟୁମ୍ନ ବୋଲେ ସହଦେବଙ୍କ ଆଗରେ
ଦ୍ରୋଣ ମହାରଥୀ ହେଲା ମୋହର ଭାଗରେ
ପୁଣି ମନ୍ତ୍ରୀଙ୍କି କହିଲେ ବିରାଟର ରାଜ
ମୋହର ଆଗେ ରହିଲେ ବୀର କୃପାଚାର୍ଯ୍ୟ
ଯୁଧିଷ୍ଠିଙ୍କ ଆଗେ ଘଟଉତ୍କଚ କହିଲା
ଅଳମ୍ବୁଷ ରାକ୍ଷସ ମୋ ଭାଗରେ ରହିଲା ।
ଏପରି ବିଚାରି ସର୍ବେ ପଶିଲେ ସମରେ
ଶିଖଣ୍ଡୀ ମିଳିଲା ଯାଇ କୃଷ୍ଣର ଛାମୁରେ ।
ନିଶିକାଳ ମହାଘୋର ଶୁଭଇ ଚହଳ
ନ ଚିହ୍ନି କେ କାହା ତୁଲେ କରିଲେକ ରୋଳ ।
କୋଟିଏ ସୈନ୍ୟ ଘେନିଣ ହିଡ଼ିମ୍ବିକୀ ସୁତ
ସମର କଲାକ ଅଳମ୍ବୁଷର ସହିତ ।
ଅର୍ଜ୍ଜୁନ ବୋଇଲା ଦେବ ଶୁଣ ଚକ୍ରଧର
କିମ୍ପା ବାହୁଡ଼ିଣ ଯିବା କରିବା ସମର ।
ଆରେରେ ପାଣ୍ଡବ ବୋଲି ଡାକୁଛନ୍ତି ଦ୍ରୋଣ
ଶୁଣି କ୍ଷତ୍ରୀ ଅଙ୍ଗେ ଦେବ ରହଇ କି ପ୍ରାଣ ।
ଯଦ୍ୟପି ସମରେ ଆମ୍ଭେ ଯିବା ଅପସରି
ମାରିବେ ଆମ୍ଭଙ୍କୁ କଉରବ ଦଣ୍ଡଧାରୀ ।
ଅର୍ଜ୍ଜୁନ ବୋଇଲେ ଦେବ ନ ସହିବା ଏହା
କରିବି ଘୋର ସମର ରାତ୍ରେ ରଥବାହା ।
ଅର୍ଜ୍ଜୁନ ବଚନ ଶୁଣି ଦେବ ଶିରୀରଙ୍ଗ
ବାହାନ୍ତି ଅଶ୍ୱମାନଙ୍କୁ ପବନହୁଁ ବେଗ ।
ରଣ ଭିତରେ ବାହିଲେ ରଥ ନନ୍ଦିଘୋଷ
କପିକେତନ ଦେଖିଣ ସର୍ବେ କଲେ ତ୍ରାସ ।
ଶୁଭଇ ଗାଣ୍ଡୀବ ଗୁଣଘୋଷ ଘୋରନାଦ
ଯୁଧିଷ୍ଠି ଶୁଣିଲେ ଗୁଣ ଟଙ୍କାରର ଶବ୍ଦ ।
ସାନନ୍ଦେ ଚାହିଁ ଦ୍ରୁପଦ ବିରାଟର ମୁଖ
ମନ୍ତ୍ରୀକୁ ପୁଚ୍ଛିଲେ କ୍ଷେମେ ଅଛି ନା ବିବସ୍ତ ।
ଶୁଣିଲି ମୁଁ ଗାଣ୍ଡୀବର ଗୁଣଘୋଷ ବାଣୀ
ହୃଦୟ ବିଷାଦ ମୋର ଛାଡ଼ିଲା ସେକ୍ଷଣି ।
ରଣରଙ୍ଗ ହାନ୍ଦୋଳାରେ ପଶିଛି କିରୀଟି
ଏହି ନିଶାକାଳେ ଯାଇ ପାରିବି କି ଭେଟି ।
ଏକାକରି ମୁହିଁ ଯେବେ ଭେଟିବି ପାର୍ଥଙ୍କୁ
ଭ୍ରାନ୍ତି ଫିଟିବ ମୋହର ଦେଖିଲେ ତାହାକୁ ।
ଏକତ୍ର କରାଇଣ ସେ ଚଳାଇଲେ ଥାଟ
ଦଣ୍ଡକେ ପ୍ରବେଶ ହେଲେ ସମର ନିକଟ ।

ଶୁଣିଲେ ଭୀମସେନର ମୁଖରଡ଼ି ଧ୍ୱନି
ଯୁଧିଷ୍ଠିଦେବ ଆନନ୍ଦ ହେଲେ ତାହା ଶୁଣି ।
ଭୀମସେନ ବର୍ତ୍ତିଅଛି ମୋହର କୁଶଳେ
ଯୁଧିଷ୍ଠି କହନ୍ତି ଏତେ ବାକ୍ୟ ମହାଭୋଳେ ।
ନିଶାରେ ପ୍ରମତ୍ତ ହୋଇ ଅସୁର ସଇନି
ପ୍ରହାର କରନ୍ତି ରଣେ ଶାଳ ଶିଳ ଘେନି ।
ଏକକୁ ଆରେକ ଦୈତ୍ୟବୀର ମହାବଳୀ
ମନୁଷ୍ୟ ସୈନ୍ୟରୁ ସେ ଯେ ଦେଉଛନ୍ତି ଗିଳି ।
ଅସଂଖ୍ୟ ଗଜ ସଇନି ସ୍ୟନ୍ଦନ ସହିତେ
ତୁଣ୍ଡ ବିସ୍ତାରି ଭରନ୍ତି ନେଇ ଗର୍ଭଗତେ ।
ଛେଲ ଚକ୍ର ଶର ବିନ୍ଧୁଛନ୍ତି ଯେତେ ବାଣ
ସମସ୍ତ ପଶଇ ଯାଇ ଅସୁର ଗର୍ଭେଣ ।
ହେ ଚୈତନ୍ୟ ବୃନ୍ଦାରକ ରାଜା ଅଂଶୁମାଳି
ବହୁଥାଟ ଘେନି ଘଟୋତ୍କଚକୁ ଉଗାଳି ।
ଚଣ୍ଡିକା ଦେଶର ରାଜା ନାମ କୃତକେଶୀ
ନବଲକ୍ଷ ରଥୀ ଘେନି ଘଟକୁ ଆକ୍ରୋଶି ।
ଯାଉଛନ୍ତି କଉଣପେ କୋପେ ଗଳଗାଜି
ଯେ ମୁଖେ ପଡ଼ନ୍ତି ତାକୁ ଗିଳନ୍ତି ଗରଜି ।
ବୋଇଲା କର୍ଣ୍ଣ ସାରଥି ନାମ ସୁରସେନ
ଘଟୋତ୍କଚ ସଂହରିଲା କଉରବ ସୈନ୍ୟ ।
ତୋତେ ଇନ୍ଦ୍ର ଦେଲା ଯେଉଁ ବଜ୍ରର ଶକତି
ତାହା ଘେନି ଘଟୋତ୍କଚେ ମାରୁକିନା ଧାତି ।
ସାରଥିର ମୁଖୁ ଶୁଣି ବୋଇଲେ ରାଧେୟ
ବେଳେକ ପେଷିବି କହିଛନ୍ତି ଶକ୍ରରାୟ ।
ତାହାଙ୍କ ଛାମୁରେ ମୁଁ ଯେ କରିଅଛି ସତ୍ୟ
ଏ ଶକତିରେ ମାରିବି ମୁହିଁ କୃଷ୍ଣ ପାର୍ଥ ।
କର୍ଣ୍ଣ ବୋଇଲା ସାରଥି ରଥ ଆଡ଼ କର
ଅସୁରର ଯୁଦ୍ଧେ କିସ ପ୍ରୟୋଜନ ମୋର ।
ସାରଥି ରଥ ତାହାର ନେଲା ଆଡ଼କରି
ଦେଖିଲା ଆସଇ ଭୀମ ତେଣେ ସୈନ୍ୟମାରି
ସାରଥି ବୋଇଲା ଆସେ ରଣରଙ୍ଗା ଭୀମା
ଏହାର ଛାମୁକୁ କିସ ଅଛଇ ଗାରିମା ।
ଏହା କହୁ ରଥ ଆଡ଼ କରିଲା ସାରଥି
ଭୀମା ମାଇଲାକ ତେଣେ ପାଞ୍ଚଶତ ରଥୀ ।
ସହସ୍ରେକ ତୁରଙ୍ଗମ ପାଞ୍ଚଶତ ନାଗ
ମାରି କୁଡ଼ କୁଡ଼ କଲା କରି ରଣରଙ୍ଗ ।
ମରୁତ ଦେଶ ରାଜାର ଯୁଗଳ କୁମର
ବେନିଲକ୍ଷ ଶ୍ୱେତଅଶ୍ୱ ତୁଲେଣ ତାହାର ।
ମହାସମରରେ ପଶି ମଚ୍ଛିଲେକ ଥାଟ
କେ କେଣେ ଯୁଝୁଛି ତହିଁ ନ ପାଇଲେ ବାଟ ।

ଦକ୍ଷିଣ କୋଶଳ ରାଜା ଯା ନାମ ଭୂମନ୍ୟୁ
ରକ୍ଷ ଭକ୍ଷ ବୋଲିକରି ତାର ବେନିସୂନୁ ।
ଦୁହିଁଙ୍କର ତୁଲେ ପଞ୍ଚ ମର୍ଭୁତେକ ନାଗ
ସମରେ ହୋଇଲା ଯାଇ ଦୂର୍ଦ୍ଧକ୍ଷର ଆଗ ।
ଭାନୁମତୀର ଅଟନ୍ତି ସେହି ବେନିଭ୍ରାତ
ଦୁର୍ଯ୍ୟୋଧନର ଏ ଶଳା ମହା ବଳବନ୍ତ ।
ଘେନି ତୋମର ଗୁରୁଜ ଅସିପତ୍ର ଯାଠି
ଦୁର୍ଦ୍ଧକ୍ଷର ଉପରକୁ ଏକମୁଖେ ଉଠି ।
ଦୁର୍ଦ୍ଧକ୍ଷର ସଇନିଏ ଏକମୁଖ ହୋଇ
ରକ୍ଷ ଭକ୍ଷକୁ ବେଢ଼ିଲେ ଅତିବେଗେ ଯାଇ ।
ବାଣ ବିନ୍ଧନ୍ତେ ପଡ଼ଇ ଯେହ୍ନେ ବର୍ଷାଧାର
ଲିଭିଲାକ ଗଜହୁଳା ହୋଇଲା ଅନ୍ଧାର ।
ଅନ୍ଧାର ହୋଇଲା ଯହୁଁ କଲେ ମହାଗୋଳ
ଗାନ୍ଧାରୀ ସୁତ ଦୁର୍ଦ୍ଧକ୍ଷ ଅପ୍ରମିତ ବଳ ।
ତ୍ରିଶାଖା ଅସ୍ତ୍ରକୁ ସେହୁ କରିଣ ପ୍ରହାର
ଭୂମନ୍ୟୁ ଦୁଇପୁତ୍ରଙ୍କୁ କରିଲେ ସଂହାର ।
ପୁଣି ପ୍ରହାର କଲାକ କରେ ଖଣ୍ଡା ଘେନି
ବୁଲାଇ ନାଶ କରିଲା ବହୁତ ସଇନି ।
ଗାନ୍ଧାରୀର ନନ୍ଦନ ଯେ ରଣେ ଅନର୍ଗଳ
ସହସ୍ର ଶର ବିନ୍ଧିଲା କ୍ଷତ୍ରିୟ ଶାର୍ଦ୍ଦୁଳ ।
ପୁଣି ଗୋଡ଼ାଇ ହାଣଇ ଧରିଣ କୃପାଣେ
ଦଶବିଂଶ ତିରିଶ ଯେ ପଡ଼ିଛନ୍ତି ରଣେ ।
ଯା ଦେଖି କୋଶଳ ରାଜା ସୈନ୍ୟବଳ ଘେନି
ଚଳାଇଲା ଥାଟକୁ ସେ କରି ରେ ରେ ଧ୍ୱନି ।
ଥାଟ ଆସିବା ଦେଖିଣ ବୀର ବୃକୋଦର
ରଣରଙ୍ଗେ ମାତିଲା ସେ ସାତ୍ୟକି ସଙ୍ଗର ।
ଗଦାବରକୁ ବୁଲାଇ ପଶିଲା ସମରେ
ନ ଚିହ୍ନିଣ ଗୋଳ କଲା ଆପଣା ଥାଟରେ ।
ଭୀମ ରଡ଼ିଶବ୍ଦ ଶୁଣି ସହଦେବ ବୋଲେ
ଭୀମ ଠାକୁର ଆସିଣ ରଣେ ବିଜେ କଲେ ।
ସହଦେବ ଧୃଷ୍ଟଦ୍ୟୁମ୍ନ ଶିଖଣ୍ଡୀ ଦୁର୍ଦ୍ଧକ୍ଷ
ଅଶ୍ୱ ଚଢ଼ି ବାହାରିଲେ ଭୀମସେନ ପାଖ ।
ଦୂରୁ ଡାକିକହିଲେକ ମନ୍ତ୍ରୀ ଚୂଡ଼ାମଣି
ଗଦା ସଂହାରିବା ଦେବ କାଳବର ପାଣି ।
ଉଚ୍ଚେ ଡାକ ଦେଉ ଦେଉ ସହଦେବ ମନ୍ତ୍ରୀ
ମାଇଲା ପାଞ୍ଚାଳ ଦେଶ ପଞ୍ଚବିଂଶ ରଥୀ ।
ସାତ୍ୟକି କହିଲା ଚାହିଁ ସହଦେବ ମୁଖ
ଆମ୍ଭର ଆଡ଼େ କରିଣ ସୈନ୍ୟବଳ ରଖ ।
ବିରାଜଇ ବିଧୂବୀରା ଉର୍ଦ୍ଧ୍ୱ ଧନୁଧ୍ୱଜ
ପୁଣି ଏହାକୁ ମାଇଲେ ପବନ ଆତ୍ମଜ ।

ହେ ଚୈତନ୍ୟ ଏସନକ ରାତ୍ରଯୁଦ୍ଧ କଥା
ମାଇଲା ନିଜର ବଳ ଭୀମ ବଳବନ୍ତା ।
ଶତସଂଖ୍ୟକ ଯେ ଯୋଦ୍ଧା ବେନିଶତ ହସ୍ତୀ
ବାଆସ୍ତରୀ ପାରିଦଣ୍ଡ ଅର୍ବୁଦେ ପଦାତି ।
ଧୃଷ୍ଟଦ୍ୟୁମ୍ନ ଡାକୁ ଡାକୁ ଭୀମ କ୍ଷଣକରେ
ଏତେ ସୈନ୍ୟଙ୍କୁ ମାରିଣ ପିଙ୍ଗିଲା ମହୀରେ ।
ସାତ୍ୟକି ତା ପାଶେ ଯାଇ ବୋଲେ ରହ ଭୀମ
ଯୁଧିଷ୍ଠିଦେବ କହିଲେ ନ କର ସଂଗ୍ରାମ ।
ଅକାରଣେ ନିଜ ସୈନ୍ୟ କରିଲ ବିନାଶ
ରାଗ ତେଜି ଯୁଧିଷ୍ଠିର ନିକଟକୁ ଆସ ।
ଏହା ଶୁଣି ବ୍ୟସ୍ତ ହୋଇ ପାଣ୍ଡବ ସୁନ୍ଦର
ଯୁଧିଷ୍ଠି ପାଶକୁ ଯାଇ କଲେ ନମସ୍କାର ।
ଯୁଧିଷ୍ଠିର କହିଲେକ ଭୀମକୁ କୁଣ୍ଢାଇ
ନ ଦେଖି ତୁମ୍ଭକୁ ମୋର ମନେ ସୁଖ ନାହିଁ ।
ଆରେ ବାବୁ ଭୀମ ମୋତେ ଭେଟାଅ ଅର୍ଜ୍ଜୁନ
ହୃଦୟ ବୈକୁଲ୍ୟ ଯାଉ ସୁସ୍ଥ ହେଉ ମନ ।
ଭୀମ ଶୁଣି ଆଗେ ଗଲେ ପଛରେ ଯୁଧିଷ୍ଠି
ସୈନ୍ୟଙ୍କୁ ଆଡ଼ କରିଣ ଭେଟିଲେ କିରୀଟୀ ।
ସନ୍ନିଧେ ପ୍ରବେଶ ହ୍ୱନ୍ତେ ଧର୍ମଙ୍କ ନନ୍ଦନ
ରଥେ ଥାଇ ପ୍ରଣିପାତ କଲେ କୃଷ୍ଣାର୍ଜ୍ଜୁନ ।
ଲାଗିଲାକ ଅନର୍ଯ୍ୟାପ୍ତ ରାତ୍ରି ଗୋଳଯୁଦ୍ଧ
ରଥୀ ପଦାତି ଅସଂଖ୍ୟ ହେଲେ ତହିଁ ବଧ ।
ରଥୀ ଗଜାରୋହୀ ଅଶ୍ୱ ଆବର ପଦାତି
ଗୋଳ ଯୁଦ୍ଧରେ ପଡ଼ିଣ ମଲେ ବହୁକ୍ଷତ୍ରୀ ।
ପର କି ଆପଣା ବୋଲି ନ ଯାଇ ବାରଣ
ଦ୍ରୁପଦ ଆସନ୍ତେ ତହିଁ ଦେଖିଲେ ଯେ ଦ୍ରୋଣ ।
ପଞ୍ଚଦଶ ପାରିଦଣ୍ଡ ଦ୍ରୁପଦର ତୁଲେ
ଦ୍ରୋଣଙ୍କ ଛାମୁରେ ଯହୁଁ ସେ ଆସି ମିଳିଲେ ।
ଭୋକିଲା ବ୍ୟାଘ୍ର ଯେପରି କିଛି ନ ବିଚାରେ
ପାଇଲେ ନିଶ୍ଚେ ମାରଇ ଯେ ପଡ଼େଆଗରେ
ସେହିପରି ଦ୍ରୁପଦକୁ ସେନାପତି ଦ୍ରୋଣ
ବାଛି ବାଛି ବିନ୍ଧିଲେକ ପଞ୍ଚଷଠି ବାଣ ।
ତାର ସେ ବାଣ ପଡ଼ନ୍ତେ ଯୋଦ୍ଧା ପଞ୍ଚଷଠି
ଖଡ୍‌ଗେ ସେମାନଙ୍କ ଶିର ଦ୍ରୋଣ ଦେଲେକାଟି
ପୁଣି ନାରାଚ ପୂରାଇ ବିନ୍ଧନ୍ତେ ସଇନି
ଗଣ୍ଡି ମୁଣ୍ଡ ଛିଡ଼ି ବହୁ ପଡ଼ିଲେ ଅବନୀ ।
ସୈନ୍ୟଙ୍କ ବିନାଶ ଦେଖି ଦ୍ରୁପଦ ଈଶ୍ୱର
ବହୁ ନାରାଚ ବିନ୍ଧନ୍ତେ ଦ୍ରୋଣଙ୍କ ଉପର ।
ଅଭେଦ୍ୟ ସେନା ଅଛଇ ଦ୍ରୋଣଙ୍କ ଶରୀରେ
ଶର ନ ଭେଦି ଖସିଣ ପଡ଼ଇ ଭୂମିରେ ।

ଦ୍ରୋଣଗୁରୁ ଯା ବିନ୍ଧନ୍ତି ଅବ୍ୟର୍ଥ ସେ ଶର
ଯାହାପରେ ପଡ଼େ ସେହି ନ ପାଏ ନିସ୍ତାର ।
ପାଞ୍ଚାଳର ଯୋଦ୍ଧାମାନେ ହୋଇଯାନ୍ତେ ଶେଷ
ଗଜ ଆରୋହି ଦ୍ରୁପଦ ସମରେ ପ୍ରବେଶ ।
ଧୃଷ୍ଟଦ୍ୟୁମନ ଶିଖଣ୍ଡୀ ତେଣେ ଯୁଝୁଛନ୍ତି
ଦ୍ରୋଣ ଦ୍ରୁପଦଙ୍କ ଯୁଦ୍ଧ କେହି ନ ଜାଣନ୍ତି ।
ଗଜ କନ୍ଧରେ ବସିଣ ସେ ପାଞ୍ଚାଳେଶ୍ୱର
ଧନୁ ଧରି ମହାକ୍ରୋଧେ କରଇ ସମର ।
ଦ୍ରୋଣ ପ୍ରହାର କରିଲେ ଶର ପଞ୍ଚମୁନା
ସେ ଶର ଭେଦିଲା ଯାଇ ପାଞ୍ଚାଳର ସେହ୍ନା ।
ତୁମ୍ବରୁ ନାରାଚ ଘେନି ବିନ୍ଧିଲା ଦ୍ରୁପଦ
ଦ୍ରୋଣଙ୍କର ସାରଥିର ମୁଣ୍ଡ କଲା ଛେଦ ।
ବିରଥ ହୋଇଣ ଦ୍ରୋଣ ଚାହିଁଲ ତରାଟି
ଗଜ ଅଶ୍ୱଆଦି ନାହିଁ ତେଜି ସେ ରଥଟି ।
ଧାମନ୍ତି ଯେ ଦ୍ରୋଣଗୁରୁ ହୋଇ କୋପମୂର୍ତ୍ତି
ବିଜୟ କର୍ଣ୍ଣ କଟାରି ମାଇଲେ ତଡ଼ତି ।
ମହାଗଜ ଚଢ଼ିଥିଲା ଦ୍ରୁପଦ ଭୂପାଳ
ଦ୍ରୋଣ ଖଡ୍‌ଗଘାତେ ଛିଡ଼େ ହସ୍ତୀ କୁମ୍ଭସ୍ଥଳ ।
ବାହନ ବିହୀନେ ହୋଇ ପାଞ୍ଚାଳ ଈଶ୍ୱର
ଦ୍ରୋଣଙ୍କୁ ପ୍ରହାର କଲା ଘେନି ଅସିବର ।
ଦ୍ରୋଣ ପ୍ରହାର କରିଲେ ଖଡ଼ଗେକ ଘେନି
ବେନି ଖଡ୍‌ଗ ପରିତାଳେ ଉଠିଲା ବହନି ।
ଦ୍ରୁପଦ ରାଜାର ଯହୁଁ ଖଣ୍ଡାଗଲା ଭାଜି
ଭରଦ୍ୱାଜଙ୍କ ନନ୍ଦନ ଧାଏଁ ଗଳଗାଜି ।
ପଳାଇ ଯାଉଣ ଥିଲା ଦ୍ରୁପଦ ଭୂପାଳ
ଆକର୍ଷି ଧଇଲେ ପଛୁ ଦ୍ରୁପଦର ବାଳ ।
ଖଡ୍‌ଗ ବୁଲାଇ ପ୍ରହାର କଲା ଯହୁଁ ଦ୍ରୋଣ
ଦ୍ୱିଖଣ୍ଡ ହୋଇ ପଡ଼ିଲା ଦ୍ରୁପଦ ରାଜନ ।
ସମରେ ନିଧନ ହ୍ୱନ୍ତେ ପାଞ୍ଚାଳୀର ପିତା
ମୁଣ୍ଡ ଦେଖିଣ ଚିହ୍ନିଲେ ଦ୍ରୋଣ ବଳବନ୍ତା ।
ଦ୍ରୁପଦର ମୁଖ ଦେଖି ବିରସ ହୋଇଣ
ଶିରେ କରମାରି ବହୁ କରିଲେ କ୍ରନ୍ଦନ ।
ଭୋ ଦଇବ ଏତେକାଳେ କଲୁ ମୋତେ ଏହା
ମଇତ୍ରକୁ ବଧିଲି ମୁଁ ଅଜ୍ଞାନୀ ଦୋରେହା ।
ପ୍ରାଣରୁ ଅଧିକ କରି ପାଳିଥିଲି ତୋତେ
ରକ୍ଷା କରିଲି ଚଉଦ ବରଷ ପର୍ଯ୍ୟନ୍ତେ ।
ପୋଡୁ ପୋଡୁ କ୍ଷତ୍ରିବୃତ୍ତି ମୋହର ସଂଗ୍ରାମ
କ୍ଷଣକରେ ନାଶଗଲା ବହୁକାଳ ଧର୍ମ ।
କୃପାଚାର୍ଯ୍ୟ ବୋଇଲେକ ଆହେ ଦ୍ରୋଣଗୁରୁ
ରଣ ଉପେକ୍ଷିଣ କିମ୍ପା କ୍ରନ୍ଦନ ତୁ କରୁ ।

ଦ୍ରୋଣ ତହୁଁ ବୋଇଲେକ ଶୁଣ କୃପାଚାର୍ଯ୍ୟ
ମିତ୍ରକୁ ବଧ କଲି ମୁଁ ସଂଗ୍ରାମରେ ଆଜ ।
କୃପ ତାଙ୍କୁ ବୋଇଲେକ ଶୋକ ପରିହର
ବିବାଦ କରି ଭାବୁଛ କି ବନ୍ଧୁ ସୋଦର ।
ଭୀମ ମନ୍ଥନ କରିଣ ଆସୁଅଛି ଥାଟ
ତୋତେ ଭେଟିଲେ ଏକ୍ଷଣି ହେବ ମୁଣ୍ଡକାଟ
ଯେ ମଲା ତାହାର କଥା ଭାବିଲେ କି ହେବ
କୃପ ବାକ୍ୟେ ଦ୍ରୋଣଗୁରୁ ହେଲେ ଶାନ୍ତ ଭାବ
ସଞ୍ଜୟକୁ ପୁଚ୍ଛାକଲେ ଧୃତରାଷ୍ଟ୍ର ବୀର
ରାତ୍ରି ଯୁଦ୍ଧ କଥା ମନ୍ତ୍ରୀ କହ ମୋ ଆଗର ।
ସଞ୍ଜୟ ବୋଇଲେ ଶୁଣ ଅମ୍ବିକାର ସୁତ
ଆଜି ଯୁଦ୍ଧେ ଦ୍ରୋଣ କଲେ ଦ୍ରୁପଦକୁ ହତ ।
ମିତ୍ରକୁ ମାରି କରିଲେ ବହୁତ ସନ୍ତାପ
ଶାନ୍ତ ହୋଇଲେ ବୁଝାଇ କହିବାରୁ କୃପ ।
ଧୃତରାଷ୍ଟ୍ର ବୋଲେ କହ ଏଥିର କାରଣ
କେଉଁ ହେତୁରୁ ବିଳାପ କଲେ ଗୁରୁଦ୍ରୋଣ ।
ସଞ୍ଜୟ କହିଲା ଏକ କିରାତ ଈଶ୍ୱର
ଦ୍ରୁପଦକୁ ଜିଣି ନେଲା ତାହାର ନଗର ।
ରାଜ୍ୟ ଛାଡ଼ି ପଳାଇଲା ସେ ଦ୍ରୁପଦ ରାୟେ
ତୀର୍ଥବାସୀ ହୋଇଥିଲେ କିରାତର ଭୟେ ।
କାଶୀନଗରରେ ଥିଲେ ସେ ଦ୍ରୋଣ ଆଚାର୍ଯ୍ୟ
ସେଠାକୁ ଯାଇଁ ଭେଟିଲେ ଦ୍ରୁପଦର ରାଜ ।
ଦ୍ରୋଣକୁ ପ୍ରଣାମ କରି ରାଜା ଉଭା ହେଲେ
କେଉଁଦେଶେ ଘର ତୋର ଦ୍ରୋଣ ପଚାରିଲେ
ଦ୍ରୁପଦ ବୋଇଲେ ମୁଁ ଯେ ପାଞ୍ଚାଳ ନରେନ୍ଦ୍ର
ନେଲା ମୋ ସମ୍ପଦ ବଳେ ସେ କିରାତଚନ୍ଦ୍ର ।
ହତଭାଗ୍ୟ ହୋଇଣ ମୁଁ ଭ୍ରମୁଅଛି ତୀର୍ଥ
ମୋ ନାମ ଦ୍ରୁପଦ ମୁହିଁ ପଞ୍ଚାଳର ନାଥ ।
ଆମ୍ଭ ନାମ ଦ୍ରୋଣ ତୁମ୍ଭ ନାମ ଯେ ଦ୍ରୁପଦ
ଏକାକ୍ଷର ହେଲା ଯେଣୁ ହୋଇଲା ସୁହୃଦ ।
ଦ୍ରୋଣ ଦ୍ରୁପଦ ଦୁହିଁଙ୍କ ବଢ଼ିଲା ପୀରତି
ସବୁ ସଇନ୍ୟଙ୍କୁ ଦ୍ରୋଣ ନିତି ଅନ୍ନ ଦ୍ୟନ୍ତି ।
ଯେତେକ ଯୋଗାଡ଼ମାନ ଲାଗେ ରାଜବିଧି
ବିଧି ଅନୁସାରେ ଦ୍ରୋଣ ଦେଉଥାନ୍ତି ରାନ୍ଧି ।
ରାଜା ରହିଲା ଚଉଦବର୍ଷ ପରିଯନ୍ତେ
ଭିକ୍ଷାମାଗି ଦେଉଥାନ୍ତି ଆଣି ଦ୍ରୋଣ ନିତ୍ୟେ ।
କିରାତ ରାଜ୍ୟକୁ କଲ୍‌କୀ ରାଜା ଯେ ବାହିଲା
ପାଞ୍ଚାଳ ଛାଡ଼ି କିରାତ ନିଜ ରାଜ୍ୟେ ଗଲା ।
ପାଞ୍ଚାଳ ଦେଶରୁ କେହି ଲୋକ ବେଗେ ଯାଇ
କୁଶଳ ବାରତା ଦେଲା ଦ୍ରୁପଦକୁ କହି ।

ହସ୍ତ ଯୋଡ଼ିଣ ଦ୍ରୁପଦ ଦ୍ରୋଣକୁ କହିଲା
ପାଞ୍ଚାଳ ଛାଡ଼ି କିରାତ ସ୍ୱଦେଶକୁ ଗଲା ।
ଭୋ ମଇତ୍ର ମୋ ରାଜ୍ୟକୁ ଏବେ ଚାଲଯିବା
କିରାତ ଛାଡ଼ି ଗଲାଣି ସେଠାରେ ରହିବା ।
ସମୟେକ ମୋ ରାଜ୍ୟରେ ଭୁଞ୍ଜ ଅଇଶ୍ୱର୍ଯ୍ୟ
ଦାସ ହୋଇ ଖଟିଥିବି ଚାଲ ମିତ୍ର ଆଜ ।
ଦ୍ରୋଣ ବୋଇଲେକ ଏବେ ଯାଅ ହୋ ମଇତ୍ର
ରାଜ୍ୟ ସୁବିଧାନେ ପାଳ ଘେନି ପରଜାନ୍ତ ।
ଅବଶ୍ୟ ଯିବି ମଇତ୍ର ତୁମ୍ଭର ରାଜ୍ୟକୁ
ନପୁଣ ହେ ପ୍ରାଣବନ୍ଧୁ ପାଶୋର ଆମ୍ଭଙ୍କୁ ।
ଦ୍ରୁପଦ ବୋଇଲେ ତୁମ୍ଭେ ମୋର ପ୍ରାଣବନ୍ଧୁ
ତୋ ଅନ୍ନ ଖାଇ ତରିଲି ଏ ବିପଦ ସିନ୍ଧୁ ।
ଏପରି ବିନୟେ କହି ଦ୍ରୋଣକୁ ଭୂପାଳ
ନିଜ ରାଜ୍ୟରେ ପ୍ରବେଶ ହେଲା ତତକାଳ ।
ହେ ନରେଶ ଦ୍ରୋଣ ଭାର୍ଯ୍ୟା କୃପୀ ମହାସତୀ
ସାତମାସ ହୋଇଥିଲା ସେହୁ ଗର୍ଭବତୀ ।
ମଳକଣ୍ଟକ ବ୍ୟାଧି ଯେ ତାହାକୁ ହୋଇଲା
ତେଣୁ ଗର୍ଭଭାରା କୃପୀ ସହି ନ ପାରିଲା ।
ସେହି ବ୍ୟାଧି ଯୋଗେ ସତୀ ତେଜିଲା ପରାଣ
ନଖେ କୃପୀ ସତୀଙ୍କର ପେଟ ଚିରି ଦ୍ରୋଣ ।
ପେଟ ମଧ୍ୟରୁ ପୁଅକୁ ଯତନେ କାଢ଼ିଲେ
ମୃତପିଣ୍ଡ ଗୋଟି ନେଇ ଗଙ୍ଗାରେ ମେଲିଲେ
ପୁଅକୁ କାଢ଼ିବାବେଳେ ମାତା ଅସ୍ତ ଥିଲେ
ଅଶ୍ୱଥାମା ନାମ ତାର ଦ୍ରୋଣ ତେଣୁ ଦେଲେ
ବିଚାରିଲେ ମାତୃହୀନ ସେ ଶିଶୁକୁ ଦେଖି
ଅନ୍ନ ନ ଯୋଗାଏ ଯାକୁ ବଞ୍ଚିବ କି ଭକ୍ଷି ।
ଯାହାକୁ ରଖନ୍ତି ହରି ମାରିପାରେ କିଏ
ଦ୍ରୋଣ ବଞ୍ଚାଇଲେ ତାକୁ କୌଣସି ଉପାୟେ ।
ଦିନେ ଦ୍ରୋଣ ବିଚାରିଲେ ଦ୍ରୁପଦ ମୋ ମିତ୍ର
ଏ ବିପଦ କାଳେ ଯିବି ତାହାର ଅଗ୍ରତ ।
ଆସନ ଗୋଟିଏ ଦୁଗ୍ଧବତୀ ଗାଈଟିଏ
ମାଗି ଘେନିଲେ ପୋଷିବି ଏ କାଳ ତନୟେ ।
ଏହା ଭାଳି ପୁତ୍ର ନେଇ ଦ୍ରୋଣ ଗଲେ ଖରେ
କେତେକ ଦିନେ ପ୍ରବେଶ ଦ୍ରୁପଦ ରାଜ୍ୟରେ ।
ଦ୍ରୁପଦଙ୍କ ପୂର୍ବଦ୍ୱାରେ ପ୍ରବେଶ ହୋଇଲେ
ରାଜାଙ୍କୁ କହ ବୋଲିଣ ଦ୍ୱାରୀକି କହିଲେ ।
ପଞ୍ଚାଳ ନରେଶଙ୍କର ଅଟୁ ଆମ୍ଭେ ମିତ୍ର
ଆହେ ଦ୍ୱାରୀ ଜଣାଅ ତୁ ରାଜାଙ୍କୁ ତ୍ୱରିତ ।
ଶୁଭେ ଧନପୁତ୍ର ତୋତେ ଦେବେକ ଶ୍ରୀହରି
ମୋ କାର୍ଯ୍ୟ ହେଉ ରାଜାଙ୍କୁ ଜଣା ବେଗକରି
ଦ୍ରୋଣ ବ୍ୟାକୁଳ ବଚନେ ଦ୍ୱାରପାଳ ଗଲା
ଦ୍ରୁପଦଙ୍କ ଶ୍ରୀ ଛାମୁରେ ରହି ଜଣାଇଲା ।
ହେ ରାଜା ଦ୍ୱିଜେକ ଦ୍ୱାରେ ଆସିଣ କହୁଛି
ତୁମ୍ଭର ମଇତ୍ର ସେହି ଦର୍ଶନ ଲୋଡୁଛି ।
ଶୁଣିଣ ଦ୍ରୁପଦ ତାକୁ ବୋଇଲେ ଏମନ୍ତେ
ମଇତ୍ରଙ୍କ ଗଜ ଅଶ୍ୱ ସୈନ୍ୟ ଅଛି କେତେ ।
ଦ୍ୱାରୀ ବୋଲେ ଶିଶୁଟିଏ କୋଳେ ଧରିଅଛି
ଗଜ ଅଶ୍ୱ ସୈନ୍ୟ ତାର ସଙ୍ଗେ ନାହିଁ କିଛି ।
କୋପ କରିଲାକ ଏହା ଦ୍ରୁପଦ ଶୁଣନ୍ତେ
ବୋଇଲା ମୋ ପୁତ୍ରଗଣ ନିନ୍ଦିବେକ ମୋତେ
ବୋଲିବେ ରାଜାର ମିତ୍ର ଭିକ୍ଷୁକ ବ୍ରାହ୍ମଣ
ଏହା କିପରି କହିଲୁ ମୋର ସନ୍ନିଧାନ ।
ଆରେ କଟୁଆଳ ନିଅ ୟାର ବାଳ ଧରି
ନଗର ବହାରେ ଶିର ପକାଅ ଉଭାରି ।
ରାଜାବାକ୍ୟେ କଟୁଆଳ ଦେଇ ତାକୁ ଶାସ୍ତି
ପୁଣି ବେଢ଼ିଲେ ଯାଇଣ ଦ୍ରୋଣ ସେନାପତି ।
ଆରେ ରେ ମୂଢ଼ ବ୍ରାହ୍ମଣ ତୋହର ପ୍ରମାଦେ
କହିବାକୁ ଯାଇ ଆମ୍ଭେ ପଡ଼ିଲୁ ପ୍ରମାଦେ ।
ଏହା କହି କିଏ ଯାଇ ବିଧାଏ ମାଇଲା
କିଏ ତାଙ୍କ ଉତ୍ତରୀକି ଧରି ଛିଣ୍ଡାଇଲା ।
କେହି କୁରୁଳି ଦେଖିଣ ଧୂଳିକି ଫିଙ୍ଗିଲା
କେ ଟେକା ମାଇଲା କେହୁ କେଶକୁ ଧଇଲା ।
ହୃଦେ ଯାକିଛନ୍ତି ଦ୍ରୋଣ ବାଳଶିଶୁ ଗୋଟି
ଟେକା ମାରନ୍ତେଣ ଦ୍ରୋଣ ପାତୁଛନ୍ତି ପିଠି ।
ସଞ୍ଜୟ ବୋଇଲା ଶୁଣ ରାଜା ଧୃତରାଷ୍ଟ୍ର
ଦ୍ରୁପଦ ହେତୁ ଦ୍ରୋଣଙ୍କୁ ହେଲା ଏତେ କଷ୍ଟ ।
ଚଉଦ ବର୍ଷ ପୋଷିଲେ ତାହା କାହିଁ ଗଲା
ଦେଖା କରିବାକୁ ଯାନ୍ତେ ଏତେ ଶାସ୍ତି ଦେଲା
ଅନେକ ଶାସ୍ତି ପାଆନ୍ତେ ଦ୍ରୋଣ ସେନାପତି
କ୍ରୋଧେ ଅବସ୍ଥା ହୋଇଣ ବନସ୍ତେ ପଶନ୍ତି ।
ସିଂହଦ୍ୱାରୁ ପାଞ୍ଚକ୍ରୋଶ ହିରଣ୍ୟକ ଗିରି
କେତେଦୂର ଦ୍ରୋଣକୁ ସେ ନେଲେଟେକାମାରି
ବାହୁଡ଼ିଲେ ଆରଣ୍ୟକ ବନୁ ସର୍ବ ଲୋକେ
ହସ୍ତିନା ପୁରକୁ ଦ୍ରୋଣ ଗଲେ ମହାଶୋକେ ।
ଦ୍ରୋଣ ବୋଲେ ବନ୍ଧୁମଧ୍ୟେ ଶଳାହିଁ ଯେ ସାର
ଦେହକୁ ସୁସ୍ଥ କରିବା ଯାଇଁ ତାଙ୍କ ଘର ।
ଅଶ୍ୱଥାମାକୁ ଘେନିଣ ତହୁଁ ଦ୍ରୋଣାଚାର୍ଯ୍ୟ
କୃପଙ୍କ ଘରେ ପ୍ରବେଶ ଛାଡ଼ି ସର୍ବ ଲାଜ ।
ଶୁଣିଲେ ସକଳେ ତହିଁ କୃପୀ ହତବାଣୀ
ବହୁ ଶୋକ କୃପ କଲେ ତାହା ମନେ ଗୁଣି ।

ଦ୍ରୁପଦ ରାଜାର ସବୁ ହିଂସଭାବ ଧରି
ତପ ଛାଡ଼ି ଦ୍ରୋଣାଚାର୍ଯ୍ୟ ହେଲେ ଅସ୍ତ୍ରଧାରୀ
ପାଣ୍ଡବ କୌରବଙ୍କର ଗୁରୁ ହେଲେ ଯାଇ
ଶିଷ୍ୟଙ୍କ ଦ୍ୱାରା ଶାସିବେ ପାଞ୍ଚାଳର ସାଇଁ ।
ଶୁଣ ଧୃତରାଷ୍ଟ୍ର ଆଦ୍ୟ ଦ୍ରୋଣ ତୀର୍ଥବାସୀ
ଦ୍ରୁପଦକୁ ମାରିବାକୁ ହସ୍ତିନାରେ ପଶି ।
ସେ ମହାବୈଷ୍ଣବ କାରେ ନୁହଇ ବିବାଦୀ
ପରଶୁରାମଙ୍କଠାରୁ ଥିଲେ ବିଦ୍ୟା ସାଧି ।
ଯଦ୍ୟପି ବ୍ରାହ୍ମଣ ସେହୁ ପୁଣି ତପଚାରୀ
ଦ୍ରୁପଦ ନିମନ୍ତେ ରାଗେ ହେଲେ ଅସ୍ତ୍ରଧାରୀ ।
ନାନା ପ୍ରକାରରେ ରାଗ ସଂହାରି ନ ପାରି
ଦ୍ରୋଣ ରହିଲେକ ଯାଇ ହସ୍ତିନା ନଗରୀ ।
ଦ୍ରୁପଦ ଯୋଗେ ଦ୍ରୋଣକୁ ଏତେ ପରମାଦ
ସେ ରାଗେ ଦ୍ରୋଣ ଦ୍ରୁପଦ ଶିର କଲେ ଛେଦ
ଆହେ ଦିନନାଥ ତୁମ୍ଭେ ବୋଲାଅ ମାର୍ତ୍ତଣ୍ଡ
ତୁମ୍ଭ ଜ୍ୟୋତି ବିକାଶଇ ସକଳ ବ୍ରହ୍ମାଣ୍ଡ ।
ବହୁତ ଅନୀତି କଲା ଯହୁଁ ଅର୍କଦୈତ୍ୟ
ତାହାର ଭୟେ ସଂସାର ଜନେ ଆତଙ୍କିତ ।
ଦେଖିଲେ ଦଇତ୍ୟ ତପୋଧନ ତୀର୍ଥବାସୀ
ଅସ୍ଥି ଚର୍ମ ସହିତରେ ପକାଏ ଗରାସି ।
ହେ ପ୍ରଭୁ ସୂର୍ଯ୍ୟଦେବତା ତା ଅନୀତି ଦେଖି
ମହାକୋପ କରି ନାଥ ଗଗନ ଉପେକ୍ଷି ।
ଅର୍କ ଦଇତ୍ୟକୁ ମାରି ଚନ୍ଦ୍ରଭାଗାତୀରେ
ବିଜୟ କଲ ଆପଣ କୋଣାର୍କ ମନ୍ଦିରେ ।
ସୂର୍ଯ୍ୟାବର୍ତ୍ତ ଗଦାବର ଧରିଅଛ କରେ
ଚକ୍ରାବଳି ଧନୁତେଜ ଅନଳର ଶିରେ ।
କାମ୍ୟବନେ ଉର୍ଦ୍ଧ୍ୱବାହୁ ତପୀଙ୍କୁ ବିନାଶ
କରି ଦୈତ୍ୟ ଭକ୍ଷୁଥିଲା ତାଙ୍କୁ କଲ ନାଶ ।
ନିରାକୂଳ ନାରାୟଣ ସର୍ବଜନ ଚିନ୍ତା
ନିରାକାର ନିର୍ବିକାର ସୃଷ୍ଟି ଉଦ୍ଧାରନ୍ତା ।
ସ୍ୱାମୀ ଦିବାଶେଷେ ଯହୁଁ ଘୋଟଇ ତିମିରି
ସର୍ବେ ଶଯ୍ୟାଗତ ହୋନ୍ତି ନିଜ ଜ୍ଞାନହାରି ।
ତୋହର ତେଜ ପ୍ରକାଶ ହୁଏ ଯେତେବେଳେ
ଜୀବଗଣ ସାନନ୍ଦରେ କ୍ରୀଡ଼ନ୍ତି ଶୟଳେ ।
ସୁଧୀ ଯତି ତପୋଧନ ଆଦି ଏ ସମୟେ
ଶଉଚ ହୋଇଣ ପୂଜା କରନ୍ତି ତୋ ପାୟେ ।
ଅନିତ୍ୟ ସଂସାର ଏହି ଲୋଭ ମୋହଫାଶି
ଏଥିରୁ ଉଦ୍ଧର ନାଥ କରୁଣା ପ୍ରକାଶି ।
ନାଶକର ପ୍ରାୟ ମୋତେ ଉଦ୍ଧର ଗୋସାଇଁ
ପୂର୍ଣ୍ଣକର ଶ୍ରୀ ଶାରଳା ଦାସ ଯେ କହଇ ।

## ଘଟୁକା ଦ୍ୱାରା ଅଳାୟୁଧର ମୃତ୍ୟୁ ଓ ଅଳମ୍ବୁଷ ଦ୍ୱାରା ଘଟୁକାର ମୃତ୍ୟୁ

ଶୁଣ ଆହେ ବୁଧଜନ ଅଗସ୍ତି ବକତା
ମୁକତିକୁ ଇଚ୍ଛାକରି ମନୁ ହେଲେ ଶ୍ରୋତା ।
ଧୃଷ୍ଟଦ୍ୟୁମ୍ନ ନ ଜାଣନ୍ତି ପିତା ମୃତ୍ୟୁ କଥା
ଏ ଉତ୍ତାରେ ଯାହା ହେଲା ଶୁଣ ଆହେ ଶ୍ରୋତା
ବହୁ ଶୋକ କଲେ ଦ୍ରୋଣ ଦ୍ରୁପଦକୁ ମାରି
ରଥରେ ରଖିଲେ ପିଣ୍ଡ ମଧୁ ତୁମ୍ବେ ଭରି ।
ସଂଗ୍ରାମ ଶେଷେ ପ୍ରୟାଗ ତୀର୍ଥକୁ ଯେ ଯିବା
ଭାଗୀରଥୀ ଗଙ୍ଗାନୀରେ ଏହାକୁ ମେଲିବା ।
ଏପରି କରି ଖଣ୍ଡିବା ମିତ୍ରଦୋହ ଦୋଷ
ଆବର ଲୋକେ ପାଇବା ବହୁ ପଉରୁଷ ।
ଏଥୁଅନ୍ତେ ଶୁଣ ରାଜା ଯୁଦ୍ଧ ବିବରଣ
ଦୁର୍ଦ୍ଧକ୍ଷ ଛାମୁରେ ଆସି ହେଲା ଦୁଃଶାସନ ।
ବେନି ସହୋଦର ପୁଣି ଅଟନ୍ତି ଅଭେଦ
କ୍ଷତ୍ରୀପଣ ରଖିବାକୁ କଲେ ଦୁହେଁ ଯୁଦ୍ଧ ।
ବଡ଼ ରଥେକ ଆରୋହିଥିଲା ଦୁଃଶାସନ
ସସ୍ତ୍ରବଳ ଧନୁଶର କଲାକ ଆହ୍ୱାନ ।
ଦୁଃଶାସନ ବୋଇଲାକ ଦୁର୍ଦ୍ଧକ୍ଷକୁ ଚାହିଁ
କାହିଁପାଇଁ ତୁ ରହିଲୁ ମରିବାର ପାଇଁ ।
ଏହିକ୍ଷଣି ତୋର ପ୍ରାଣ କରିପାରେ ନଷ୍ଟ
କେ ସହିପାରିବ ଆରେ ଗାନ୍ଧାରୀର କଷ୍ଟ ।
ତୋହର ପ୍ରାଣ ରହିଲା ଜନନୀଙ୍କ ପାଇଁ
ମହାସର୍ପ ତୁଲେ କାହିଁ ମଣ୍ଡୁକ ଯୁଝଇ ।
ଦୁର୍ଦ୍ଧକ୍ଷ ବୋଲେ ତୋ ମୃତ୍ୟୁ ନିକଟ ହେଲାଣି
ଯମ ତୋ ନାମ ପାଞ୍ଜିରୁ ଆଜି ପୋଛିଲାଣି ।
ଏହା ଶୁଣି ରାଗେ ଦୁଃଶା ଧରି ଗଦାବର
ଦୁର୍ଦ୍ଧକ୍ଷ ରଥ ଉପରେ ପିଟିଲା ସତ୍ୱର ।
ଗଦା ପଡ଼ନ୍ତେ ଦୁର୍ଦ୍ଧକ୍ଷ ରଥ ହେଲା ଚୂର୍ଣ୍ଣ
କାଳସର୍ପ ପ୍ରାୟେ ଗର୍ଜ୍ଜେ ବୀର ଦୁଃଶାସନ ।
ପାଦଗତି ହୋଇ ଗଦା ଧଇଲା ଦୁର୍ଦ୍ଧକ୍ଷ
ମତ୍ତନାଗ ପ୍ରାୟ ଦିଶେ ଯୁଦ୍ଧ ମହାଦକ୍ଷ ।
ଷାଠିଏ ଭାରର ଗଦା ବୁଲାଇଣ କୋପେ
ପିଟିଲାକ ଦୁଃଶାସନ ରଥେ ଗୁରୁତାପେ ।
ମହାବାହୁ କଉରବ ବୀରବର ଷଣ୍ଢା
ଦୁଃଶାସନ ରଥ ଭାଙ୍ଗି କରିଦେଲା ଗୁଣ୍ଡା ।
ତଳେ ପଡ଼ି ଦୁଃଶାସନ ଧଡ଼ପଡ଼େ ଉଠି
ଗଦାବର ପ୍ରହାରିଲା ସେ ଦୁର୍ଦ୍ଧକ୍ଷ ପିଠି ।

ପଛଘୁଞ୍ଚା ଦେଇ ଗଦା ବଞ୍ଚାଇ ଦୁର୍ଦ୍ଧକ୍ଷ
ବୋଲେ ମୋ ଗଦାର ଘାତ ଭାଇ ତୁମ୍ଭେଦେଖ
ରାହୁ ପ୍ରାୟ ମୂର୍ତ୍ତି ଧରି ଗରଜିଣ ବୀର
ଦୁଃଶାସନ ପରେ ଗଦା କରିଲା ପ୍ରହାର ।
ଦୁର୍ଦ୍ଧକ୍ଷ ଗଦା ପଡ଼ନ୍ତେ ଦୁଃଶାସନ ଶିରେ
ମୁଣ୍ଡଫାଟି ରକ୍ତବହେ ଶରୀର ଯାକରେ ।
ସେ ଆଘାତ ଦୁଃଶାସନ ନ ପାରିଲା ସହି
ଘାଏ ମହୀରେ ଶୋଇଲା ଅସାଷ୍ଟମ ହୋଇ ।
ବହେ ରୁଧିର ନାସିକା କର୍ଣ୍ଣ ମୁଖୁପୁଣି
ପଡ଼ିଅଛି ଦୁଃଶାସନ ଗତଆତ୍ମା ଜାଣି ।
ଏହା ଦେଖି କୋଳକରି ଧଇଲା ଦୁର୍ଦ୍ଧକ୍ଷ
କିଞ୍ଚିତ ଯୁଦ୍ଧରେ ଭାଇ ଲଭିଲୁ କି ଦୁଃଖ ।
ଦ୍ରୌପଦୀ କେଶ ଧରିଲୁ ପଶାଖେଳ କାଳେ
ବିବସନ କଲୁ ଆଣି କୁରୁସଭାତଳେ ।
ଦ୍ରୌପଦୀ କେଶ ମୁକୁଳା ଅଛି ସେହିଦିନୁ
ଚଉଦ ବରଷ ହେଲା ଅଶକତ ତନୁ ।
ପଖାଳିବେ ତୋ ଭୁଜର ରକ୍ତେ କୃଷ୍ଣାବାଳ
ଏ ପ୍ରତିଜ୍ଞା କରିଛନ୍ତି ଭୀମ ମହାବଳ ।
ମୂର୍ଖବୁଦ୍ଧି ଛାଡ଼ି ତୁହି ଏହା ନ ବିଚାରୁ
କାହା ଭରସାରେ ପୁଣି ଯୁଦ୍ଧେ ଗୋଳକରୁ ।
ଚେତି ଦୁଃଶାସନ ବୋଲେ ଶୁଣରେ ଦୁର୍ଦ୍ଧକ୍ଷ
ତୁ ଯାହା କହିଲୁ ତାହା ଅଟଇ ପ୍ରତ୍ୟକ୍ଷ ।
ତୋହର ଶରଣ ଆଜି ପଶିଲଇଁ ଭାଇ
ଶତ୍ରୁ ଶରଣବତ୍ସଳ ଅଟୁ ବାବୁ ତୁହି ।
ଦୁର୍ଦ୍ଧକ୍ଷ ବୋଇଲା ଆଉ ରଣେ ନ ପଶିବ
ଯତନ କରିଣ ପ୍ରିୟ ପ୍ରାଣକୁ ରଖିବ ।
ଭୀମଙ୍କ ପ୍ରତିଜ୍ଞା କେବେ ନୋହିବ ବିଫଳ
ରଣେ ପଶିଲେ ନିଶ୍ଚୟ ପାଇବ ତା ଫଳ ।
ରାଜା ବାକ୍ୟେ ଯେବେ ରଣେ ପଶିବ ନିୟତ
ମଲେ ତୁମ୍ଭେ ପ୍ରେତକାର୍ଯ୍ୟ କରିବି ସମାପ୍ତ ।
ରାତ୍ରବୋଲି ତୋର ସଙ୍ଗେ ହେଲି ଏହି କଥା
ପାଣ୍ଡବେ ଜାଣିଲେ ମୋତେ କରିବେ ଅହନ୍ତା
ଏତେ ବୋଲିଣ ଦୁର୍ଦ୍ଧକ୍ଷ ତହୁଁ ବେଗେ ଉଠି
ଯାଇ ଦେଖେ ଦ୍ରୋଣୀସଙ୍ଗେ ଶିଖଣ୍ଡୀ ଯେ ଭେଟି
ନ ଚିହ୍ନିଣ ଅଶ୍ୱଥାମା କରେ ଶର ବୃଷ୍ଟି
ଅନୁକ୍ଷଣେ ତାର ବାଣ ଚଉଦିଗ ଘୋଟି ।
ନୀଳ ମେଘରେ ଯେସନେ ଦିଶେ ଉଲ୍କାପନ୍ତି
ତେସନ ଘୋର ଅନ୍ଧାରେ ନାରାଚେ ଦିଶନ୍ତି ।
ଶିଖଣ୍ଡୀ ପେଶିଲା ପାଞ୍ଚକ୍ଷଉଣୀ ନାରାଚ
ଦେଖି ପ୍ରଶଂସା କରଇ ଦ୍ରୋଣଙ୍କର ବତ୍ସ ।

ପାଞ୍ଚଲକ୍ଷ ଯୋଦ୍ଧା ଘେନି ବୀର ଧୃଷ୍ଟଦ୍ୟୁମ୍ନ
ଯୁଝନ୍ତେ ଭେଟିଲେ ଯାଇ ଶଲ୍ୟ ସନ୍ନିଧାନ ।
ସହସ୍ରେକ ପାରିଦଣ୍ଡ ଘେନି ରାଜା ଶଲ୍ୟ
ଧୃଷ୍ଟଦ୍ୟୁମ୍ନ ତୁଲେ ରଣ କଲେ ମହାମଲ୍ଲ ।
ଶଲ୍ୟ ପୂରାଇ ଅଛନ୍ତି ଶର ପଞ୍ଚଷଠି
ନାରାଚର ତେଜେ କିବା ଅଗ୍ନି ଜଳି ଉଠି ।
ଗୁଣରେ ପୂରାଇଣ ଯେ ପଞ୍ଚସ୍ତରି ଶର
ପେଶିଲେ ଧୃଷ୍ଟଦ୍ୟୁମନ ଶଲ୍ୟର ଉପର ।
ବିନ୍ଧିବା ହସ୍ତ ବ୍ୟଗ୍ରତା ଦେଖି ତା ନ ପାରି
ଶଲ୍ୟ ନାରାଚ ପେଶିଲେ ଦିବ୍ୟ ଅସ୍ତ୍ର ଚାରି ।
ଯେସନେକ ଜଳଧାରା ବର୍ଷେ ଗଗନରୁ
ତେସନେକ ଶରମାନ ପଡୁଛି ଶୂନ୍ୟରୁ ।
ଦ୍ରୁପଦର ନନ୍ଦନ ଯେ ରଣେ ମହାଯୋଦ୍ଧି
ଏକାବେଳେ ପାଞ୍ଚଗୋଟି ନାରାଚ ସେ ବିନ୍ଧି ।
ଶଲ୍ୟଙ୍କର ଅସ୍ତ୍ରମାନ ଛେଦିଲା ସେ ଦୂରେ
ପୁଣି ଶର ବିନ୍ଧିଲା ସେ ଶଲ୍ୟ ରଥପରେ ।
ଶର ଯାଇ ଶଲ୍ୟ ରଥ ଭାଙ୍ଗି କଲା ଚୂନା
ସେ ଶର ଛେଦିଲା ପୁଣି ଶଲ୍ୟଙ୍କର ସେହ୍ନା ।
ରୁଧିରରେ ଜର ଜର ଶଲ୍ୟଙ୍କର ଅଙ୍ଗ
ରୋମେ ରୋମେ ଝରି ଦେହ ଦିଶଇ ସୁରଙ୍ଗ
ସେ ଭାରୋଇମଲ୍ଲ ଶଲ୍ୟ ପଡୁ ମୋହ ହୋଇ
ଦେଖି ଧୃଷ୍ଟଦ୍ୟୁମ୍ନ ଜୟ ଶଙ୍ଖକୁ ବଜାଇ ।
ରଣେ ନନ୍ଦିଘୋଷ ରଥ ବାହାନ୍ତି ଶ୍ରୀହରି
ଯେହ୍ନେ ଗମେ ଶ୍ୟେନପକ୍ଷୀ ପକ୍ଷକୁ ଉଭାରି ।
ନନ୍ଦିଘୋଷ ରଥ ଦେଖି ରାଧାର ନନ୍ଦନ
ସତ୍ୟବର ସାରଥିକି କହିଲା ଏସନ ।
ସମ୍ଭାଳି ସତ୍ୱର ବାହା ମୋହର ସ୍ୟନ୍ଦନ
ଆଜର ଯୁଦ୍ଧେ ମାରିବି କୃଷ୍ଣ ଅରଜୁନ ।
ସତ୍ୟବର ସାରଥି ଯେ ବାହିଲା ତୁରଙ୍ଗ
ପବନହୁଁ ରହୁବର ଚଳେ ଅତିବେଗ ।
ସହସ୍ର ଶର ବିନ୍ଧିଲା ବୀରବର କର୍ଣ୍ଣ
ପାଞ୍ଚଶର ବିନ୍ଧି ତାହା ଛେଦିଲା ଅର୍ଜ୍ଜୁନ ।
ପୁରି ନବଶତ ବାଣ ପୂରାଇଣ ଗୁଣେ
ରୋଷେ ବିନ୍ଧିଲାକ କର୍ଣ୍ଣ ପାର୍ଥ ନାରୟଣେ ।
ପଞ୍ଚତିରିଶ ନାରାଚ ଅରଜୁନ ବିନ୍ଧି
କର୍ଣ୍ଣର ନାରାଚମାନ ପକାଇଲେ ଛେଦି ।
ଖୁର୍ପିଶର ଗୁଣେ ଯୋଖି ବିନ୍ଧିଲା କିରୀଟୀ
କର୍ଣ୍ଣର ହୟ ସାରଥି ପକାଇଲା କାଟି ।
ବଜ୍ରଶର ପେଷି କର୍ଣ୍ଣ ରଥ ଗଲା ଭାଜି
ପାଦଗତିରେ ରାଧେୟ ଧାମେ ଗଳଗାଜି ।

ସୂଚୀମୁନା ନାରାଚ ଯେ ବିନ୍ଧିଲା କିରୀଟି
ପୁଣି ଛେଦିଲା କର୍ଣ୍ଣର କନ୍ଧୁ ଦ୍ରୋଣଗୋଟି ।
ଅସ୍ତ୍ରହୀନ ହୋଇ ଘୁଞ୍ଚିଗଲା ମହାମଲ୍ଲ
ପଛଆଡୁ ରଥ ଚଢ଼ି ଆସୁଥିଲେ ଶଲ୍ୟ ।
ଧାଡିକାରେ କର୍ଣ୍ଣ ଯାଇ ଶଲ୍ୟରଥେ ଉଠି
ନନ୍ଦିଘୋଷ ରଥପାଶେ ପୁନରପି ଭେଟି ।
ଆରୋହିଣ ଶଲ୍ୟ କର୍ଣ୍ଣ ଦୁହେଁ ଏକରଥ
ଆସନ୍ତେ ତାକୁ ବିନ୍ଧିଲେ ଶର ପୁଣି ପାର୍ଥ ।
ଶଲ୍ୟ ବୋଇଲେ ଆଉ କି ଦେଖୁଅଛ କର୍ଣ୍ଣ
ଶକତି ଘେନି ପ୍ରହାର କର କୃଷ୍ଣାର୍ଜ୍ଜୁନ ।
ଶଲ୍ୟର ବଚନ ଶୁଣି କର୍ଣ୍ଣ ମହାରଥୀ
ସ୍ତୁତି କରିଣ ଇନ୍ଦ୍ରଙ୍କୁ ମାଗିଲା ଶକତି ।
ନିଜ ଆସନ କମ୍ପନ୍ତେ ଜାଣି ମଘବାନ
ବୃହସ୍ପତିଙ୍କୁ ପୁଚ୍ଛନ୍ତି ପାଶକୁ ଡାକିଣ ।
କର୍ଣ୍ଣ ଧ୍ୟାନକରି ମୋତେ ମାଗୁଛି ଶକତି
ସମ୍ମୁଖେ ଭେଟ ପାଇଛି ପାର୍ଥ ଯଦୁପତି ।
ବୃହସ୍ପତି ସୁନାସୀରେ ବଚନ ବୋଇଲେ
ଅମରେ କେହ୍ନେ ବସିବୁ ଶକତି ତୁ ଦେଲେ ।
କିପାଇଁ ଶକତି ମାଗେ କେବଣ ପ୍ରସ୍ତାବେ
ମୁହିଁ ତ ନ ଜାଣେ ମୋତେ ତାହା କହ ଏବେ
ବାସବ ବୋଇଲେ ତହୁଁ ଶୁଣ ଆହେ ଗୁରୁ
ତୋଷେ ତାକୁ ଦେଇଅଛି ବର ମୁଁ ପୂର୍ବରୁ ।
ଯେକାଳେ ହେଲା ଭାରତେ ଯୁଦ୍ଧର ପ୍ରସ୍ତାବ
ଯୁଧିଷ୍ଠିରଙ୍କୁ କହିଲେ ଦେବ ବାସୁଦେବ ।
ଅଭେଦ କବଚ ବଜ୍ରଛଉରୀ କୁଣ୍ଡଳ
ସତ୍ୟ କରାଇ ଆଣନ୍ତୁ ହରି ଆଖଣ୍ଡଳ ।
ଏହା ଶୁଣି ପାର୍ଥ ତହୁଁ ସ୍ମରିଲେ ଆମ୍ଭଙ୍କୁ
ତାହା ବାକ୍ୟେ ଗଲୁ ଆମ୍ଭେ କର୍ଣ୍ଣ ଭୁବନକୁ ।
ତଳହସ୍ତ କରି ଆମ୍ଭେ ମାଗନ୍ତେଣ ଦାନ
ଶଙ୍ଖେ ନୀର ଭରି ସତ୍ୟ କଲା ଦାନୀକର୍ଣ୍ଣ ।
ଉଦକ ତୋଳି ଦିଅନ୍ତେ ମାଗିଲି ସେବେଳେ
ଅଭେଦ କବଚ ବଜ୍ରଛଉରୀ କୁଣ୍ଡଳେ ।
ଶୁଣ ଆହେ ବୃହସ୍ପତି କର୍ଣ୍ଣର ଯେ ସତ୍ୟ
ଦେହ ଚିରି ବଜ୍ରଛୌରୀ କାଢ଼ିଲା ତୁରିତ ।
ତାଳୁ ବିଦାରି କାଢ଼ିଲା କବଚଙ୍କ ମଣି
କର୍ଣ୍ଣୁ ଅମୃତ କୁଣ୍ଡଳ କାଢ଼ିଲା ସେକ୍ଷଣି ।
ଶରୀର ବିଦାରି କର୍ଣ୍ଣ ତିନିଦାନ ଦେଲା
ଦାନ ଭାରାରେ ମୋହର ଯାନ ନ ଚଳିଲା ।
ମାତଳି ବୋଇଲା ରଥ ନ ପାରିବ ଯାଇ
କର୍ଣ୍ଣକୁ ଏଥିରୁ କିଛି ଦିଅ ଲେଉଟାଇ ।

କର୍ଣ୍ଣକୁ ପ୍ରସନ୍ନେ ଯହୁଁ ଯାଚିଲି ମୁଁ ବର
ସେ ବୋଇଲା ଯେବେ ବର ଯାଚିଲ ପିଅର ।
ତେବେ ଏହି ବର ମୋତେ ଦିଅ ସୁରପତି
ତୁମ୍ଭର ଯେଉଁ ଭୁବନ ଅଛି ବାରସ୍ୱତୀ ।
ମୁଁ ନାସ୍ତିକଲି ଦୁଃସହ କଥା ତାର ଶୁଣି
ଐରାବତ ଗଜକୁ ସେ ମାଗିଲାକ ପୁଣି ।
ଏହା ମାଗନ୍ତେ ତାହାକୁ ନାସ୍ତିକଲି ମୁହିଁ
ପୁଣି ରମ୍ଭା ଅପସରା ମାଗିଲାକ ସେହି ।
ତାହା ଦେଇ ନ ପାରଇ କଲି ମୁହିଁ ନାସ୍ତି
ଚତୁର୍ଥେ ମାଗିଲା ମୋତେ ଏ ବଜ୍ରଶକତି ।
ମାଳତି ବୋଲେ ଏବେ କି ହେବ ସତ୍ୟଭଙ୍ଗ
ବଜ୍ର ଶକତିକି ତୁମ୍ଭେ କର୍ଣ୍ଣେ ଦିଅ ବେଗ ।
ଏ ବଚନେ ସତ୍ୟ କଲି ଦେବାକୁ ଶକତି
ବୋଇଲି ମୁଁ କର୍ଣ୍ଣ ତୋତେ ଦେବି ଏକଘାନ୍ତି ।
ସତ୍ୟ କରାଇଣ କର୍ଣ୍ଣ କହିଲାକ ମୋତେ
କୃଷ୍ଣ ଅର୍ଜ୍ଜୁନେ ମାରିବି କହେ ପିତା ତୋତେ ।
ବାସବ କହିଲେ ଏହା ମନେ ଅଛି ଭାବି
ତେଣୁ ବଜ୍ରଶକ୍ତି ମାଗେ କିପରି ମୁଁ ଦେବି ।
ବୃହସ୍ପତି ବୋଇଲେକ ଶୁଣ ଶଚୀପତି
ଏକାପାର୍ଥେ ମାରିବାକୁ ନ ମାଗେ ଶକତି ।
ପାର୍ଥକୁ ମାରିବାପାଇଁ ମାଗନ୍ତା ସେ ଯେବେ
ଅକାର୍ଯ୍ୟ ହୁଅନ୍ତା ତୋର ଜାଣ ମନେ ତେବେ
ଯଦ୍ୟପି ପ୍ରମାଦ କର୍ଣ୍ଣ ଚିନ୍ତିଲା କୃଷ୍ଣଙ୍କୁ
ତାଙ୍କୁ କେ ମାରିବ ସେହି ରଖିବେ ପାର୍ଥକୁ ।
ଇନ୍ଦ୍ରବଜ୍ର ଶକତିକି ଶ୍ରୀକରେ ଘେନିଲେ
କର୍ଣ୍ଣକୁ ପ୍ରାପତ ହୁଅ ବୋଲିଣ ପେଷିଲେ ।
ବଜ୍ର ସ୍ୱର୍ଗରୁ ଆସିଣ ମିଳିଲା ସେକ୍ଷଣି
ଶ୍ରୀକରେ ଧଇଲା ତାକୁ କର୍ଣ୍ଣ ବୀରମଣି ।
ଉଲ୍‌କାପାତ ହେଲା ପ୍ରାୟ ଦିଶିଲା ବ୍ରହ୍ମାଣ୍ଡ
ଦଲଦଲ କମ୍ପିଲାକ ମହୀ ନବଖଣ୍ଡ ।
ରାଧେୟ ଘେନିଣ ବଜ୍ର ଶକତିକି ହସ୍ତେ
ଶ୍ରୀକୃଷ୍ଣ ସୁମରି ବିଜେ କରିଲାକ ରଥେ ।
କର୍ଣ୍ଣର ହସ୍ତେ ଦେଖନ୍ତେ ବଜ୍ରର ଶକତି
ନନ୍ଦିଘୋଷ ଆଡ଼କରି ନେଲେ ଶିରୀପତି ।
ପ୍ରବେଶ ହୋଇଲେ ଯାଇ ଦ୍ରୋଣଙ୍କ ଛାମୁର
ତହୁଁ ସଂଗ୍ରାମ ବଢ଼ିଲା ଦ୍ରୋଣ ଅର୍ଜ୍ଜୁନର ।
ବିନ୍ଧନ୍ତି ନାରାଚ ଗୁରୁ ତୀକ୍ଷ୍ଣ ତୀକ୍ଷ୍ଣ ବାଛି
ଦୂରରୁ ଦେଖି ତାହାକୁ ଛେଦିଲେ ଶ୍ରୀବତ୍ସି ।
ଶର ବିନ୍ଧାବିନ୍ଧି ହେଲେ ଯଥା ବର୍ଷାଧାର
ବେଳୁଁ ବେଳ ସମର ଯେ ହେଲା ଗୁରୁତର ।

ଅନର୍ଯ୍ୟାପ୍ତ ଶର ଦ୍ରୋଣ ବିନ୍ଧି ଅନୁକ୍ଷଣ
ସେ ସର୍ବଅସ୍ତ୍ର ବିନାଶ କଲେ ଅରଜୁନ ।
ଏପରି ଅସ୍ତ୍ର ବିନ୍ଧିଲେ ବୀର ଫାଲଗୁନି
ସେ ଶରତ୍ରାସେ କମ୍ପିଲା ଏହି ପୁର ତିନି ।
ବୈଷ୍ଣବ ଶର ବିନ୍ଧିଲେ ଗୁରୁ ଅତିରୋଷେ
କାଳାନଳ ପ୍ରାୟ ଘୋଟି ଆସେ ସେ ଆକାଶେ
ଜଳ ତରଙ୍ଗ ନାମରେ ପଞ୍ଚାଶ ମାର୍ଗଣ
ମହାକୋପଭର ହୋଇ ବିନ୍ଧିଲେ ଅର୍ଜୁନ ।
ଦ୍ରୋଣଙ୍କ ସାରଥି ଆଉ ଅଶ୍ୱକୁ ଛେଦିଲା
ବଜ୍ର ବିଘାତ ପରାୟେ ରଥ ଭାଙ୍ଗିଗଲା ।
ବିରଥ ହୋଇଣ ଆଡ଼ ହୋଇଗଲେ ଦ୍ରୋଣ
ଅଶ୍ୱଥାମା ରଥେ ବିଜେ କଲେ ତତକ୍ଷଣ ।
ପିତାପୁତ୍ର ବେନିଜର ବିଜେ ଏକରଥେ
ଦୁହେଁ ବିନ୍ଧିଲେ ନାରାଚ ରୋଷେ ଅପ୍ରମିତେ
ଅଶୀସସ୍ର ବଳ ଧନୁ ଦୁହିଁଙ୍କର ହସ୍ତ
ଲକ୍ଷ ଲକ୍ଷ ନାରାଚ ସେ ବିନ୍ଧି ପିତା ପୁତ୍ର ।
ପିତାପୁତ୍ର ବେନି ଯୋଦ୍ଧା ଅତୁଳିତ ମଲ୍ଲ
ଭାରତେ ଭାରୋଇମଲ୍ଲ କ୍ଷତ୍ରୀ ଅନର୍ଗଳ ।
କ୍ଷତ୍ରିୟଙ୍କୁ ଅସମ୍ଭବ କଥା ଯାହାଙ୍କର
ଶୁଣନ୍ତେ ଚମକିଉଠେ ହୃଦୟ ତାଙ୍କର ।
ରୋଷେ ଅର୍ଜୁନଙ୍କୁ ଏତେ ଏତେ ବାଣ ମାରି
ପୃଥ୍ୱୀଯାକ ଘୋଟାଇଲେ ପ୍ରଳୟ ତିମିରି ।
ଆକାଶରେ ଥାଇ ତ୍ରାସ କଲେ ଦେବତାଏ
ନାରାଚ ଶୂନ୍ୟେ ପଡ଼ନ୍ତେ ଦିଶେ ଜ୍ୟୋତିର୍ମୟେ
ଅଶ୍ୱକୁ ଦରାଣ୍ଡିନ୍ତେ ଯେ ଦେବ ଶିରୀପତି
କର ଲାଗନ୍ତେ ସେ ଉଠି ଗଗନେ ଲାଗନ୍ତି ।
ପାର୍ଥ ବୋଇଲା ତେଜିଲ ଦେବ ରଣଭୂମି
ପଶ୍ଚାତକୁ ମୋତେ ଦୋଷୀ ନ କରିବ ସ୍ୱାମୀ
କ୍ଷତ୍ରିୟମାନଙ୍କୁ ନୁହେଁ ଏ ଉଚିତ କର୍ମ
ସଂଗ୍ରାମ ତେଜି ଅଇଲ ହୋଇଲା ଅଧର୍ମ ।
ଶ୍ରୀକୃଷ୍ଣ ଉତ୍ତର କଲେ ପାର୍ଥର ବଚନେ
ନ ଦିଶିଲା ଦିଗ ପୁଣି ଏହି ଅଶ୍ୱମାନେ ।
ହସ୍ତେ ଦରାଣ୍ଡନ୍ତେ ଅଶ୍ୱ ହେଲେ ଶୂନ୍ୟଗାମୀ
ତେଣୁକରି ଉପେକ୍ଷିଲେ ଜାଣ ରଣଭୂମି ।
ନାରାୟଣଙ୍କ ବଚନେ ସୁଭଦ୍ରାର ନାହା
ବୋଇଲେ ରଣଭୂମିକି ରଥ ମୋର ବାହା ।
ଶୁଣି ରଥ ଚଳାଇଲେ ପ୍ରଭୁ ସେ ରାତ୍ରରେ
ସେକ୍ଷଣି ପ୍ରବେଶି ପାର୍ଥ ମାତିଲେ ସମରେ ।
ହେ ଚୈତନ୍ୟ ଭୀମଯୁଦ୍ଧ କଳିତ କି ପାରି
କୃତାନ୍ତକ ବିଜୟ କି କାଳଦଣ୍ଡ ଧରି ।

କେ ରଥେ କେ ଗଜ ଅଶ୍ୱେ ଚଢ଼ି ଯୁଝୁଛନ୍ତି
ଭୀମସେନ ପ୍ରହାରନ୍ତେ ସମସ୍ତେ ପଡ଼ନ୍ତି ।
ନିରୋଧି ପିଟନ୍ତେ ସର୍ବେ ହେଉଛନ୍ତି ଚୂନା
ସମରରେ ମହାଗୋଳ କରେ ବୀରଭୀମା ।
ରଥପରେ ଅନ୍ୟ ରଥ କଚାଡ଼ଇ ନେଇ
ତାହା ସବୁ ଭାଙ୍ଗିଯାଏ ଖଣ୍ଡ ଖଣ୍ଡ ହୋଇ ।
ଭୀମସେନଙ୍କ ନନ୍ଦନ ଘଟୋତ୍କଚ ଯେହି
ରଣ ରଙ୍ଗରେ ଅସୁର କପଟ କରଇ ।
କୋଟିଏ ଯୋଦ୍ଧା ଘେନି ସେ ହିଡ଼ିମ୍ବିକ ସୁତ
ବଦନ ବିସ୍ତାର କରି ଗିଳେ ରଥୀରଥ ।
ଗଜ ଅଶ୍ୱ ସହିତରେ ଗିଳନ୍ତି କୌଣପେ
ବହୁ ସୈନ୍ୟ ନାଶଗଲା ଘଟୋତ୍କଚ କୋପେ
ଘଟୋତ୍କଚର ଘଟୁକା ନାମେ ଯେ କୁମାର
ତାହାର ମାୟା ଦେବଙ୍କୁ ଅଟେ ଅଗୋଚର ।
ସଇନ୍ୟ ସହିତ ଗଜ ଅଶ୍ୱ ଆଦିକରି
ବିଶ୍ୱରୂପ ବିକାଶିଣ ଗର୍ଭେ ସବୁ ଭରି ।
ଏକମୁଖ ହୋଇ ବାଣ ବିନ୍ଧନ୍ତି କୌରବେ
ସେ ବାଣ ପଶଇ ଯାଇ ଘଟୁକାର ଗର୍ଭେ ।
ଦେଖିଣ ଭାଜିଲେ ତହୁଁ ସମସ୍ତ ସଇନି
ଅଳାୟୁଧେ ରାଇକରି ବୋଇଲେ ଶକୁନି ।
ଘଟୁକା ସମସ୍ତ ସୈନ୍ୟ କରୁଅଛି ବଧ
ତାହାର ସଙ୍ଗରେ ତୁମ୍ଭେ କର ଯାଇଁ ଯୁଦ୍ଧ ।
ରାକ୍ଷସେ ରାକ୍ଷସେ ତୁମ୍ଭେ ହୁଅ ଅନ୍ୟୋଅନି
ତୁହି ସମର କରିଣ ବଞ୍ଚାଅ ସଇନି ।
ମନ୍ତ୍ରୀର ବଚନ ଶୁଣି ଅଳାୟୁଧ ମଲ୍ଲ
ଧାଇଁଲା ସେ ବେନିକରେ ଧରିଣ କୋଦାଳ ।
ସଙ୍ଗେ ପଚାଶ ହଜାର ଗଜାରୋହିଛନ୍ତି
ସବୁରି କରେ କୋଦାଳ କୁଠାର ଶକତି ।
ଘଟୁକା ଦେଖି ଉଗାଳେ କରେ ଶସ୍ତ୍ର ଧରି
ସମର ସମ୍ଭାଳେ ବିଳିକିଳା ନାଦକରି ।
କୋଦାଳ ବୁଲାଇ ବେଗେ ଅଳାୟୁଧ ଉଠି
ଘଟୁକାର ଉପରକୁ ଲକ୍ଷ୍ୟକରି ପିଟି ।
ଘଟୋତ୍କଚର ନନ୍ଦନ ବଢ଼ାଇଣ ହସ୍ତ
ଛଡ଼ାଇ ନେଲା କୋଦାଳ ତା ହସ୍ତୁ ତୁରିତ ।
ସେହି କୋଦାଳ ଆୟୁଧ ସବଳେ ବୁଲାଇ
ଅଳାୟୁଧର ଉପରେ ପିଟିଲାକ ନେଇ ।
ପିଟନ୍ତେ ଶିର ମଧରେ କୋଦାଳ ପଶିଲା
ଅଳମ୍ବୁଷର ନନ୍ଦନ ଦ୍ୱିଫାଳ ହୋଇଲା ।
ରଣ ପ୍ରାଙ୍ଗଣେ ନିଧନ ହ୍ୱନ୍ତେ ଅଳାୟୁଧ
ବହୁ ସୈନ୍ୟଙ୍କୁ ଘଟୁକା ପ୍ରାଣେ କଲା ବଧ ।

ଅଳାୟୁଧ ପଡ଼ନ୍ତେଣ ଭାଜିଲେ ସଇନି
ଘଟୁକାବଳ ଉଠିଲେ ଶାଳ ଶିଳ ଘେନି ।
ଅଳାୟୁଧର ଅର୍ବୁଦେ ଥିଲେ ସୈନ୍ୟବଳ
ଘଟୁକା ବିବାଦେ ନାଶଗଲେ ସେ ସକଳ ।
ସମରେ ନିପାତ ହେଲେ ଯହୁଁ କଉଣପେ
ଘଟୁକାବଳ ଧ୍ୱଂସିଲେ ଦେଖାଇ ପ୍ରତାପେ ।
ଘଟୁକାବଳ ଉଠିଲେ ଯହୁଁ ଗଳଗାଜି
ଅଳାୟୁଧ ବଳ ସବୁ ପକାଇଲେ ଭାଜି ।
ବିଶେଷ ଦୁର୍ଦ୍ଧାନ୍ତ ପୁଣି ଅମାପ କୌଣପେ
ଧ୍ୱଂସିଲେ ଦାନବବଳ ଯୁଦ୍ଧେ ନିଶାରୂପେ ।
ସୈନ୍ୟବଳ ପଳାବନ୍ତେ ଦେଖିଣ ଶକୁନି
ରହ ରହ ବୋଲି ଡାକି ସମ୍ଭାଳେ ସଇନି ।
ବିକଟ ମୂରତି ପୁଣି ମୁଖ ବିକଟାଳ
ଲହ ଜିହ୍ୱା ଖାଙ୍କର ଯେ ଫୁରୁଫୁରୁ ବାଳ ।
ଏସନକ ରୂପ ଦେଖି ସେମାନେ ପଳାନ୍ତି
ଦାନବବଳ ଗୋଡ଼ାଇ ପଛରୁ ଗିଳନ୍ତି ।
ତା ଦେଖି ଶକୁନି ବୋଲେ ଡାକି ଅଳମ୍ବୁଷ
ବହୁତ ସୈନ୍ୟ ମାଇଲା ଘଟୁକା ରାକ୍ଷସ ।
ପୁତ୍ର ତୋର ଅଳାୟୁଧ ସମରେ ମଲାଣି
ଅର୍ବୁଦେକ ଯୋଦ୍ଧା ତୋର ମରିଲେଣି ପୁଣି ।
ରାଜାଙ୍କ ମଇତ୍ର ତୁହି ଅଟୁ ଯେ ବିଶ୍ୱାସ
ତୋହର ଦେଖନ୍ତେ ଏତେ ସୈନ୍ୟ ଗଲେ ନାଶ
କି ବୁଦ୍ଧି କରିବୁ ଆଉ ଏ ବିପଦ ବେଳେ
ଦୁର୍ଯ୍ୟୋଧନ ସହାୟ କି ନ ହେବୁ ଏକାଳେ ।
ପୁତ୍ରବଧ ଶୁଣିଣ ସେ ତ୍ରିଜଟାର ନାତି
ଚଳିଲା କଟାରୀ ଘେନି ଚଢ଼ି ମତ୍ତହସ୍ତୀ ।
କୋପେ କରବାଳ ଘେନି ଗମନ୍ତେ ରାକ୍ଷସ
ବୃହତ ପର୍ବତ ଜିଣି ଶରୀର ପ୍ରକାଶ ।
ଜାନୁ ପର୍ଯ୍ୟନ୍ତ ଲମ୍ବିଛି ତାର ବେନିବାହୁ
ନିଶାକାଳେ ଯେହ୍ନେ ଚନ୍ଦ୍ରଗରାସଇ ରାହୁ ।
ପଞ୍ଚାଶତ ଯୋଦ୍ଧା ସଙ୍ଗେ ଘେନିଣ ରାକ୍ଷସ
ଘଟୁକା ବଳ ଓଗାଳେ ହୋଇ ମହାରୋଷ ।
ରଣଧନ୍ଦୋଳ ଘଟୁକା ବଳକୁ ନିରୋଧି
ଧାଇଁଯାଇ ଓଗାଳିଲେ ସେ ପ୍ରଚଣ୍ଡ ଯୋଦ୍ଧି ।
ଆହେ ଚୈତନ୍ୟ ସେ ମହାବଳିଷ୍ଠ ସମରେ
ସହସ୍ରେ ଯୋଦ୍ଧା ମାଇଲା କ୍ଷଣକ ମଧ୍ୟରେ ।
ନିଜ ସଇନ୍ୟ ପଡ଼ନ୍ତେ ଦେଖିଲା ଘଟୁକା
ବେଗେ ଥାଟ ପଛକରି ଓଗାଳିଲା ଏକା ।
ଦେଖିଣ କୋପାନଳରେ ତ୍ରିଜଟାର ନାତି
ଖଡ୍‌ଗ ଧରି ଘଟୁକାକୁ ପ୍ରହାରିଲା ଧାତି ।

ହିଡ଼ିମ୍ବୀ ଅସୁରୀ ନାତି ବଞ୍ଚାଇଣ ଗାତ୍ର
ପରିଘ ଘେନି ପିଟିଲା ତାହାକୁ ତୁରିତ ।
ଅଳମ୍ବୁଷ ଚଢ଼ିଥିଲା ଏକ ମତ୍ତହସ୍ତୀ
ଘଟୁକା ପ୍ରହାର ଘାତେ ପଡ଼ିଲା ସେ ଧାତି ।
ବାହନ ବିନଷ୍ଟ ହେତୁ ହେଲା ପାଦଗତି
ସିଂହଗତି ପରାୟେକ କରି ବେଗଗତି ।
ରୋଷେଣ ଧାଇଁଲା ବୀର ଧରି ଗଦାବର
ଲୁହାର ସେ ଦୁଇଗଦା ଶତେ ଶତେ ଭାର ।
ଘଟୁକାକୁ ପ୍ରହାରିଲା ଅଳମ୍ବୁଷ ଦୈତ୍ୟ
ଘଟୁକା ଆରୋହୀ ଥିଲା ଏକ ଲୌହ ରଥ ।
ଅଳମ୍ବୁଷ ଗଦାଘାତେ ତାହା ଭଗ୍ନ ହେଲା
ରଥ ଭାଙ୍ଗନ୍ତେ ସେ ବୀର ବିରଥୀ ହୋଇଲା
ପାଦଗତି ହୋଇ ସେହି ହିଡ଼ିମ୍ବିକୀ ନାତି
ବଜ୍ରାବଳି ଗଦା ନେଇ ପିଟିଲାକ ଧାତି ।
ଦେଖି ଅଳମ୍ବୁଷ ବାମଭୁଜକୁ ପାତିଲା
ଭୁଜେ ବାଜି ଲୌହଗଦା ଚୂର୍ଣ୍ଣ ହୋଇଗଲା ।
ଶୂନ୍ୟହସ୍ତ ହେଲା ଯହୁଁ ହିଡ଼ିମ୍ବିକୀ ନାତି
କୁଠାର ଘେନି ପିଟିଲା ଅଳମ୍ବୁଷ ଧାତି ।
ଆହେ ଚୈତନ୍ୟ ତାଳୁରେ ପଡ଼ି ସେ କୁଠାର
ବେନିଫାଳ କଲା ସେହୁ ଘଟୁକାର ଶିର ।
ଦେଖି ସୈନ୍ୟ ପ୍ରଶଂସନ୍ତି ସାଧୁ ସାଧୁ ବୋଲି
ରାଗେ ଅଳମ୍ବୁଷ ବୀର ଛାଡ଼ଇ ବୋବାଳି ।
ହିଡ଼ିମ୍ବକୀ ନନ୍ଦନ ଯେ କକ୍ଷା ଜଗଜ୍ଜେଠି
ବୃକୋଦର ସମ ଜିଣିପାରେ ନବସୃଷ୍ଟି ।
ଅନ୍ତରୀକ୍ଷେ ବୁଲାଇ ସେ ନବନିଶି କୁନ୍ତ
ଅଳମ୍ବୁଷର ଉପରେ ମାଇଲା ତୁରିତ ।
ପୁନଃ ପୁନଃ ମାଇଲା ସେ ତୋଳି କରବାଳ
ତାହା ପଡ଼େ ଅଳମ୍ବୁଷ ଦୈତ୍ୟ ବକ୍ଷସ୍ଥଳ ।
ଶିବ ବରେ ତା ଶରୀର ଅଟେ ବଜ୍ରସେହ୍ନା
କୁନ୍ତ କରବାଳ ପଡ଼ି ସବୁ ହେଲା ଚୂନା ।
ଶସ୍ତ୍ରର ବିଘାତ ପାଇ ଅଳମ୍ବୁଷ ଉଠି
ଘଟୋତ୍କଚକୁ ମାଇଲା ବଜ୍ରମୁନା ଯାଠି ।
ହିଡ଼ିମ୍ବିକୀର ନନ୍ଦନ ଧରି ବାମକରେ
ଭାଙ୍ଗି ପକାଇଲା ତାହା ପାଦ ପ୍ରହାରରେ ।
ପୁଣି କୁନ୍ତ ବୁଲାଇଣ ପ୍ରହାରିଲା ରୋଷେ
ବେନିଖଣ୍ଡ କରି ତାହା ଭାଙ୍ଗି ଅଳମ୍ବୁଷେ ।
ଧାମଇଁ ଅସୁରେଶ୍ୱର କି ସେ ମେଘମାଳା
ହସ୍ତରେ ଧଇଲା ପୁଣି ଖଡ୍‌ଗ ବେନିଫଳା ।
ଅନ୍ତରୀକ୍ଷରେ ବୁଲାଇ ଫିଙ୍ଗେ ଖଡ୍‌ଗବର
ପୁଣି ଆକର୍ଷି ବିନ୍ଧିଲା ଫଳା ତା ଉପର ।

ବୃକୋଦର ନନ୍ଦନର ବକ୍ଷସ୍ଥଳେ ପଡ଼ି
ବେନିଖଣ୍ଡ ହୋଇଣ ସେ ପଡ଼ିଲାକ ଝଡ଼ି ।
କୋପେ ଅଳମ୍ବୁଷ ଧରି ଲୁହାର ମୂଷଳେ
ଘଟୋତ୍କଚ ବକ୍ଷସ୍ଥଳେ ପିଟିଲା ସବଳେ ।
ଦେଖି ଘଟୋତ୍କଚ ବେଗେ ପାତି ଭୁଜଦଣ୍ଡ
ଶୂଳ ଶକତିକୁ ଧରି କଲା ଖଣ୍ଡ ଖଣ୍ଡ ।
ଶୂନ୍ୟହସ୍ତ ହୋଇଣ ଯେ ରହେ ବେନିଯୋଧୀ
ମୁଥେ ମୁଥ ମରାମରି ନିରଉପରୋଧୀ ।
ବଜ୍ରମୁଥ ଶବଦରେ କମ୍ପଇ ଆକାଶ
ଏହି ଯୁଦ୍ଧେ ଘଟୋତ୍କଚେ ଧରି ଅଳମ୍ବୁଷ ।
ତାହାର ବକ୍ଷ ଉପରେ ମାଡ଼ିଣ ବସିଲା
ଭୀମପୁତ୍ର ପୁଣି ତାକୁ ଲେଉଟାଇ ଦେଲା ।
ଭୁଜେ ଭୁଜ ଭିଡ଼ାଭିଡ଼ି ହୋଇଛନ୍ତି ସେହି
ବେନି ମତ୍ତଷଣ୍ଢ ପ୍ରାୟ ସେ ଛବି ଦିଶଇ ।
ଶିରେ ଶିର ପିଟାପିଟି ହେଉଛନ୍ତି ବେନି
ଲୌହେ ଲୌହ ଘର୍ଷଣରେ ଯଥା ଉଠେ ବହ୍ନି
ଚାପୋଡ଼ାମାନ ମାରନ୍ତି ଓଷ୍ଠ ଦନ୍ତ ଚାପି
ରୁଧିର ବହଇ ଦେହୁ ରୁମେ ରୁମେ ବ୍ୟାପି ।
ରୁଧିରରେ ଜର ଜର ଦୁହିଁଙ୍କର କାୟ
ଦିଶନ୍ତି ବେନି ଯାମଳା ବୃକ୍ଷର ପରାୟ ।
ପଡ଼ନ୍ତେ ଉଠନ୍ତେ ଉଡ଼େ ଗଗନରେ ଧୂଳି
ବେନିଙ୍କ ପଡ଼ିବାଘାତେ କମ୍ପେ ମହୀସ୍ଥଳୀ ।
ଘଟୋତ୍କଚ ଅଳମ୍ବୁଷ ବେନି ଯୁଦ୍ଧକଥା
ଦେଖିଣ ହୃଦେ କମ୍ପଇ ଯେ ଯୁଦ୍ଧ ଶକତା ।
ଗଡ଼ନ୍ତେ ପଡ଼ନ୍ତେ ଦୁହେଁ କମ୍ପଇ ବ୍ରହ୍ମାଣ୍ଡ
ପାଦଭରେ ଦଲ ଦଲ ମହୀ ନବଖଣ୍ଡ ।
ଦୁଃସହ ପ୍ରତିଜ୍ଞା ତାହା ନ ସରେ କହନ୍ତେ
ସଂକ୍ଷେପି ଲେଖିଲେ ତାହା ନ ସରେ କିଞ୍ଚିତେ
ସମରେ ବିଅର୍ଥ ହୋଇ ହିଡ଼ିମ୍ବିକୀ ସୂନୁ
ରଣରଙ୍ଗେ ମାତି ହେଲା ଅଶକତ ତନୁ ।
ଅଳମ୍ବୁଷ ଦୈତ୍ୟ ତାକୁ ବସିଲାକ ମାଡ଼ି
ନିର୍ବନ୍ଧ କରି ଧଇଲା ବେନିକରେ ଭିଡ଼ି ।
ତା ବକ୍ଷ ସ୍ଥଳେ ପ୍ରହାର କଲା ବୀରମଣି
ଗର୍ଜଇ ଯେ ଘଟୋତ୍କଚ ମତ୍ତନାଗ ଜିଣି ।
ଅଳମ୍ବୁଷକୁ ପ୍ରଶଂସା କରନ୍ତି କୌରବେ
ବହୁତ ପ୍ରଶଂସା କରେ କୁରୁରାଜ ଦେବେ ।
ଘଟୋତ୍କଚର ନିଧନେ ନ ବର୍ତ୍ତିବ ଭୀମା
ଏବେ ମଇତ୍ର ମୋହର ରଖିଲୁ ଗାରିମା ।
ଏପରି ବହୁ ପ୍ରଶଂସା କରେ କୁରୁସାଇଁ
ଘଟୋତ୍କଚ ସବୁ ଶୁଣେ ତଳେ ପଡ଼ି ରହି ।

ହୁଂକାର ଶବଦ କରି ଭୀମଙ୍କ ଆତ୍ମଜ
କରୀପରି ଉଠି ବନ କନ୍ଦରର ରାଜ ।
ଧାଡିକାରେ ଲେଉଟାଇ ସେ ଅଳମ୍ବୁଷକୁ
ସିଂହ ପରାୟେ ମାଡ଼ିଣ ବସିଲା ତାହାକୁ ।
ନଖଦ୍ୱାରା ବିଦାରିଲା ତାର ବୁକୁ ରାଗେ
ମୁଥମାନ ପ୍ରହାରିଲା ତା ତୋଟିକି ବେଗେ ।
ରେ ରେ ଅସୁର ମହିମା ଅଟେ ତୋର ଧନ୍ୟ
ଆଜ ବୁକୁ ବିଦାରିବି ରଖୁ ଦୁର୍ଯ୍ୟୋଧନ ।
ଏ କୁରୁସାଗରେ ଛନ୍ତି ବହୁ ମହାଯୋଧୀ
ଅଳମ୍ବୁଷ ଦୈତ୍ୟକୁ କେ ରଖୁ କରି ବୁଦ୍ଧି ।
ମାନଗୋବିନ୍ଦ ରାଜାର ଅଟୁ ପ୍ରାଣସଖା
ଦ୍ରୋଣ କର୍ଣ୍ଣ ଶଲ୍ୟ ଥାଉଁ ହେଲୁ ତୁ ନିରେଖା ।
ଏପରି ପ୍ରତିଜ୍ଞା ଶୁଣି କର୍ଣ୍ଣେ ବୋଲେ ଶଲ୍ୟ
କି ଦେଖୁ କର୍ଣ୍ଣ ଏ ରାଜା ମିତ୍ର ମହାମଲ୍ଲ ।
ଶଚୀପତି ଦେଲା ତୋତେ ଯେ ବଜ୍ର ଶକତି
କୋଟିଏ କିରଣ ଯାର ସୂର୍ଯ୍ୟସମ ଜ୍ୟୋତି ।
କ୍ଷତ୍ରିପଣ ନ ରଖୁ ତୁ ଦେବଅସ୍ତ୍ର ଥାଉଁ
ଅଳମ୍ବୁଷେ ରକ୍ଷା କର ତୋ ପ୍ରତିଜ୍ଞା ରହୁ ।
ଘଟୋତ୍କଚେ ମାରି ଅଳମ୍ବୁଷେ କର ରକ୍ଷା
ଦେଖନ୍ତୁ ସରବ ଜନେ ଏ ତୋହର କକ୍ଷା ।
ଶଲ୍ୟ ପୁରୁଷାର୍ଥ କରି କହନ୍ତେଣ ବାଣୀ
ରାଧେୟ ଯେ ପ୍ରତିବାକ୍ୟ ନ ଦେଲା ତା ଶୁଣି
ଘଟ ବୋଲେ ନାହିଁ କେହି ତୋତେ ରଖିବାକୁ
କାଢ଼ିଲା ତା ଅନ୍ତ ଦନ୍ତେ କାମୁଡ଼ିଣ ବୁକୁ ।
ଭୁଜ ମୋଡ଼ି ମାଡ଼ିବସି ଉପାଡ଼ିଲା ଶିର
ଗିରିରୁ ବହିଲା ପ୍ରାୟ ବହିଲା ରୁଧିର ।
ଗିରି ସମ ଦେଖାଯାଏ ତାର ମୃତ୍ୟୁକାୟ
ଧନ୍ୟ ଘଟୋତ୍କଚ ଥାଟେ ଶୁଭେ ଜୟ ଜୟ ।
ଆହେ ପ୍ରଭୁ ତ୍ରିଲୋଚନ କଇଳାସବାସୀ
ପ୍ରସନ୍ନ ହୁଅ ମୋଠାରେ କରୁଣା ପ୍ରକାଶି ।
ତୁମ୍ଭେ ପ୍ରଭୁ ହୋଇଥାଅ ଯାଠାରେ ସଦୟ
ତାକୁ ଏ ସଂସାର ମଧ୍ୟେ ନାହିଁ କିଛି ଭୟ ।
ସୂର୍ଯ୍ୟ ଶଶାଙ୍କ ଅନଳ ତୁମ୍ଭର ନୟନ
ଅନଳ ନେତ୍ରେ କାମକୁ କଲ ଯେ ଦହନ ।
ଡମ୍ବରୁ ତୁମ୍ଭ ହସ୍ତରେ ସଦା ଥାଏ ରହି
ନାମାମୃତ ପାନେ ଥାଅ ମନକୁ ମଜ୍ଜାଇ ।
ହେ ଭୂତେଶ ଭବିଷ୍ୟ ହେ ଭୂତ ବର୍ତ୍ତମାନ
ଏହାସବୁ ଜାଣି କରି ଆପଦ ଭଞ୍ଜନ ।
ବିଷ୍ଣୁପ୍ରିୟା ତୁମ୍ଭ କଟିଦେଶେ ବ୍ୟାଘ୍ରାମ୍ବର
ଚନ୍ଦ୍ରକୁ ଧରିଣ ନାମ ଯେ ଚନ୍ଦ୍ରଶେଖର ।

ନ ବଧେ ତୁମ୍ଭଙ୍କୁ କେବେ କାଳ କାମ ଭୟ
ଲଭନ୍ତି ପରମଗତି କଲେ ତୋ ଆଶ୍ରୟ ।
ଭକତବତ୍ସଳ ତୁମ୍ଭେ ପରଦୁଃଖେ ଦୁଃଖୀ
ତୋ ଭକ୍ତ ଯେ ଜନ ସେହି ଲଭେ ସଦାସୁଖୀ
ତୁମ୍ଭେ ଦେବଦେବ ପ୍ରଭୁ ଦେବତାଙ୍କ ଗୁରୁ
ତାଣ୍ଡବରୂପୀ ନାଟୁଆ ରୂପକୁ ତୁ ଧରୁ ।
ତୋହର ମହିମା ମୁଖେ କେ କହି ପାରିବ
ତୁମ୍ଭର ଚରିତ ସବୁ ଦେବଙ୍କୁ ଦୁର୍ଲ୍ଲଭ ।
ତୁମ୍ଭ କମଳ ଚରଣେ ସଦା ରହୁ ଆଶ
ଶାରଳା ଦାସର ପୂର୍ଣ୍ଣ କର ଅଭିଳାଷ ।

■ ■ ■

## କର୍ଣ୍ଣ ଅର୍ଜ୍ଜୁନଙ୍କ ଯୁଦ୍ଧ ଓ ହନୁମାନଙ୍କର ବକ୍ରାଙ୍ଗ ହେବାର କାରଣ

ବଦନ୍ତି ଅଗସ୍ତି ଶୁଣ ବୈବସ୍ୱତ ମନୁ
ଅଳମ୍ବୁଷେ ମାରି ବିଶ୍ୱରୂପୀ ଭୀମସୂନୁ ।
ବେନିପାଟି ବିସ୍ତାରିଣ ସମର ପ୍ରାଙ୍ଗଣେ
ଦେଖି ଭୟେ ପଳାଇଲେ ରକ୍ଷବଳମାନେ ।
ପାଞ୍ଚଶତ ଯୋଦ୍ଧା ତହିଁ ଥିଲେ କଉଣପେ
ଭୀମସୁତ ନାଶକଲା ସେ ସବୁଙ୍କୁ ଦର୍ପେ ।
ପାଟି ବିସ୍ତାରି ହୋଇଲା ମହା ବିଶ୍ୱରୂପୀ
ପଞ୍ଚବିଂଶ ରଥୀ ଗିଳିଦେଲା କାମରୂପୀ ।
ଏହିପରି ସୈନ୍ୟବଳ କରନ୍ତେଣ କ୍ଷୟ
ତା ଆଗେ କେ ନ ରହିଲେ ପାଇ ମହାଭୟ ।
ଘଟୁକା ଛାମୁରୁ ରଥ କର୍ଣ୍ଣ ଆଡ଼ କଲା
ଯାନ୍ତେ ନନ୍ଦିଘୋଷ ରଥ ବାଟରେ ଭେଟିଲା ।
କର୍ଣ୍ଣକୁ ଦେଖି ଆନନ୍ଦ ବୀର ଫାଲଗୁନି ।
ମାଇଲେକ ଅର୍ଦ୍ଧଚନ୍ଦ୍ର ବାଣ କରେ ଘେନି ।
ରାଧାନନ୍ଦନ ବସାଇ ଗୁଣେ ପାଞ୍ଚବାଣ
ପ୍ରଥମରେ ବିନ୍ଧଇ ସେ ସାରଥିକି ପୁଣ ।
ପୁଣି ପାଞ୍ଚବାଣ ଘେନିକରି ରାଧାସୁତ
ଅରଜୁନ ଉପରକୁ ବିନ୍ଧିଲା ତୁରିତ ।
ପୁଣି ବିଂଶବାଣ କର୍ଣ୍ଣ ଗୁଣରେ ବସାଇ
ଆକର୍ଷି ବିନ୍ଧିଲା ଚାରିଅଶ୍ୱଙ୍କୁ ନିଠାଇ ।
ପାଞ୍ଚବାଣ ମାଇଲା ଯେ କପିକେତନକୁ
ପୁଣି ପାଞ୍ଚବାଣ ନନ୍ଦିଘୋଷ ଉପରକୁ ।
ଶୁଣ ଆହେ ଚଇତନ କର୍ଣ୍ଣର ମହିମା
ଭାରତ ଯୁଦ୍ଧେ ତାହାରି ଏସନ ଗାରିମା ।
ପୁଣି ଧନୁର୍ଗୁଣ ସେହୁ ଆକର୍ଣ୍ଣ ଓଟାରି
କୃଷ୍ଣ ଅର୍ଜ୍ଜୁନଙ୍କୁ ଦଶ ଦଶ ବାଣ ମାରି ।
ଏହା ଦେଖି କୋପ ବହି ପାର୍ଥ ମହାବୀର
ଧାତିକାରେ ଧଇଲେ ସେ ଗାଣ୍ଡୀବକୁ କର ।
ହୃଦେ ମନ୍ତ୍ର ସ୍ମରି ପଞ୍ଚବିଂଶ ବାଣ ମାରି
ଧାତିକାରେ ଛେଦି ଦେଲେ କର୍ଣ୍ଣ ହୟ ଚାରି ।
ବାବଲ ଶରେକ ମାରି ବୀରବର ପାର୍ଥ
ଶତଖଣ୍ଡ କରି ଭାଙ୍ଗିଦ୍ୟନ୍ତେ କର୍ଣ୍ଣ ରଥ ।
ରଥ ଭାଙ୍ଗନ୍ତେ ବିରଥ ରାଧାସୁତ ହେଲା
ଆରେକ ରଥେ ଚଢ଼ିଲା କ୍ଷତ୍ରୀ ଅନର୍ଗଳା ।
ଆଖି ପିଛାଡ଼ିବା ମାତ୍ରେ ରଥ ଧାତିକାରେ
ଭେଟାଇଲା ନେଇ ନନ୍ଦିଘୋଷର ଛାମୁରେ ।
ଗୁଣରେ ବସାଇ ଏକଶତ ଶର କର୍ଣ୍ଣ
ଅର୍ଜ୍ଜୁନଙ୍କ ଉପରକୁ ବିନ୍ଧିଲା ବହନ ।
କୋପେ ଅର୍ଜ୍ଜୁନ ପେଶନ୍ତେ ବ୍ୟାଘ୍ରମୁନାଶର
ଛେଦି ପକାଇଲା ସବୁ ନାରାଚ କର୍ଣ୍ଣର ।
ପୁଣି ବିନ୍ଧିଲେ ନାରାଚ ଅଗ୍ନିବାଣ ଜାଣି
ଭାଙ୍ଗି ପକାଇଲେ କର୍ଣ୍ଣ ରଥ ସେହିକ୍ଷଣି ।
କର୍ଣ୍ଣକୁ ବିରଥ ଦେଖି ବୀରବର ଶଲ୍ୟ
ପଞ୍ଚାଶ ବାଣ ମାଇଲା ଅର୍ଜ୍ଜୁନ ତତ୍କାଳ ।
ଏହା ଦେଖିଣ ବାବଲ ଶର ମାରେ ପାର୍ଥ
ଶଲ୍ୟ ରଥ ଭାଙ୍ଗି ଗଲା ପାଇ ସେ ଆଘାତ ।
ବିରଥ ହୋଇଣ ତହୁଁ ଶଲ୍ୟ ମହାଶୟ
ମଦମତ୍ତ ହସ୍ତୀ ପୃଷ୍ଠେ କଲେକ ବିଜୟ ।
କର୍ଣ୍ଣ ଆରୋହିଲା ଏକ ମତ୍ତଗଜ ପିଠି
ସଙ୍ଗ ହୋଇ ବେନିଯୋଦ୍ଧା କଲେ ଶର ବୃଷ୍ଟି ।
ଶଲ୍ୟ ବୋଇଲେ ହେ କର୍ଣ୍ଣ ବଢ଼ିଲାକ ରୋଳ
ତୋତେ ଦେଇଥିଲେ ଯେଉଁ ଶକ୍ତି ଆଖଣ୍ଡଳ ।
କେତେବେଳକୁ ସମ୍ପାଦି ଅଛୁ ସେ ଶକତି
କୃଷ୍ଣ ଅର୍ଜ୍ଜୁନ ଦୁହିଁଙ୍କୁ ମାର ତୁ ଝଟତି ।
ଶଲ୍ୟଙ୍କ ବଚନ ଶୁଣି ରାଧାର ନନ୍ଦନ
ସୁମରି ଦଧିବାମନ ଆଉ ମରୁତ୍ୱାନ ।
ବାହାର କରି ଧଇଲା ସେ ବଜ୍ର ଶକତି
ଆଦିତ୍ୟ ଦେବତା ପ୍ରାୟ ଦିଶେ ତାର ଜ୍ୟୋତି
କର୍ଣ୍ଣର ହସ୍ତରେ ଦେଖି ବଜ୍ରଶକ୍ତି ଶର
କର୍ଣ୍ଣ ପାଶୁଁ ରଥ ହରି କରିଣ ଅନ୍ତର ।
ବୋଇଲେକ ମୋର କଥା ଶୁଣ ହୋ କିରୀଟୀ
ଏ ଶରକୁ ପ୍ରତିକାର କର ତୁ ଝଟତି ।
ଅର୍ଜ୍ଜୁନ ବୋଇଲେ ପ୍ରଭୁ କିମ୍ପା ଏହା ଭାଳ
କି ଛାର ଏ ଶସ୍ତ୍ର ତୁମ୍ଭ କଲ୍ୟାଣହିଁ ମୂଳ ।
କର୍ଣ୍ଣର ଛାମୁକୁ ରଥ ବାହା ବେଗ କରି
କ୍ଷତ୍ରିୟମାନେ ନିନ୍ଦିବେ ମୋତେ ହେ ଶ୍ରୀହରି ।

ଭାଳିଲେ କେଶବ ତହୁଁ ଚକ୍ରକୂଟ ବୁଦ୍ଧି
କିପରି ଏ ଶକ୍ତି କାର୍ଯ୍ୟ କରିବାକ ସିଦ୍ଧି ।
ବିଚାର କରି ଚିନ୍ତିତ ହୃଦେ ଦାମୋଦର
ସ୍ୱର୍ଗେ ଆସନ କମ୍ପିଲା ପୁରନ୍ଦରଙ୍କର ।
ଧ୍ୟାନରେ ବସି ଜାଣିଲେ ହରିଙ୍କର ମନ
ପୁଷ୍ପକେ ବସି ପ୍ରବେଶ ହରି ସନ୍ନିଧାନ ।
ଇନ୍ଦ୍ରକୁ ହରି ସେଠାରେ କଲେ ସମ୍ଭାଷଣ
ନିଉଛାଳି ହୋଇ ଇନ୍ଦ୍ର କଲେକ ପ୍ରଣାମ ।
ଗୋବିନ୍ଦ ବୋଇଲେ ଶୁଣ ଆହେ ସୁରପତି
କେମନ୍ତେ କର୍ଣ୍ଣକୁ ଦେଲେ ଏ ବଜ୍ର ଶକତି ।
ଇନ୍ଦ୍ର ବୋଇଲେକ ଆଗେ ସତ୍ୟ କରାଇଲା
ପଶ୍ଚାତେ କୃଷ୍ଣ ଅର୍ଜ୍ଜୁନ ମାରିବି ବୋଇଲା ।
ମୁଁ ବୋଇଲି ବ୍ରହ୍ମା ବିଷ୍ଣୁ ରୁଦ୍ରେ ରଣମଧ୍ୟେ
ଥରେ ମାତ୍ର ଯାକୁ ଇଚ୍ଛା ପେଷିବୁ ତୁ ଯୁଦ୍ଧେ ।
ତ୍ରୈଲୋକ୍ୟ ନାଥ ଏଥକୁ ନ କରନ୍ତୁ ଚିନ୍ତା
ଏଥୁ ଉବୁରିବା ପାଇଁ ତୁ ଅଟୁ ଶକତା ।
ଅପାଲଟ ଏହି ବଜ୍ରଶକ୍ତି ଯେ ଅଟଇ
ବିଚାରି ଯାହାକୁ ଜଣେ ଦେବାକ ଗୋସାଇଁ ।
ଥରେ ମାତ୍ର ପେଷିଲେ ଏ ତା ହସ୍ତରୁ ଯିବ
ପୁଣି କର୍ଣ୍ଣର ହସ୍ତକୁ ଆଉ ନ ଆସିବ ।
ତାହାର ହସ୍ତରେ ଥିଲେ ଏ ବଜ୍ର ଶକତି
ପରାଜିତ ନ ହୋଇବ କର୍ଣ୍ଣ ମହାରଥୀ ।
କର୍ଣ୍ଣକୁ ନ ଜିଣିଲେ ନ ମରେ କୁରୁବଂଶ
ଶକ୍ତି ପେଷିଲେ ବଞ୍ଚାଇ ରଖ ନନ୍ଦିଘୋଷ ।
ଏ ତ ଗୋଳଯୁଦ୍ଧ ପୁଣି ଅନ୍ଧକାର ରାତି
ଏହିଗୋଳେ ପାର୍ଥେ ରକ୍ଷାକର ହେ ଶ୍ରୀପତି ।
ଏହାକହି ଅନ୍ତର୍ଦ୍ଧାନ ହେଲେ ସହସ୍ରାକ୍ଷ
ଶ୍ରୀକୃଷ୍ଣଙ୍କୁ ପୁଚ୍ଛାକଲେ ପାଣ୍ଡବ ବିବକ୍ଷ ।
କେଉଁକଥା ଭାବୁଅଛ କହ ହେ ଗୋବିନ୍ଦ
କାହା ଉପରକୁ ଦେବ ଏଡ଼େକ ପ୍ରମାଦ ।
ଏହି ନନ୍ଦିଘୋଷେ ଅଛୁ ଆମ୍ଭେ ତିନିଜଣ
ଏଥିମଧ୍ୟୁ କାରେ ଦେବ ଭାବୁଛ ଆପଣ ।
ଶ୍ରୀକୃଷ୍ଣ ବୋଇଲେ ତୁହି ମୋର ପ୍ରାଣସଖା
ଯେପରି ହେଉ ତୋତେ ମୁଁ କରିବଇଁ ରକ୍ଷା ।
ଅର୍ଜ୍ଜୁନ ବୋଇଲେ ଧ୍ୱଜେ ଅଛି ହନୁମନ୍ତ
ତାହାକୁ ଦେବ କି ପ୍ରଭୁ ଭାବିଛ ଏମନ୍ତ ।
ଶ୍ରୀକୃଷ୍ଣ ବୋଇଲେ ତୁହି ଶୁଣ ଧନଞ୍ଜୟ
ବଜ୍ରଅଙ୍ଗ ଅଟଇ ଯେ ପବନ ତନୟ ।
ପୂର୍ବେ ତାକୁ ବର ଦେଇ ଅଛନ୍ତି ବାସବ
ଏ ବଜ୍ର ଶକତି ତାର କି କରି ପାରିବ ।

ପାର୍ଥ ପୁଚ୍ଛାକଲେ କହ ଆହେ ଦାମୋଦର
ବଜ୍ରାଙ୍ଗ କିପରି ହେଲା କହ ମୋ ଆଗର ।
ଶ୍ରୀକୃଷ୍ଣ ବୋଇଲେ ହନୁ ଯେବେ ଜନ୍ମ ହେଲା
ଖାଇବା ପାଇଁକି ତାର ମାତାକୁ ମାଗିଲା ।
ତାହାର ମାତା ଦେଖାଇ ଦିଅନ୍ତେ ସୂର୍ଯ୍ୟଙ୍କୁ
ଲୋହିତ ବରନ ଦେଖି ଯାନ୍ତେ ଭକ୍ଷିବାକୁ ।
ଦୈତ୍ୟ ମନେକରି ଇନ୍ଦ୍ର ବଜ୍ର ପ୍ରହାରିଲା
ବଜ୍ରାଘାତେ ହନୁମାନ ମୂର୍ଚ୍ଛିତେ ପଡ଼ିଲା ।
ବାୟୁପୁତ୍ର ଜାଣି ଇନ୍ଦ୍ର ତୋଷେ ଦେଲେ ବର
ବଜ୍ର ମାଇଲି ବଜ୍ରାଙ୍ଗ ହେଉ ତୋ ଶରୀର ।
ସେଦିନୁ ବଜ୍ରେ ନିର୍ମିତ ହନୁମାନ କାୟ
ତାର ହୃଦେ ଶକ୍ତି ପଡୁ କରିବା ଉପାୟ ।
ଅର୍ଜ୍ଜୁନ ବୋଇଲେ ହରି ଦୁର୍ଲ୍ଲଭ ଏ କଥା
ହନୁକୁ କିମ୍ପା ପ୍ରମାଦ ଦେବ ଭାଳ ବୃଥା ।
ବନ୍ଦଇ ଯେ ଶୈଳସୁତା ସୁତ ବିଘ୍ନରାଜା
ପ୍ରପଞ୍ଚ ପୁରୁଷ ହୋଇ ଅଗ୍ରେ ପାଉ ପୂଜା ।
ଦକ୍ଷିଣଦ୍ୱାରେ ରକ୍ଷଣେ ଥିଲୁ ଅଧିକାରୀ
ଅନ୍ଧକ ବଧି ଆସନ୍ତେ ଦେବ ତ୍ରିପୁରାରି ।
ଦୁଆରେ ରହିଣ ତାଙ୍କୁ ପଥ ନିରୋଧିଲୁ
କିଏ ବୋଲି ଭିତରକୁ ଛାଡ଼ିଣ ନ ଦେଲୁ ।
ଷାଠିସସ୍ର ବର୍ଷ ଯୁଦ୍ଧ କରି ମହେଶ୍ୱର
ମହାଦୁଃଖେ ଆସୁଥିଲେ ପୁରକୁ ସତ୍ୱର ।
ତୁହି ଯହୁଁ ନିରୋଧିଲୁ ପଥ ରହି ଦ୍ୱାରେ
ତୋହର ମସ୍ତକ ଶିବ ଛେଦିଲେ କୁଠାରେ ।
ମଣିଭଦ୍ର ନାମେ ତହିଁ ଥିଲାକ ରାକ୍ଷସ
ତୋହର ମସ୍ତକ ଗୋଟି କରିଲା ସେ ଗ୍ରାସ ।
କୁଠାର ସଜ ରକତ ଦେଖି ଗିରିସୁତା
ପୁଚ୍ଛନ୍ତେ ଶିବ କହିଲେ ଫେଡ଼ି ସର୍ବ କଥା ।
ଶୁଣି ବହୁ ଶୋକ କରି କହିଲେ ପାର୍ବତୀ
ବିଭୂତିରୁ କରିଥିଲି ତାକୁ ଉତପତ୍ତି ।
ତୁମ୍ଭେ ଗଲ ଅନ୍ଧକକୁ ବଧିବାର ପାଇଁ
ଦକ୍ଷିଣଦ୍ୱାରେ ତାକୁ ମୁଁ ଥିଲଇଁ ଜଗାଇ ।
ସେ ସ୍ନେହୀ ପୁତ୍ରତୁ ମୋର ବିନାଶ କରିଲ
ମହାଶୋକେ ମୋ ହୃଦକୁ କଲବଲ କଲ ।
ଉମାବାକ୍ୟ ଶୁଣିକରି ବୋଇଲେକ ଶୂଳୀ
ତୁମ୍ଭ ପୁତ୍ର ବୋଲି ମୁହିଁ ଜାଣି ତ ନ ଥିଲି ।
ଏଥିପାଇଁ ତୁମ୍ଭେ ଦେବି ଭାବନା ନ କର
ବଞ୍ଚାଇ ଦେବି ନିଶ୍ଚୟ ତୁମ୍ଭର କୁମର ।
ଏହା କହି ପଶ୍ଚିମରେ ଦ୍ୱାର ରକ୍ଷାକାରୀ
ଶରତମୌନକୁ ଡାକି କହିଲେ ଏପରି ।

ଐରାବତ ବଂଶେ ପୁଷ୍ପଦନ୍ତ ନାମେ ନାଗ
ତାହାର ମସ୍ତକ ଛେଦି ଆଣ ଯାଇ ବେଗ ।
ସେ ମୁଣ୍ଡ ଆଣି ଦିଅନ୍ତେ ଯୋଡ଼ି ତୁମ୍ଭ କନ୍ଧେ
ଜୀଆଇଲେ ଜୀବନ୍ୟାସ ମନ୍ତ୍ରେ ସଦାନନ୍ଦେ ।
ଏମନ୍ତ ଚରିତ ପ୍ରଭୁ ତୁମ୍ଭର ଅଟଇ
କି ବର୍ଣ୍ଣିବି ତୁମ୍ଭ ଗୁଣ ମୂର୍ଖ ଅଟେ ମୁହିଁ ।
ହେ ଦେବ ଗଣେଶ ତୁମ୍ଭ ପାଦେ କରି ଆଶ
ଦ୍ରୋଣ ପର୍ବକୁ ଲେଖଇ ଶ୍ରୀ ଶାରଳା ଦାସ ।



## ଗୌତମଋଷିଙ୍କ ଅହଲ୍ୟାଙ୍କୁ ଶାପ ଓ ହନୁମନ୍ତ ଜନ୍ମ ବିବରଣ

ମନୁରାଜା ପୁଚ୍ଛାକଲେ କହ ତପୋବନ୍ତ
ଶୁଣିବାକୁ ଇଚ୍ଛା ହନୁମନ୍ତର ବୃତ୍ତାନ୍ତ ।
ବାନର ହୋଇ ବଳିଷ୍ଠ କିପରି ସେ ହେଲା
ଏ କଥା ଶୁଣି ମନରେ ସନ୍ଦେହ ଜନ୍ମିଲା ।
ଅଗସ୍ତି କହିଲେ ରାଜା ତୁ କର ଶ୍ରବଣ
କହୁଛି ତୋ ଆଗେ ହନୁ ଜନ୍ମ ବିବରଣ
ଇନ୍ଦ୍ର ଆଦିତ୍ୟ ଦେବତା କପଟ ଭାବେଣ
ଗୌତମ ସ୍ତ୍ରୀ ଅହଲ୍ୟାଙ୍କୁ କରିଲେ ହରଣ ।
ତାହାଙ୍କର ବୀର୍ଯ୍ୟେ ବେନି ପୁତ୍ର ଜାତ ହେଲେ
ସୋମଶୀଳ ଯବଶୀଳ ପୁତ୍ର ନାମ ଦେଲେ ।
ଗୌତମଙ୍କ ହୋଇଥିଲା ଗୋଟିଏ ନନ୍ଦିନୀ
ଦଶବରଷର କନ୍ୟା ତା ନାମ ଅଞ୍ଜନୀ ।
ଇନ୍ଦ୍ର ଆଦିତ୍ୟଠୁ ହେଲେ ଯେଉଁ ବେନିପୁତ୍ର
ସେ ବେନିଙ୍କ ବୟସ ଯେ ଅଟେ ସାତ ସାତ ।
ବୈଶାଖ ଶୁକ୍ଳ ଅକ୍ଷୟ ତୃତୀୟାର ତିଥି
ରୋହିଣୀ ଋକ୍ଷ ସେ ଦିନ ବାର ବୃହସ୍ପତି ।
ତୈତିଳ ନାମେ କରଣ ଯୋଗ ଭୋଗ ତିଥି
ବାରାନିଧିକି ଗୌତମ ସ୍ନାନ କରିଯାନ୍ତି ।
ବେନି ପୁତ୍ର ଦୁହିତାଙ୍କୁ ସଙ୍ଗତରେ ନେଇ
ଚନ୍ଦ୍ରଭାଗା ତୀର୍ଥକୁ ସେ ଗଲେ ସ୍ନାନ ପାଇଁ ।
ସ୍ନାନକରି ଚନ୍ଦ୍ରଭାଗା ତୀର୍ଥେ କରି ଧ୍ୟାନ
ବେଳ ସାତଘଡ଼ି ଯହୁଁ ହେଲା ଅବସାନ ।
ବାହୁଡ଼ିଲେ ନିତ୍ୟକର୍ମ ସାରି ତପୋବନ୍ତ
ଆଦିତ୍ୟ ରଶ୍ମିରେ ବାଲି ହୋଇଲା ତପତ ।
ଗୋଡ଼ ପୋଡ଼ିବାରୁ କାଖ ବେନିପୁତ୍ରେ କଲେ
ଦୁହିତାକୁ ଗଉତମ ଚଲାଇ ଆଣିଲେ ।
ଅଞ୍ଜନା ବୋଇଲା ପିତା ତପ୍ତ ହୁଏ ବାଲି
ଗୋଡ଼ ପୋଡ଼ି ଯାଏ ମୋର ନ ପାରଇ ଚାଲି
ଗୌତମ ବୋଇଲେ ତହୁଁ ଅଞ୍ଜନାକୁ ଚାହିଁ
ବେନିପୁତ୍ର କାଖେ ତୋତେ ବସାଇବି କାହିଁ ।
ଅଞ୍ଜନା ବୋଇଲା ପିତା ତୋହପରା ଋଷି
ହୁଡ଼ିପରର ପୁତ୍ରକୁ କାଖକରୁ ବସି ।
ପର ଔରସେ ଏହାକୁ ଜାତକଲା ମାତା
ଯାଙ୍କୁ ଏଡ଼େ ସ୍ନେହ ତୁମ୍ଭେ କରୁଅଛ ପିତା ।
ମୁହିଁ ତବବୀର୍ଯ୍ୟେ ଜାତ ହୋଇଲି ତୁମ୍ଭର
ମୋତେ କାହିଁପାଇଁ ତୁମ୍ଭେ କର ଅନାଦର ।
ଅଞ୍ଜନା ମୁଖରୁ ଏହି ବଚନକୁ ଶୁଣି
କୋପଭରେ ଗଉତମ କହେ ଶିରଝୁଣି ।
ମୁହିଁ ବାନ୍ଧି ରଖିଥାଏ ତାର ପଞ୍ଚଆତ୍ମା
କେମନ୍ତେ ହରିଲା ତାକୁ କେବଣ ଦୁରାତ୍ମା ।
କହଇ ଅଞ୍ଜନାବାଳୀ ଶୁଣ ତୁମ୍ଭେ ତାତ
ଆକାଶୁ ବେନି ପୁରୁଷ ଖସିଲେ ତ୍ୱରିତ ।
ଦ୍ୱାରରେ ଜଗିକରି ଯେ ବସିଥିଲି ମୁହିଁ
ତାହାଙ୍କର ତେଜକୁ ମୁଁ ନ ପାରିଲି ସହି ।
ଦୁଆର ଛାଡ଼ିଣ ମୁଁ ଯେ ଗଲି ଆଡ଼ ହୋଇ
ଜନନୀ ଆମ୍ଭର ଯାଇ କି କି ତାଙ୍କୁ କହି ।
ତାହାଙ୍କର ଯୋଗୁ ଜାତ ଏ ତୁମ୍ଭର ଦୁଇ
ତୁମ୍ଭେ ଯୋଗେଶ୍ୱର କି ନ ଭାବ ମନେ ରହି ।
ରାଗେ ଅଧର କମ୍ପାଇ ତହୁଁ ଭଗବନ୍ତ
ବେନିକୁମରଙ୍କର ଯେ ଧରି ବେନି ହସ୍ତ ।
ବୋଇଲେ ଯେବେ ମୋ ବୀର୍ଯ୍ୟେ ଜାତ ହୋଇଥିବ
ତେବେ ମକର ପରାୟେ ପହଁରି ଆସିବ ।
ଯେବେ ହୋଇଥିବ ଦୁହେଁ ଜାରଜ କୁମର
ତେବେ ଏ ରୂପକୁ ଛାଡ଼ି ହୋଇବ ବାନର ।
ଏତେକ ବୋଲିଣ ତହୁଁ ଗଉତମ ଯୋଗୀ
ଅଗାଧ ବାରାନିଧିକୁ ତାଙ୍କୁ ଦେଲେ ଫିଙ୍ଗି ।
ଦୁହେଁ ପଡ଼ିଲେ ଯେ ଚଉବିଂଶ ଯୁଣ ଛାଡ଼ି
ଷାଠିଏ ସସ୍ର ଗଭୀର ଜଳେ ଗଲେ ବୁଡ଼ି ।
ତହୁଁ ଉବୁରି ଅଇଲେ ଗୌତମ ବଚନେ
କପିମୁଖ ହୋଇଲେ ସେ ଭ୍ରାତା ବେନି ଜନେ
ବାନର କର ଚରଣ ପୁଣି ହେଲା ଲାଞ୍ଜ
କିଚି କିଚି ଶବ୍ଦକଲେ ସେ ବେନି ଅନୁଜ ।
ତାହା ଦେଖିଣ ବିସ୍ମୟ ହେଲେ ତପୋବନ୍ତ
ଅଞ୍ଜନାର ବଚନଟି ବୁଝିଲେ ଯେ ସତ ।
ତହୁଁ ରାଗେ ବେନି ପୁତ୍ରେ ମୁନି କଲେ ତେଜ୍ୟା
କାଖେ ବସାଇଲେ ତହୁଁ ଆପଣା ତନୁଜା ।
ତତପର ହୋଇକରି ବିଜେ ତପୋଧନ
ପଛେ ଗୋଡ଼ାବନ୍ତି କପି ପୁଅ ବେନି ଜନ ।

ମୃତପିଣ୍ଡେ ସେ ଅହଲ୍ୟା ଅଛନ୍ତି ଯେ ଶୋଇ
ଗଉତମ ପରବେଶ ହେଲେ ତହିଁ ଯାଇ ।
ମୃତସଞ୍ଜୀବନୀ ପଢ଼ି ବଞ୍ଚାଇଲେ ନାରୀ
ବୋଇଲେ ଅନ୍ୟାୟାଚାରୀ ହେଲୁ ଲୋ ପାମରୀ
ଯମଦଣ୍ଡ ଥାଉଁ ଥାଉଁ ଦେହ ପରେ ଦେଲୁ
ଅଜ୍ଞାନ ପ୍ରସ୍ତର ପ୍ରାୟ ତୋ ଦେହ କରିଲୁ ।
ଅଜ୍ଞାନରେ ଦୋଷ କଲୁ ହୁଅ ତୁ ପଥର
ନିଜ ଦୋଷ ପ୍ରତିଫଳ ଭୋଗ ନିରନ୍ତର ।
ଅହଲ୍ୟା ବୋଇଲେ ଯହୁଁ ଅଞ୍ଜନାକୁ ଚାହିଁ
ତୁ ଅଇଲୁ ବେନିପୁତ୍ର ମୋର ଗଲେ କାହିଁ ।
ଗୌତମ ବୋଇଲେ ତୁହି କଲୁ ଚୋରା ପ୍ରୀତି
କପି ରୂପ ହେଲେ ତେଣୁ ତୋ ବେନି ସନ୍ତତି ।
ଏକ ଇନ୍ଦ୍ରିୟରେ ତୁହି ନ ହେଲୁ ତୃପତି
ଗଙ୍ଗାକୂଳେ ପଡ଼ି ଲକ୍ଷେ ଇନ୍ଦ୍ରି ବେଖ ନିତି ।
ନାରୀ ବୋଲେ ଦୁରାପଦ ଶାପ ଦେଲେ ମୋତେ
ପଥର ହୋଇବି କେତେକାଳ ପରିଯନ୍ତେ ।
ଶୁଣିଣ ଗୌତମ ଋଷି ବୋଲେ ମହାରାଗେ
ମୁକତ ହୋଇବୁ ତୁହି ଯେ ତ୍ରେତୟାଯୁଗେ ।
ତ୍ରେତାଯୁଗରେ ଶ୍ରୀରାମ ହେବେ ଉତପନ୍ନ
କଉଶିକ ବନେ ଯଜ୍ଞ ରହିବେ ଯାଇଣ ।
ପୁଣି ଭାଗୀରଥୀସ୍ନାନେ ତାଙ୍କୁ ନେବେ ଋଷି
ନିତ୍ୟକର୍ମ ସାରିବେ ସେ ତୋ ଉପରେ ବସି ।
ତାହାଙ୍କ ଚରଣ ଲାଗି ହୋଇବୁ ତୁ ପାରି
ତେବେ ମୁକତି ହୋଇବୁ ଜାଣ ଲୋ ଦୋଚାରୀ
ଅହଲ୍ୟା ବୋଇଲା ଏହା କଲୁ ଲୋ ଅଞ୍ଜନା
ତୋହ ଲାଗି ଏହି ଶାପ ଦେଲେ ଋଷି ସିନା ।
ବେନିଗୋଟି ପୁତ୍ର ମୋର ବାନର ହୋଇଲେ
ଏହି ଶାପ ଫଳୁ ମୁହିଁ ତୋର ମାତା ଥିଲେ ।
ତୋର ଗର୍ଭୁ ଯେଉଁ ପୁତ୍ର ହୋଇବଟି ଜାତ
ସେହି ବାନର ହୋଇବ ଏ କଥା ନିଶ୍ଚିତ ।
ଅଞ୍ଜନା ବୋଇଲା ମୁଁ ଯେ ବିବାହ ନୋହିବି
ସ୍ୱାମୀ ନ କରିବି କିବା ରତି ନ ଇଚ୍ଛିବି ।
ମାତାର ବଚନେ ସେହୁ ଅତିଶୟ କୋପେ
ସକଳ ତ୍ୟକତ କରି ବସିଲାକ ତପେ ।
ଗୌତମ ମହର୍ଷି ଦେଖି କନ୍ୟାର ଅବସ୍ଥା
ପ୍ରଚଣ୍ଡ ପବନେ ଡାକି କଲେ ଏ ବ୍ୟବସ୍ଥା ।
ମୋ କନ୍ୟା ତପ କରିବ ପର୍ବତ ଉପରେ
ଦୁର୍ବାକ୍ଷତ ଦେଉଥିବ ଏହା ସନ୍ନିଧିରେ ।
ଗୌତମ ବଚନେ ହେଲା ପବନ ଆହାରୀ
ନୟନ ବୁଜିଣ ଥାଏ କରକୁ ପ୍ରସାରି ।

ପୁରୁଷଙ୍କ ବଦନକୁ ନ ଚାହିଁବା ପାଇଁ
ଦିବାରାତ୍ରି ନୟନକୁ ସେହୁ ବୁଜିଥାଇ ।
ନିରଞ୍ଜନ ଭାବେ ନବସସ୍ର ବର୍ଷଚାହିଁ
ସତ୍ୟଯୁଗେ ଦୁରାପଦ ତପ କଲା ସେହି ।
ସତ୍ୟଯୁଗେ ଶୁକ୍ଳପକ୍ଷ ତ୍ରୟୋଦଶୀ ଦିନ
ଚନ୍ଦ୍ରବାର ଅନୁରାଧା ନକ୍ଷତ୍ରଟି ଜାଣ ।
ବିଷ୍ଟି ନାମରେ କରଣ ପ୍ରୀତି ନାମେ ଯୋଗ
ହର ପାର୍ବତୀ କ୍ରୀଡ଼ାରେ ଗଲେ ବନମାର୍ଗ ।
କାକ ରୂପେ ହର ଗୌରୀ ରଙ୍ଗରସ କଲେ
ସେ କ୍ରୀଡ଼ାରୁ କାକମାନେ ଜନମ ଲଭିଲେ ।
ତହିଁ ତଡ଼ାଗେ ଦେଖିଲେ ରାଜହଂସ ପନ୍ତି
ସେହି ରୂପକୁ ଧଇଲେ ଈଶ୍ୱର ପାର୍ବତୀ ।
ତାହାଙ୍କର ମେଳେ ହର ବଢ଼ାଇଲେ ପନ୍ତି
ସେହି ରୂପକୁ ଧଇଲେ ଈଶ୍ୱର ପାର୍ବତୀ ।
ତାହାଙ୍କର ମେଳେ ହର ବଢ଼ାଇଲେ ରତି
ତହିଁରୁ ଯେ ସୂଚୀ ମୁଖୀ ହେଲେ ଉତ୍ତପତ୍ତି ।
ପୁଣି ବନରେ ମିଳିଲେ ଭାଲୁଜୀବ ମେଳେ
ତାଙ୍କ ରୂପକୁ ଧଇଲେ ଅତି କୁତୂହଳେ ।
ତହୁଁ କ୍ରୀଡ଼ାରଙ୍ଗେ ବେନି କରନ୍ତି ସୁରତି
ତହିଁରୁ ଉତ୍ପତ୍ତି ହେଲେ ଜାମ୍ବମାନ ମନ୍ତ୍ରୀ ।
ମନୋହର କାନନରେ ଦେଖି କପିପଲେ
ହର ସେ ରୂପଧଇଲେ ତାହାଙ୍କର ତୁଲେ ।
ସ୍ୱାମୀ ବାକ୍ୟ ଅଲଙ୍ଘିତ ଦେଖିଣ ପାର୍ବତୀ
ମର୍କଟ ମର୍କଟୀରୂପେ ରସ କ୍ରୀଡ଼ା କରି ।
ମହାତେଜ ଦେବ ଶୂଳି ଛାଡ଼ନ୍ତେଣ ରେତ
ପାର୍ବତୀ ବୋଇଲେ ରହ ସ୍ୱାମୀ ବିଶ୍ୱନାଥ ।
ଏ ବୀର୍ଯ୍ୟକୁ ନାଥ ଧରି ନ ପାରଇ ଗର୍ଭେ
ଅବଶ୍ୟ ଦହନ ହେବି ସମ୍ଭାଳ ତୁ ଏବେ ।
ସ୍ଖଳନ୍ତେ ସେବୀର୍ଯ୍ୟ ଦେବ ଧରୁ ପ୍ରଥମରେ
ମନ୍ଦାଏ ଖସିଣ ତହୁଁ ପଡ଼ିଲା କ୍ଷିତିରେ ।
ସ୍ଫଟିକ ଲାଞ୍ଛନ ନୀଳ-ମେଘମାଳ ପରା
ମୁକୁତା ଶଙ୍ଖ କଉଡ଼ି ମେଦିନୀରେ ଭରା ।
ଆରେକ ମନ୍ଦାଏ ବହି ପଡ଼ନ୍ତେ କ୍ଷିତିରେ
ପୃଥ୍ୱୀରେ ପୂରିଲା ଯେତେ ଖାଲ ଠିକରରେ ।
ଆରେକ ମନ୍ଦାଏ ଗିରି କନ୍ଦରରେ କ୍ଷେପି
ଅଷ୍ଟରତ୍ନ ଲୁହା ଆଦି ଉପୁଜେ ଅଦ୍ୟାପି ।
ଆହୁରି ସ୍ରବନ୍ତେ ବୀର୍ଯ୍ୟ ନ ସହିଲା ମହୀ
ଶ୍ରୀକରେ ଧଇଲେ ତହୁଁ ଜଗଜ୍ଜନସାଇଁ ।
ମର୍କଟରାଜାଙ୍କୁ ଦେଲେ ଅଧାମନ୍ଦା ଗାଳି
ତହୁଁଜାତ ହେଲା କପି ବୀର ଶତାବଳୀ

ଆହୁରି ମନ୍ଦାଏ ପ୍ରଭୁ ଘେନିଛନ୍ତି ହସ୍ତେ
ପ୍ରଚଣ୍ଡ ପବନ ହାତେ ଦେଲେ ତା ତୁରିତେ ।
ବୋଇଲେ ଦେବଙ୍କ ମଧ୍ୟେ ଅଟୁ ଅପୁତ୍ରିକ
ଏଣୁ ଏଥିରେ କାରଣ ପାଇବୁ ଅନେକ ।
ପବନ ମନରେ ପାଞ୍ଚେ ହୋଇଣ ବିସ୍ମୟ
କାହା ଗର୍ଭେ ଏହା ନେଇ କରିବଇଁ ଥୟ ।
ମାତା ଶାପରେ ତପସ୍ୟା କରଇ ଅଞ୍ଜନା
ପ୍ରତ୍ୟହ ପବନ ଖାଇ ବଞ୍ଚଇ ଅଞ୍ଜନା ।
ତେଣୁକରି ମନେ ମନେ କରିଣ ବିଚାର
ପବନ ନେଇ ଦେଲାକ କରେ ଅଞ୍ଜନାର ।
ପ୍ରତିଦିନ ସେ ସୁନ୍ଦରୀ ଖାଏ ତାର ଦତ୍ତ
କରେ ପଡ଼ିବା ମାତ୍ରକେ କଲା ଗର୍ଭଗତ ।
ଈଶ୍ୱରଙ୍କ ମହାବୀର୍ଯ୍ୟ ପଡ଼ନ୍ତେ ଉଦର
ଗର୍ଭ ବିକାଶି ହୋଇଲା ତେଜସ୍ୱୀ କୁମର ।
ଗର୍ଭର ଭିତରେ କ୍ଷଣେ ରହିଣ କୁମର
ନିମିଷ ମାତ୍ରକେ ହେଲା ସୁଚାରୁ ଶରୀର ।
ଗର୍ଭ ଭାର ବହି ସେ ଯେ ଆକୁଳିତା ସତୀ
ବୋଇଲା ପବନ ଦେବ କଲା ଏ ଅନୀତି ।
ଗର୍ଭୁ ବାହାର ହେବାକୁ ଲୋଡ଼େ ପୁତ୍ରମଣି
ମନ୍ଦର ପର୍ବତେ ଉଠି ଗଲାକ ତରୁଣୀ ।
ମନ୍ଦର ବୋଇଲା ମାଗୋ ଯେଉଁ ପୁତ୍ର ତୋର
ଗର୍ଭୁ ବାହାର ହେବାକୁ କରଇ ବିଚାର ।
ସେ ପୁତ୍ର ଗର୍ଭରୁ ତୋର ହୋଇଲେକ ଜାତ
ମୋ ପରି ମନ୍ଦର ଗିରି ହେବ ରସାଗତ ।
ଗିରିର ବିକଳେ ଦୟା କଲାକ କୁମାରୀ
ମେରୁ ପର୍ବତକୁ ତହୁଁ ଗଲା ଅସପରି ।
ଆଶ୍ୱିନ ଶୁକଳପକ୍ଷ ପୂର୍ଣ୍ଣମୀର ତିଥି
ଅଶ୍ୱିନୀ ଅନ୍ତରେ ଦ୍ୱିଜା ନକ୍ଷତ୍ର ପାହାନ୍ତି ।
ବାଳବ ନାମେ କରଣ ଶୁଭ ନାମେ ଯୋଗ
ମାହେନ୍ଦ୍ର ବେଳେ କୁମର ଉତପତ୍ତି ଯୋଗ ।
ମର୍କଟ ବଦନ ଆଉ ମର୍କଟ ଲାଙ୍ଗୁଳ
କଟିରେ ବଜ୍ରକାଛଟି କର୍ଣ୍ଣରେ କୁଣ୍ଡଳ ।
ପୁତ୍ରକୁ ଦେଖି ବିଷାଦ ହୋଇଲା ଅଞ୍ଜନା
ଏସନକ ଶାପ ମୋତେ ମାତା ଦେଲା ସିନା ।
ଗୁରୁଜନ ବଚନ କି ହୁଅଇ ଅନ୍ୟଥା
ଶାପ ନାଶିବାକୁ ମୁହିଁ ନ ହେଲି ଶକତା ।
ଶହେ ଚାରିବର୍ଷ ମୁହିଁ ତପେ ଦେଲି ମନ
ତଥାଚ ମାତାର ଶାପ ନ ହୋଇଲା ଆନ ।
ବିମୁଖେ ପୁତ୍ରକୁ ଛାଡ଼ି ତହୁଁ ଗଲା ଉଠି
ବୈରାଗ୍ୟେ ଯେ ନ ଚାହିଁଲା ତାହାକୁ ଲେଉଟି

ପୁତ୍ର ବୋଲେ ମାତା କ୍ଷୀର ନ ଦେଉ କିପାଇଁ
ଶରୀର ବଢ଼ିବ କାହୁଁ କି ପଦାର୍ଥ ଖାଇ ।
ରଙ୍ଗଫଳ ଖାଅ ବୋଲି ମାତା ଦେଲାକହି
ମୋର ଶାପେ ଶ୍ରୀରାମଙ୍କୁ ପ୍ରାପ୍ତ ହେବୁ ତୁହି ।
ଅମର ହୋଇଣ ତୁହି ଯୁଗେ ଯୁଗେ ଥିବୁ
କିଷ୍କିନ୍ଧ୍ୟା ପର୍ବତେ ରାମ ସହିତେ ଭେଟିବୁ ।
ଏହା କହି ନନ୍ଦନକୁ ତେଜି ଗଲେ ମାଏ
ଦେଖେ ପୁତ୍ର ଦିନକର ହେଉଛି ଉଦୟେ ।
କ୍ଷୀର ସମୁଦ୍ର ବିକାଶି ଦିଶେ ରଙ୍ଗମୟ
ସେ ଶୋଭାକୁ ପଟାନ୍ତର ନାହିଁ ତ ବିଷୟ ।
ଆଦିତ୍ୟଙ୍କର ରଥକୁ ଚାହିଁଲା ବାନର
ଏହି ରଙ୍ଗଫଳ ବୋଲି ବିଚାରି ମନର ।
ମେରୁକୁ ଉଦୟଗିରି ଚଉଷଠି ଯୁଣ
ଅତ୍ୟନ୍ତ କ୍ଷୁଧାରେ ସେହୁ ଆକୁଳ ହୋଇଣ ।
ନିମିଷକେ ଡେଇଁଗଲା ଖାଇବାର ପାଇଁ
ଜନନୀର ବଚନକୁ ମନରେ ଚିତୋଇ ।
ରଥ ଆକର୍ଷଣ କଲା ପବନ ଦୁଲାଳ
ଭୟେ ପଳାୟନ କଲେ ଦେବ ଅଂଶୁମାଳ ।
ସୁରନାଥଙ୍କୁ ଯାଇଣ କଲେକ ଗୁହାରି
ଆଜ କାହିଁପାଇଁ ମୋତେ ରାହୁ ଆସେ ଧରି ।
ଆଜ ରାହୁ ଗ୍ରାସିବାକୁ ନାହିଁ ମୋର ତିଥି
କିପାଇଁ ଏ କୃତ୍ୟ ହେଲା ବୁଝ ସୁରପତି ।
ଆଦିତ୍ୟ ବିନୟ ଶୁଣି ଦେବ ଆଖଣ୍ଡଳ
ବଜ୍ର ଧରି ବାହାରିଲେ ହୋଇ କୋପାନଳ ।
ଇନ୍ଦ୍ର ପାରିଜାତ ପୁଷ୍ପେ ଅଛନ୍ତି ଭୂଷିତ
ବଜ୍ରତେଜ ବିକାଶଇ ଅତ୍ୟନ୍ତ ଲୋହିତ ।
ଆଦିତ୍ୟ ରଥେ ଥିବାର ଦେଖିଲା କୁମର
ଏହି ରଙ୍ଗ ଫଳ ବୋଲି କ୍ଷେପିଲା ସତ୍ୱର ।
ଗିଳିବା ନିମନ୍ତେ ତହୁଁ କରନ୍ତେ ଉଦ୍ୟମ
ଇନ୍ଦ୍ର ବଜ୍ର ପ୍ରହାରିଲେ ହେଲା ଅସାଷ୍ଟମ ।
ହନୁ ହାଡ଼ ଭାଙ୍ଗେ ତାର ରଥ ତଳେ ପଡ଼ି
ପ୍ରାଣବାୟୁ ଚାଲିଗଲା ଶିଶୁ ଦେହ ଛାଡ଼ି ।
ମରୁତ ବୋଇଲେ ମୋତେ ଦେଇଥିଲେ ହର
ତାଙ୍କର ଦେବା ପୁତ୍ରକୁ ନାଶେ ପୁରନ୍ଦର ।
ପୁତ୍ର ବିଚ୍ଛେଦେ ମରୁତ ବାୟୁ କଲା ମନ୍ଦ
ଚରାଚର ଜୀବଜନ୍ତୁ ହେଲେ ଶ୍ୱାସରୁଦ୍ଧ ।
ଦଶଦିଗପାଳ ଘେନି ବିଜେ କୁଶପାଣି
କୋଳ କରିଣ ଧଇଲେ ହନୁମନ୍ତ ଆଣି ।
ପବନକୁ ବୋଇଲେ ତୁ ଦିଅ ଜୀବନ୍ୟାସ
ଆମ୍ଭର ଆୟୁଷ ଘେନି ବଞ୍ଚୁ ତୋର ଶିଷ୍ୟ ।

ସ୍ଥାନ ସ୍ଥାନକେ ଧଇଲେ ତାକୁ ଦେବମାନେ
ବଜ୍ର ଅଙ୍ଗ ହେଉ ତୋର ବୋଇଲେ ସେମାନେ
ଦେବତାମାନଙ୍କ ଆୟୁ ପ୍ରାପ୍ତ ହେଉ ତୋତେ
ଶତ କଳ୍ପ କଳ୍ପାନ୍ତକ ବଞ୍ଚ ତୁ ଜଗତେ ।
ମଘବା ବୋଇଲେ ମୁହିଁ ମାଇଲି ଶକତି
ବଜ୍ର ଅଙ୍ଗ ହେଉ ତୋର ଆରେ କପିପତି ।
ବାସୁକି ସନ୍ତୋଷ ହୋଇ ବସିଲା ଲାଞ୍ଜରେ
ବୋଇଲା ମନପବନେ ଚଢ଼ିବୁ ସତ୍ୱରେ ।
ହନୁହାଡ଼ ଭାଙ୍ଗିବାରୁ ସର୍ବ ଦେବଗଣ
ହନୁମାନ ବୋଲି ନାମ କରିଲେ ଅର୍ପଣ ।
ଶୁଣ ଆହେ ଅରଜୁନ ବଦନ୍ତି ମାଧବ
ବଜ୍ର ଶକତିର ଭାରା ସେ ହନୁ ସହିବ ।
ଶ୍ରୀକୃଷ୍ଣ ବଚନ ଶୁଣି ବୋଲନ୍ତି ଅର୍ଜ୍ଜୁନ
ଏମନ୍ତ ଶାସ୍ତି ସହିବ କିମ୍ପା ହନୁମାନ ।
ମୋର ରଥେ ଥାଇ ଏହୁ ପାଇବ ଆଘାତ
କ୍ଷତ୍ରିପଣକୁ ମୋହର ହୋଇବ ଧିକ ତ ।
ହେ ଦେବ ବାହା ମୋର ରଥ କର୍ଣ୍ଣର ଛାମୁକୁ
ମାରୁ ତାହାର ଶକତି ସହିବି ତାହାକୁ ।
ଅର୍ଜ୍ଜୁନ ବଚନେ ଦେବ ବାହିଲେ ତୁରଙ୍ଗ
ନନ୍ଦିଘୋଷ ରଥ କଲେ ରାଧେୟର ଆଗ ।
କର୍ଣ୍ଣ ଅର୍ଜ୍ଜୁନ ଦୁହେଁ ଯେ ହେଲେ ଅନାଅନି
ବିନ୍ଧିଲା ଘୋର ନାରାଚ ବୀର ଫାଲଗୁନି ।
ବହୁତ ନାରାଚ ଯହୁଁ ହୋଇଲାକ ବୃଷ୍ଟି
ଏକ ବାଣକରେ କର୍ଣ୍ଣ ପକାଇଲେ କାଟି ।
ପଛେ ଥାଇ ଦ୍ରୋଣଗୁରୁ ଚଳାବନ୍ତି ଥାଟ
ନବସସ୍ର ନୃପଂତୁଲେ ଓଗାଳିଲେ ବାଟ ।
ବିରାଟ ଶଙ୍ଖ ଉତ୍ତର ବେନିପୁତ୍ର ଘେନି
ହସ୍ତୀ ତୁରଙ୍ଗ ପଦାତି ବେନି ଅକ୍ଷୌହିଣୀ ।
ଦ୍ରୋଣ ବିରାଟର ସୈନ୍ୟ ଆସି କଲେ ମେଳ
ବାଜିଲା ସମରସିଂହା ହେଲା ମହାରୋଳ ।
ରଥୀକି ରଥୀ ସମରେ ଓଗାଳିଲେ ଆସି
ହସ୍ତୀଯୋଦ୍ଧା ହସ୍ତୀଯୋଦ୍ଧା ହେଲେ କଷାକଷି
ପଦାତି ପଦାତି ବିନ୍ଧାବିନ୍ଧି ହେଲେ ବାଣ
ଧର୍ମଙ୍କ ଆଗରେ ଯୁଦ୍ଧ କଲେ ଗୁରୁ ଦ୍ରୋଣ ।
ନିମିଷେକ ଅବକାଶ ନ ପାଇଲେ ରଥୀ
ଖଣ୍ଡ ଖଣ୍ଡ ହୋଇ ବେଗେ ପଡ଼ିଲେ ସେ କ୍ଷିତି ।
ବେନିବଳ ପ୍ରହାରେଣ ବଜ୍ରନାଦ ଶୁଭି
ରକତରେ ରଙ୍ଗବର୍ଣ୍ଣ ହେଲା ମହୀଦେବୀ
ଯମଭୁବନ ଦୂତଙ୍କୁ ନାହିଁ ଅବକାଶ
ମୃତ୍ୟୁଜନମାନଙ୍କର ଉପେକ୍ଷିଲେ ଦୋଷ ।
ବ୍ରାହ୍ମଣ ଚଣ୍ଡାଳ ଆଦି ପଡୁଛନ୍ତି ରଣେ
ପୁଷ୍ପକରଥେ ବସାଇ ନେଲେ ଦୂତଗଣେ ।
ମହାକକ୍ଷାବନ୍ତ ଅଟେ ଭରଦ୍ୱାଜ ବଂଶି
ନିଉପ୍ରୋଧ ନିର୍ଦ୍ଦୟ ସେ ଦୟା ନାହିଁ କିଛି ।
ପଳାଇବା ସଇନକୁ ଗୋଡ଼ାଇଣ ମାରି
ଶରଣ ବୋଇଲେ ମଧ ଉପ୍ରୋଧ ନ କରି ।
ରାତ୍ରେ ବିନଷ୍ଟ ହୋଇଲେ ଯୋଦ୍ଧା ଅନର୍ଯ୍ୟାପ
ବାରି ନୁହେଁ କେ ପିତା କେ ଶତ୍ରୁ ମିତ୍ର ନୃପ ।
କିଏ କାହା ତୁଲେ ତହିଁ ରଣ କରୁଅଛି
ମହାଗୋଳ ସେ ସଂଗ୍ରାମ ବାରି ନୁହେଁ କିଛି ।
ବିରାଟର ତୁଲେ ନବସସ୍ର ଯୋଦ୍ଧା ଥିଲେ
ଦ୍ରୋଣଙ୍କ ସମରେ ପାଞ୍ଚସହସ୍ର ପଡ଼ିଲେ ।
ଶଲ୍ୟଙ୍କୁ ଯେ ସହଦେବ ଜିଣିଲାକ ରଣେ
ଦୁଃଶାସନଙ୍କୁ ଦୁର୍ଦ୍ଧକ୍ଷ ଜିଣେ ଏକାଜଣେ ।
ଦ୍ୱାଦଶମୁନା ଶକତି ଦ୍ରୋଣ ପ୍ରହାରିଲେ
ଶରାଘାତେ ଅମ୍ବୁଦେଶ ନୃପତି ପଡ଼ିଲେ ।
ନୈର୍ଗତ ଦେଶର ରାଜା ନାମ ନଳସେନ
ସେ ମଧ ପଡ଼ିଲା ରଣେ ତେଜିଣ ଜୀବନ ।
ହସ୍ତୀଙ୍କର ଗହଳରେ ନ ଦିଶେ ପଦାତି
ହାବୁଡ଼ାର ଆଘାତରେ ମଲେ କେତେ ହସ୍ତୀ ।
କାର କୁମ୍ଭସ୍ଥଳ କାର ଛିଡ଼େ ଥୋରହସ୍ତ
କାହାର ଚରଣ ଛିଡ଼ି ହୁଏ ଭୂମିଗତ ।
ବିନ୍ଧନ୍ତେ ତୀକ୍ଷ୍ଣ ନାରାଚ ଅଶ୍ୱ ଦେହେ ଗଳେ
ଅଶ୍ୱାରୋହୀ ସେହ୍ନା ଫୁଟି ପୃଷ୍ଠବାଟେ ଚଳେ
କାର ଜାନୁ ଫୁଟି ଦେହ ଦିଶେ ରକ୍ତବର୍ଣ୍ଣ
ରକ୍ତନଦୀ ବହେ ମୃତ୍ୟୁ ପିଣ୍ଡର କର୍ଦ୍ଦମ ।
ଜ୍ୟୋତିପୁରର ଶରଦସେନ ମହୀପତି
ବିରାଟ ଉତ୍ତର ରଣେ ହୋଇଲା ବିକୋଟି
ପଞ୍ଚଦଶ ଯୋଦ୍ଧାତୁଲେ ଥିଲା ଯେ ତ୍ରିଗର୍ତ୍ତ
ଶଙ୍ଖ ଉତ୍ତର ସମରେ ହୋଇଲା ନିପାତ ।
ଶାଣ୍ଡି ମଣ୍ଡଳର ରାଜା ବୀର ବଇରାଷ୍ଟ୍ର
ତାହାର ଶର ଛେଦିଲା ନୃପତି ବିରାଟ ।
କାମିନୀକନ୍ଦର୍ପ ବୋଲି ଚୋଳଦେଶ ପତି
ପଞ୍ଚବାଣରେ ମାଇଲେ ବିରାଟ ନୃପତି ।
କୁବ୍‌ଜଦେଶ ଅଧିକାରୀ ରାଜା ଦୁରାନ୍ତକ
ନକୁଳ ତୁଲେ ସେ ଯାଇ ସମର କଲାକ ।
ନକୁଳ ଶରେ ପଡ଼ିଲେ ନବସସ୍ର ରଥୀ
ସହସ୍ରେ ତୁରଙ୍ଗ ଆଉ ଷଡ଼ସସ୍ର ହାତୀ ।
ପଦାତିକ ବଳ କେହି ପାରିବ କି ଗଣି
ଯେମନ୍ତେ ଗଙ୍ଗାର ବାଲି ନୁହେ ପରିମାଣି ।

ଦୁର୍ଲ୍ଲଭ ସମର ଅଟେ ନିଶି ଯୁଦ୍ଧକଥା
ସଂକ୍ଷେପିଣ କହିବାକୁ କେହି ସାମରଥା ।
ହେ ବୁଧଜନେ ଜଗତନାଥ ନାମ ଗୋଟି
ହୃଦେ ବାନ୍ଧି ଅନୁକ୍ଷଣେ ଗଳେ କରି ଗଣ୍ଠି ।
ସ୍ନାନ ଭୋଜନ ଶୟନ ଅବା କାର୍ଯ୍ୟ ସ୍ଥାନେ
ନିରାକାର ନାମ ଗୋଟି ଚିନ୍ତ ସଦାମନେ ।
ଜପ ନିତ୍ୟ ନିରାକାର ଶୁଚିମନ୍ତ ହୋଇ
ଦୁଃଖୀଜନ ଉଦ୍ଧାରଣ ସେହି ଭାବଗ୍ରାହୀ ।
ସଦୟ ପରମାନନ୍ଦ ନିରଞ୍ଜନ ଯୋଗୀ
ଦୁଷ୍ଟଜନ ନିସୂଦନ କୁରୁବଳ ଗଞ୍ଜି ।
ବସୁଧା ଭାରା ନ ସହି କରନ୍ତେ ଗୁହାରି
କୌତୁକେ ଭାରତଯୁଦ୍ଧ କଲ ଚକ୍ରଧାରୀ ।
ଆହେ ଚଇତନ କାହ୍ନା ଅବତାର ବେଳେ
ଭଇରବୀକି ଆଣିଲେ ଏ ମହୀମଣ୍ଡଳେ ।
ଭୈରବୀ ବୋଇଲା ରହି ନ ପାରଇ ମଞ୍ଚେ
ଯଶୋବତୀ ଗର୍ଭେ ଥିବି ପାଞ୍ଚମାସ ଯାକେ ।
ବିଷ୍ଣୁ ବୋଇଲେ ଜନ୍ମିବି ଦେବକୀ ଉଦରେ
ବସୁଦେବ ପାଲଟିବ ତୋତେ ଗୋପପୁରେ ।
ଦେବକୀ କ୍ରୋଡ଼ରୁ ତୋତେ ନେବ କଂସାସୁର
କଚାଡ଼ି ଉଞ୍ଚାଇବ ସେ ପଥର ଉପର ।
ତୋର ପିଣ୍ଡ ଖସିଯିବ ଗଗନର ପଥେ
ଭୈରବୀ ବୋଇଲା ମୋତେ କି ଦେବୁ ଶ୍ରୀହସ୍ତେ
ପଞ୍ଚାଶ ସସ୍ର କବନ୍ଧ ଯେବେ ଦେବୁ ବଳି
ତେବେ ତୋ ସଙ୍ଗେ ସର୍ବଦା ଥିବି ବନମାଳୀ
ଏତେକ ମନୁଷ୍ୟ ଯେବେ ନଦେବୁ ଶ୍ରୀହରି
ସକଳ ଖାଇବି ତୋର ବଂଶ ଆଦିକରି ।
କେଶବ ବୋଇଲେ ମୋର ହେଲା ସନମତ
ସତ୍ୟ ମନାଇ ତାହାଙ୍କୁ ଆଣିଲେ ଅଚ୍ୟୁତ ।
ଯଶୋଦା ଗର୍ଭେ ଭୈରବୀ ଜନ୍ମେ ଗୋପପୁରେ
କୃଷ୍ଣ ଜନମ ଲଭିଲେ ମଥୁରା ନଗରେ ।
ବସୁଦେବ ନିଶାକାଳେ ପାଲଟାଇ ନେଲେ
କେହି ନ ଜାଣିଲେ ତାକୁ ବେଗେ ଘେନିଗଲେ
ଯଶୋବନ୍ତୀଙ୍କ କୋଳରେ କୃଷ୍ଣଙ୍କୁ ଶୁଆଇ
ଭଇରବୀଙ୍କି ଆଣିଲେ ତହୁଁ ପାଲଟାଇ ।
କୁମର ଜାତ ଶୁଣିଣ ଧାଏଁ କଂସାସୁର
ଭୈରବୀକି କଚାଡ଼ିଲା ପଥର ଉପର ।
ବିଜୁଳିପ୍ରାୟ ହୋଇଣ ଗଲା ଅନ୍ତରୀକ୍ଷେ
ବୋଇଲା ତୋହର ଶତ୍ରୁ ଗୋପରେ ପ୍ରତ୍ୟକ୍ଷେ
ଏତେକ କହିଣ ତହୁଁ ଅଇଲା ବିଜୁଳି
ଗୋପପୁରରେ ରହିଲେ ସୁଖେ ବନମାଳୀ ।
ପୂତନା ଶକଟା ଷଣ୍ଢା ଆଉ ବକାସୁର
ମାରି ଭୈରବୀକି ଦେଲେ ରକ୍ତ ପାନକର ।
ଚାଣୁର ମୁଷ୍ଟିକ କେଶୀ କୁବଳୟା ବ୍ୟୋମା
ଶତମୁଖ ବ୍ୟାଘ୍ରମୁଖ ଶ୍ୱାମୁଖାଦି ନାମା ।
ମାଇଲେ ସେ କଂସ କେଶୀ ମୂଳେ ବହୁଦୈତ୍ୟ
ଦେଲେକ କବନ୍ଧ ତାହା ତୁଲେ କୋଟି ସାତ ।
କଂସ ନିସୂଦନେ କଲା ଜରାସନ୍ଧ ଯୁଦ୍ଧ
ଗୋମତ ଯୁଦ୍ଧରେ ଦେଲେ ଲକ୍ଷେକ କବନ୍ଧ ।
ଲହ ଲହ ଜିହ୍ୱା ଭଇରବୀ ପ୍ରସାରିଣ
ଯେ ଯୁଦ୍ଧେ ପଡ଼ନ୍ତି ତାଙ୍କ ରକ୍ତ କରେ ପାନ ।
ବହୁ ରୁଧିର ପାଇଲେ ବାଣାସୁର ଯୁଦ୍ଧେ
ଦୈତ୍ୟ ମାରି ଦେଲେ କୃଷ୍ଣ ଆଶିଷ କବନ୍ଧେ ।
କୁଶମଣ୍ଡଳେ ନିକୁମ୍ଭ ସମରର କାଳେ
କୃତକେଶୀ ଦନ୍ତବକ୍ର ସୁବକ୍ର ବଧିଲେ ।
କାଳିନ୍ଦୀବନେ ଯେ କାଳବର ଦୈତ୍ୟ ମାରି
ଦେବୀଙ୍କି ଦେଲେ କବନ୍ଧ ତହିଁ ଶତଚାରି ।
ଗୋସିଂହ ଶମ୍ଭୁସିଂହ ଯେ ବକ୍ରସିଂହ ତିନି
ଏହାଙ୍କ ତୁଲେ କବନ୍ଧ ଦେଲେ ଲକ୍ଷ ତିନି ।
ମୁଦ୍ଗାସୁର ଅମ୍ବାସୁର କଦମ୍ବ ଅସୁର
ବଧିଣ କବନ୍ଧ ଦେଲେ ଶତ ଯେ ପନ୍ଦର ।
କାଳନେମୀ ମହାରଥ ବିଲଙ୍କ ମାରିଣ
ଲକ୍ଷେ କବନ୍ଧ ଦେଲେ ସେ ଏହାଙ୍କ ମଧେଣ ।
ମଗଧେଶ ଜରାସନ୍ଧଦୈତ୍ୟ ବଧ କଲେ
ଲକ୍ଷେକ କବନ୍ଧ ମାରିଦେଲେ ସେତେବେଳେ
ପୂରୁବ ପଶ୍ଚିମ ପୁଣି ଉତ୍ତର ଦକ୍ଷିଣ
ପାଣ୍ଡବେ ଚଳିଲେ କରି ରାଜାଙ୍କୁ ବରଣ ।
ପଶ୍ଚିମ ଦିଗରୁ ଭୀମ ଚାରିଶତ ମାରି
ଭୈରବୀଙ୍କୁ ପୂଜା କଲା ମନ ତୋଷକରି ।
ଉତ୍ତରଦିଗେ ଅର୍ଜ୍ଜୁନ କରି ଘୋର ଯୁଦ୍ଧ
ସମର୍ପିଲେ ସେ ସତୁରି ସହସ୍ର କବନ୍ଧ ।
ନକୁଳ ଦକ୍ଷିଣ ଦିଗେ ବିଜେ ହେବାକାଳେ
ପଞ୍ଚଷଠି କବନ୍ଧ ଯେ ଦେଲା ସେ ମଣ୍ଡଳେ ।
ପୂର୍ବଦିଗକୁ ଗମିଲା ମନ୍ତ୍ରୀ ସହଦେବ
ଦ୍ୱାବିଂଶ କବନ୍ଧ ତହିଁ ଦେଲା ଆହେ ଦେବ ।
ପୁଣିହିଁ କଟାଳ ଯହୁଁ କଲା ଭଦ୍ରକାଳୀ
ଏ ହେତୁ ଭାରତ ଯୁଦ୍ଧ କଲେ ବନମାଳୀ ।
ଅନେକ ଯୁଦ୍ଧ ହୋଇଲା ମେରୁଶୃଙ୍ଗ ତୁଲେ
ଚଉଦଶତ କବନ୍ଧ ତହିଁ ମାରିଦେଲେ ।
ଆହେ ଚଇତନ ଯୁଦ୍ଧେ ଯେତେ ମୃତ୍ୟୁ ଲେଖି
ସକଳ କବନ୍ଧ ନେଇ ଦେଲେ ଭୈରବୀକି ।

ଜଳଧର ବ୍ୟୂହେ ଗଲେ ଘେନି ଅର୍ଜ୍ଜୁନକୁ
ବିଶାଶତେ ମ୍ଳେଚ୍ଛ ମାରିଦେଲେ ଭୈରବୀଙ୍କୁ ।
ଶଏ ଷାଠିଏ କବନ୍ଧ ଚକ୍ରବ୍ୟୂହେ ମାରି
ଶକଟ ବ୍ୟୂହରେ ଦେଲେ ଏକଶ ବାସ୍ତରି ।
ହେ ଚୈତନ୍ୟ ରାତ୍ରକାଳେ ହୋଇଲା ସମର
ତହିଁ ପଡ଼ିଲେ କବନ୍ଧ ତିନିଶ ପନ୍ଦର ।
ଅଶେଷ ପୁରୁଷ ତୁହି ସର୍ବ କଲୁ ଜୟେ
ପୁଣି ନାଶ କରୁଅଛୁ ଭୈରବୀର ଭୟେ ।
ପୂରୁବର ନିରାପକ୍ଷ ସୁନ୍ଦର ନିର୍ଭୟ
ଧୀରଜନ ପଣ୍ଡିତଙ୍କ ମନ କର ଥୟ ।
ଅକାରଣେ ପ୍ରତିକୂଳ ହୋଇଲେ ମା କାଳୀ
ଜୟ ଜଗଜ୍ଜନନାଥ ସତ୍ୟ ଏହି ଭଳି ।
ଏତେ ସୈନ୍ୟ ମଲେ ମହାଭାରତ ସମରେ
ମୃତପିଣ୍ଡ ଗଦାହେଲା ଆକାଶ ଉଚ୍ଚରେ ।
ରକ୍ତ ମାଂସ ସବୁ ଖାଇ ସେହି ଭଇରବୀ
ତେଣୁକରି ମୃତପିଣ୍ଡ ନ ରହଇ ଭୁବି ।
ଏମନ୍ତ ଚରିତ ଆଉ ଏମନ୍ତ ପୁରୁଷ
ମାନବ ଶରୀର ମୁହିଁ କହିବଇଁ କିସ ।
ତୁଳସୀବଲ୍ଲଭ ଥାଉ ମମ ହୃଦଗତେ
ଶୂଦ୍ରମୁନି ଶାରଳା ଯେ କହଇ ଭାରତେ ।



## ଘଟୋତ୍କଚ ବଧ ଓ ତାହାର ପୂର୍ବ ଶାପ ବିବରଣ

ଅଗସ୍ତିଙ୍କୁ ପଚାରିଲେ ମନୁ ନୃପବର
ଏଥୁଅନ୍ତେ କିସ କଲେ କର୍ଣ୍ଣ ମହାବୀର ।
ସେହି କଥା ଶୁଣିବାକୁ ବଳଇ ମାନସ
କହନ୍ତି ଅଗସ୍ତି ମୁନି ଶୁଣ ହେ ନରେଶ ।
ଆହେ ଚୈତନ୍ୟ ବିରାଟ କର୍ଣ୍ଣ ହେଲେ ଭେଟ
ଅନେକ ସମର ତହୁଁ କଲାକ ବିରାଟ ।
ହାବୋଡ଼ାଶର ଗୋଟିଏ ମାଇଲାକ କର୍ଣ୍ଣ
ବିରାଟର ରଥ ଭାଜି ହୋଇଗଲା ଚୂର୍ଣ୍ଣ ।
ଗଜେକ ଆରୋହି ପୁଣି ମତ୍ସ୍ୟ ଅଧିପତି
କର୍ଣ୍ଣକୁ ମାଇଲା ତହିଁ ତୁମ୍ବୁରୁ ଶକତି ।
ନିର୍ଘାତ ବାଣରେ ତାକୁ ନିବାରି ରାଧେୟ
ପୁଣି ଧନୁକୁ ଛେଦିଲା ମାରି ଶରଚୟ ।
ବିରାଟର ହସ୍ତୀ ଛଇଛାଡ଼େ ଦେଲା ଦଳି
ସୁତୀକ୍ଷ୍ଣ ବାଣ ପେଷିଣ ନାମ ଜ୍ୱାଳାବଳୀ ।
ମତ୍ତଗଜ ପଡ଼ନ୍ତେ ସେ ଆରୋହିଲା ହୟ
ପରିଘ ଘେନି ଧାମଇଁ ମତ୍ସ୍ୟଦେଶ ରାୟ ।
ବୁଲାଇଣ କର୍ଣ୍ଣକୁ ସେ ମାଇଲା ପରିଘ
ଛେଦିଲା ବାବଲଶର ପେଷି ତାହା ବେଗ ।
ତୁମ୍ବୁର ଶର ମାଇଲା କର୍ଣ୍ଣ ତୀକ୍ଷ୍ଣମୁନା
ଛାଇଛାଡ଼େ ନିକିଳିଲା ପଡ଼ି ତାର ସ୍ନେହା ।
ଫୁଟିଣ ନାରାଚ ଆସି ପଶିଲା ତା ହୃଦେ
ବିରାଟ ଯେ ଅସାଷ୍ଟମେ ପଡ଼ିଲାକ ହୃଦେ ।
ପୁଣି ଅର୍ଦ୍ଧଚନ୍ଦ୍ର ବାଣ ବିନ୍ଧି ବୀରମଣି
ବିରାଟ ଶିର କମଳ ପକାଇଲେ ହାଣି ।
ସଂଗ୍ରାମେ ପତନ ଯହୁଁ ହୋଇଲା ବିରାଟ
ଗୋଡ଼ାଇ ମାଇଲା କର୍ଣ୍ଣ ମତ୍ସ୍ୟଦେଶ ଥାଟ ।
ଭାଜିଣ ସଇନି ତହୁଁ ପଳାଇଲେ ଡରେ
ନନ୍ଦିଘୋଷ ନେଇ କୃଷ୍ଣ ରଖିଲେ ଛାମୁରେ ।
ବିରାଟ ନିଧନ ବାର୍ତ୍ତା ଶୁଣି ବୀର ପାର୍ଥ
ଦୁର୍ଜ୍ଜୟ ନାରାଚ ଘେନି ବିନ୍ଧିଲେ ତ୍ୱରିତ ।
କର୍ଣ୍ଣ ସଙ୍ଗତରେ ଥିଲେ ଅୟୁତେକ ରଥୀ
ଅର୍ଜ୍ଜୁନ ଶରଘାତରେ ହୋଇଲେ ବିକୋତି ।
ବଜ୍ରଗିରି ଦେଶ ରାଜା ନାମ ବୀରବାହୁ
ଅର୍ଜ୍ଜୁନ ଶର ଘାତରେ ପଡ଼ି ମଲା ସେହୁ ।
କାଞ୍ଚନ ଦେଶର କର୍ତ୍ତା ରାଜା କୁଳୁପାକ୍ଷ
ତାହାର ତୁଳେ ପଡ଼ିଲେ ଯୋଦ୍ଧା ତିନିଲକ୍ଷ ।
ଶଲ୍ୟ ବୋଇଲା ହେ କର୍ଣ୍ଣ ଚାହାନ୍ତି ଲେଉଟି
ତୋର ଦେଖନ୍ତେ ସଖାଏ ମଲେ କୋଟି କୋଟି
ତୋହର ବଳେ ପାଣ୍ଡବେ ରାଜ୍ୟ ଛାଡ଼ିଗଲେ
ତୁ ଦେଖୁଁ ଅଠଚାଳିଶ ସସ୍ର ରାଜା ମଲେ ।
ହେ କର୍ଣ୍ଣ ବନ୍ଧୁ ମରାଇ ନିଜେ ହେଉ ସୁଖୀ
ଶୃଗାଳ ସଙ୍ଗତେ ତେଣୁ ତୋତେ ମୁହିଁ ଲେଖି
କୃଷ୍ଣାର୍ଜ୍ଜୁନ ମାରିବାକୁ ଘେନିଛୁ ଶକତି
ସେ ଦୁହେଁ ମଲେ ନିକ୍ଷତ୍ରୀ ହୋଇଯିବ ପୃଥ୍ୱୀ ।
କର୍ଣ୍ଣ ଶଲ୍ୟ କଥାବାର୍ତ୍ତା ହୋନ୍ତି ପରସ୍ପରେ
ଘଟୋତ୍କଚ ମିଳେ ନନ୍ଦିଘୋଷର ଆଗରେ ।
ହୁଅଇ କର୍ଣ୍ଣ ଅର୍ଜ୍ଜୁନଙ୍କର ଘୋର ଯୁଦ୍ଧ
ଦୁର୍ଦ୍ଧକ୍ଷ ଭୀମ ମାଇଲେ ତିନି ଯେ ପରାର୍ଦ୍ଧ ।
ଶକୁନି ବୋଇଲା ଶୁଣ ମାନଚକ୍ରବର୍ତ୍ତୀ
ଏହିକ୍ଷଣି ସୈନ୍ୟ ତୋର ହେବ ବିନଶ୍ୟତି ।
କର୍ଣ୍ଣ ଆଗେ ନନ୍ଦିଘୋଷ ପୁଣି ଘଟୋତ୍କଚ
ବାମପାଶେ ବୃକୋଦର ଡାହାଣେ ଦୁର୍ଦ୍ଧକ୍ଷ ।
ବତ୍ରିଶ ସହସ୍ର ରାଜା ତିନିସସ୍ର ହାତୀ
ଦୁଇକୋଟି ଯୋଦ୍ଧା ସାତ ଅର୍ବୁଦ ପଦାତି ।
କର୍ଣ୍ଣ ଚାରିଆଡ଼ଯାକ ଘେରିଲେଣି ଥାଟ
ଏହିକ୍ଷଣି କର୍ଣ୍ଣବୀର ପ୍ରାଣେ ହେବ ନଷ୍ଟ ।

ଶକୁନି ବଚନେ ରାଜା ମାନଚକ୍ରବର୍ତ୍ତୀ
ତ୍ରିଂଶଲକ୍ଷ ଯୋଦ୍ଧା ଘେନି ଧାମଇଁ ତଡ଼ତି ।
କର୍ଣ୍ଣର ସଙ୍ଗତେ ଆସି ହୋଇଲେକ ସଖା
ପଡ଼ିଛନ୍ତି ସୈନ୍ୟ ଯେତେ କେ କରିବ ଲେଖା ।
ଏତେ ମୃତଶବ ଦେଖି ରାଜା ଦୁର୍ଯ୍ୟୋଧନ
ଭୋ ଦୈବ ବୋଲି କପାଳେ ମାରେ କରମାନ
ଭୋ ମଇତ୍ର ମୋହର ତୁ ବଢ଼ାଇଲୁ ରାଜ୍ୟ
ତୋ ପରା କ୍ଷତ୍ରିୟ ଥାଉଁ ମୁଁ ହେଲି ଅକାର୍ଯ୍ୟ ।
ଆଦ୍ୟରୁ ତୋର ବାହୁକୁ ମୁହିଁ କରି ଆଶ
କଳ୍ପତରୁ ଆଶ୍ରେ କରି ହୋଇଲି ନିରାଶ ।
ରାଜାର ବଚନ ଶୁଣି କର୍ଣ୍ଣ ମହାରଥୀ
କୋପରେ ଘେନିଲା ତହୁଁ ବଜ୍ରର ଶକତି ।
ଭୋ ପିତା ବାସବ ମୋତେ ଦେଲୁ ସତ୍ୟକରି
ମାରିବି କୃଷ୍ଣ ଅର୍ଜ୍ଜୁନ ପ୍ରସାଦେ ତୋହରି ।
କୋପଭର ହୋଇ ତହୁଁ ବୁଲାଏ ଶକତି
ଆକାଶ କମ୍ପିତ ହେଲା କମ୍ପେ ବସୁମତୀ ।
ନାରାୟଣ ଆଜ୍ଞା ଦେଲେ ଘଟୋତ୍କଚେ ରାଇ
କର୍ଣ୍ଣ ଆସୁଅଛି ବଜ୍ର ଶକତି ବୁଲାଇ ।
ଏକ୍ଷଣି କ୍ଷେପିବ ତୋତେ ତୀକ୍ଷ୍ଣ ବଜ୍ରଶର
ନନ୍ଦିଘୋଷ ପଛକତି ଲୁଚା ତୋ ଶରୀର ।
ନାରାୟଣଙ୍କ ବଚନେ ହିଡ଼ିମ୍ବୀର ସୁତ
ନନ୍ଦିଘୋଷ ପଛକତି ଲୁଚିଲା ତ୍ୱରିତ ।
କପିକେତନ ଧ୍ୱଜରେ ଥିଲା ହନୁମନ୍ତ
ତାକୁ ରାଇ ଆଜ୍ଞା ଦେଲେ ଦେବ ଜଗନ୍ନାଥ ।
କର୍ଣ୍ଣ ପେଷୁଅଛି କ୍ରୋଧେ ଅଶନି ଶକତି
ଯାକୁ ଇଚ୍ଛା ବଧକରି ଯାଇ ସେ ସଂପ୍ରତି ।
କୋପରେ ବଜ୍ର ଶକତି ବୁଲାଇଣ କର୍ଣ୍ଣ
ବୋଲେ କୃଷ୍ଣାର୍ଜ୍ଜୁନ ନାଶ କର ତୁ ବହନ ।
ହନୁମନ୍ତ ସ୍ୟନ୍ଦନକୁ ଚାପୁ କୁତୂହଳେ
ମହାଭାରାରେ ସେ ରଥ ପଶିଲା ପାତାଳେ ।
ହିଡ଼ିମ୍ବିକୀର ନନ୍ଦନ ରଥ ପଛେ ଥିଲା
ତାହାର ହୃଦରେ ଯାଇ ସେ ବଜ୍ର ପଡ଼ିଲା ।
ବକ୍ଷେ ପଡ଼ନ୍ତେ ଭୂମିରେ ପଡ଼େ ମୋହ ହୋଇ
ଶରମୁନ ନିକିଳିଲା ଶତେଯୂଣ ଯାଇ ।
ହନୁମନ୍ତ ସେ ରଥକୁ ପୁଣି ଆଣେ ଟୋଳି
ପାଞ୍ଚଜନ୍ୟ ଶଙ୍ଖନାଦ କଲେ ବନମାଳୀ ।
ଅନେକ ଆନନ୍ଦେ କୃତକୃତ୍ୟ ହେଲେ ହରି
ଉପାୟେ କେଶବ କର୍ଣ୍ଣ ଦର୍ପକୁ ସଂହାରି ।
ଇନ୍ଦ୍ରଦେବତାଙ୍କ ମନୁ ତୁଟିଗଲା ଭ୍ରାନ୍ତି
ଦେବତାମାନଙ୍କୁ ଘେନି ଆନନ୍ଦ ହୁଅନ୍ତି ।

ଉପାୟେକ ଜଗନ୍ନାଥ କଲେ ଚକ୍ରକୂଟ
କୌରବ ବଳଧ୍ୱଂସନ ଜଗଜ୍ଜନ ଶ୍ରେଷ୍ଠ ।
ସେ ଦେବଙ୍କ କେଉଁମାୟା ତାର ଅନ୍ତ ନାହିଁ
କେ ତାହା ବୁଝି ପାରିବ ନରଦେହ ବହି ।
ସଞ୍ଜୟକୁ ଡକାଇଣ କହେ ଧୃତରାଷ୍ଟ୍ର
ପାଞ୍ଚଜନ୍ୟ ଶଙ୍ଖନାଦ ବଡ଼ଇ ଉତ୍କଟ ।
ସଞ୍ଜୟ ବୋଇଲା ଆହେ ଶୁଣ କୁରୁପତି
କର୍ଣ୍ଣ କୁଣ୍ଡଳ କବଚ ନେଲେ ସୁରପତି ।
ଦାନ ଭାରାରେ ତାଙ୍କର ନ ଚଳିଲା ରଥ
ପ୍ରତିଗ୍ରହେ ବଜ୍ରଶକ୍ତି ଦେଲେ ସୁରନାଥ ।
ମଘବା ବୋଇଲେ କାର୍ଯ୍ୟକାଳେ ସୁମରିବୁ
ଏହି ବଜ୍ରଶର ଥରେ ମାତ୍ରକ ପେଷିବୁ ।
ସାମାନ୍ୟ ସମରେ ଏହା ନ ମାରିବୁ ଘେନି
କର୍ଣ୍ଣ ବୋଇଲା ମାରିବି କୃଷ୍ଣାର୍ଜ୍ଜୁନ ବେନି ।
କୃଷ୍ଣାର୍ଜ୍ଜୁନଙ୍କୁ ଦେଖିଣ କର୍ଣ୍ଣେ କହେ ଶଲ୍ୟ
ଏ ଦୁହିଁଙ୍କୁ ବଜ୍ରଶକ୍ତି ମାର ମହାମଲ୍ଲ ।
ଶଲ୍ୟ ବଚନେ ଇନ୍ଦ୍ରଙ୍କୁ ମାଗିଲା ଶକତି
ଦେଖି ରଥ ପାତାଳକୁ ନେଲେ ଶିରୀପତି ।
ମାନଗୋବିନ୍ଦ ଝିଙ୍ଗାସ କରନ୍ତେ କର୍ଣ୍ଣକୁ
ରାଗେ ଶକତି ପେଷିଲା କୃଷ୍ଣଅର୍ଜ୍ଜୁନଙ୍କୁ ।
ବେଗେ ବଞ୍ଚାଇଲେ କୃଷ୍ଣ ନନ୍ଦିଘୋଷ ରଥ
ଘଟୋତ୍କଚ ପରେ ପଡ଼ି ସେ ହେଲା ନିପାତ ।
ଧୃତରାଷ୍ଟ୍ର ବୋଲେ ବଡ଼ ଦୁର୍ଲ୍ଲଭ ଏ କଥା
ଦେବତା ବାକ୍ୟ କେମନ୍ତେ ହୋଇଲା ଅନ୍ୟଥା
ଘଟୋତ୍କଚର ଆବର ଥିଲା କେଉଁଦୋଷ
ସେଥିପାଇଁ ବଜ୍ରାଘାତେ ହୋଇଲା ବିନାଶ ।
ଗାଲବ ନନ୍ଦନ ବୋଲେ ଶୁଣ ନୃପମଣି
ରାଜସୂୟ ଯାଗରେ ମୁଁ ଯାହାଅଛି ଶୁଣି ।
ବ୍ୟାସ ଯେତେବେଳେ ଦେଲେ ସମ୍ପୂର୍ଣ୍ଣ ଆହୁତି
ଅଗ୍ନି ଶିଖା ନ ଘେନିଣ ଦିଶଇ ଅମୂର୍ତ୍ତି ।
ମାରକଣ୍ଡ ବୋଇଲେ ହେ ତୋରପରା ମୁନି
ପୂର୍ଣ୍ଣାହୁତି ଦେଲେ ସୁଦ୍ଧା ନ ଘେନିଲା ବହ୍ନି ।
ନାରଦ ବୋଲେ ବ୍ୟାସଙ୍କ ନାହିଁ କିଛି ଦୋଷ
ଯୁଧିଷ୍ଠି ଅପୁତ୍ରି ହେତୁ ଅଗ୍ନି ନୁହେ ତୋଷ ।
ମାର୍କଣ୍ଡ ବୋଇଲେ ତୁମ୍ଭେ ନ ଜାଣିଛ କିଛି
ଆମ୍ଭେ ଜାଣୁ ଯୁଧିଷ୍ଠିଙ୍କ ତନୟ ଯେ ଅଛି ।
ପଞ୍ଚ ପାଣ୍ଡବେ ଅଟନ୍ତି ଯେଣୁ ଏକଆତ୍ମା
ହିଡ଼ିମ୍ବକ ପୁରେ ପୁତ୍ର ଜାତ କଲା ଭୀମା ।
ନାରଦ ବୋଇଲେ ତାକୁ ବେଗେ ଅଣାଇଣ
ଯୁଧିଷ୍ଠି ଦ୍ରୌପଦୀ କୋଳେ କର ଆରୋପଣ

ଆଜ୍ଞାପାଇ ବୃକୋଦର ତାକୁ ସୁମରିଲା
ଘଟୋତ୍କଚର ଆସନ ଅଚିରେ କମ୍ପିଲା ।
କୋଟିଏ ରଥ ଘେନିଣ ହିଡ଼ିମ୍ବିକୀ ସୁତ
ରାଜସୁୟ ଯଜ୍ଞକୁ ସେ ହୋଇଲା ପ୍ରସ୍ତୁତ ।
ହିଡ଼ିମ୍ବିକୀ ବୋଲେ ବାବୁ ରାଜସୂୟେ ଯିବୁ
ମୋର ବଚନ ସର୍ବଦା ମନେ ରଖିଥିବୁ
ଆଗେ ପ୍ରଣମିବୁ ପିତା ପାଣ୍ଡବମାନଙ୍କୁ
ତଦପରେ ପ୍ରଣମିବୁ ବ୍ୟାସ ଶ୍ରୀକୃଷ୍ଣଙ୍କୁ ।
ପୁଣି ପ୍ରଣମିବୁ ଋଷି ଯେତେକ ବ୍ରାହ୍ମଣ
ଆଉ ନମସ୍କାର କାରେ ନ ହୋଇ କାଣ ।
ଘଟୋତ୍କଚ କହେ ମାତା କହିଲୁ ଅନୀତି
ସଭାମଧ୍ୟେ ଥିବେ କେତେ ମାନ୍ୟଜନ ବ୍ୟକ୍ତି
ପୁଣି ଯୁଧିଷ୍ଠିଙ୍କ କୋଳେ ଥିବେ ଯାଜ୍ଞସେନୀ
ବ୍ରାହ୍ମଣ ରାଜାର ଝିଅ ସାକ୍ଷାତ ଜନନୀ ।
ଯଦ୍ୟପି ତାହାଙ୍କୁ ମୁହିଁ ପ୍ରଣାମ ନୋହିବି
ତାହାଙ୍କ କୋପରେ ମାତ ନିଶ୍ଚେ ଭସ୍ମ ହେବି
ହିଡ଼ିମ୍ବିକୀ ବୋଇଲା ତୁ ପାଟ ଅଭିଷେକୀ
ତୋର ନମସ୍କାର ବାବୁ ନୁହଇ ସ୍ତିରୀଙ୍କି ।
ଯୁକତେ ଦ୍ରୁପଦ ଝିଅ ଅଟଇ ଅସତୀ
ଗୋଟିଏ ସ୍ତିରୀର କାହିଁ ଅଛି ପାଞ୍ଚପତି ।
ତେଣୁ ଯେବେ ଦ୍ରୌପଦୀକୁ ଡରିଲୁ ତୁ ବାବୁ
ଆମ୍ଭେ ତୋର ସଙ୍ଗେ ରାଜସଭାକୁ ତ ଯିବୁ ।
ପୁତ୍ରକୁ ଘେନିଣ ବଜ୍ର କବଚର ବାଳୀ
କୋଟିଏ ରଥ ସଙ୍ଗରେ ଯଜ୍ଞେ ଘେନି ଚଳି ।
ରହିଲା ହିଡ଼ିମ୍ବୀ ସୈନ୍ୟସହ ସଭାଦ୍ୱାରେ
ଏକା ଘଟୋତ୍କଚ ଗଲା ସଭାର ଭିତରେ ।
ଆଗେ ନମସ୍କାର କଲା ଯୁଧିଷ୍ଠି ଦେବଙ୍କୁ
ପଛେ ପ୍ରଣମିତ ହେଲା ବ୍ୟାସ ଶ୍ରୀକୃଷ୍ଣଙ୍କୁ ।
ଏହିପରି ସମସ୍ତଙ୍କୁ ନମସ୍କାର କରି
ଅଗ୍ରେ ଉଭା ହେଲା ବେନି ହସ୍ତ କାଖେ ଭରି ।
ଦ୍ରୌପଦୀଙ୍କୁ ନମସ୍କାର ନୋହିବାରୁ ପୁତ୍ର
ଅପମାନରେ ତାଙ୍କର ଦହିଦେଲା ଗାତ୍ର ।
କୋପରେ ବୋଇଲେ ଆରେ ମୁହିଁ ତୋରମାଏ
ଅସୁର ଜାତି ତୁ ମୂର୍ଖ ଅଟୁ ନୀଚାଶୟେ ।
ଲକ୍ଷେରାଜା ସମ୍ମୁଖରେ ମୋତେ ଦେଲୁ ଲଜ୍ଜା
ସାବତ ହିଂସାରେ ତୁହି ମୋତେ କଲୁ ତ୍ୟଜା
ମୁହିଁ ଯେବେ ତୋର ମାତା ଅଟଇ ପ୍ରମାଣ
ବିନାଯୁଦ୍ଧେ ହୃଦେ ତୋର ପଡୁ ବଜ୍ରବାଣ ।
ସଞ୍ଜୟ ବୋଇଲେ ତୁମ୍ଭେ ଶୁଣ ଧୃତରାଷ୍ଟ୍ର
ଘଟୋତ୍କଚ ଦ୍ରୌପଦୀର ଶାପେ ହେଲେ ନଷ୍ଟ
ଗୁରୁଜନ ବଚନ କି କେବେ ହୁଏ ଆନ
ତେଣୁ ବିନାଯୁଦ୍ଧେ ଶକ୍ତି ହୋଇଲା ପତନ ।
ଏଥୁଅନ୍ତେ ଧୃତରାଷ୍ଟ୍ର ପଚାରିଲେ ପୁଣି
ତା ମାତା କିସ କହିଲା ଏହି କଥା ଶୁଣି ।
ହିଡ଼ିମ୍ବୀ ବୋଇଲା ତୋର ଅଟେ ପାଞ୍ଚପତି
ସ୍ତିରୀମାନଙ୍କରେ ତୁହି ଅଟୁ ଯେ ଅସତୀ ।
କୋଟିପାଟେ ଅଭିଷେକୀ ଅଟେ ମୋର ସୁତ
ସ୍ତିରୀଙ୍କୁ ତା ନମସ୍କାର ନୁହଇ ଯୁକତ ।
ତୁ ମୋଢ଼ୀ ଆଣ୍ଠୁକୁଡ଼ି ଲୋ ଅଟୁ ଅପୁତ୍ରକୀ
ପୁତ୍ରର ସ୍ନେହ କେମନ୍ତେ କାହୁଁ ଜାଣିବୁ କି ।
ପରପୁଅ ମଣି ତୁହି ଦେଲୁ ଗୁରୁଦଣ୍ଡ
ବଂଶ ବୁଡ଼ାଇଲୁ ନିଶ୍ଚେ ବୁଡ଼ିଲା ତୋ ପିଣ୍ଡ ।
ଅବଶ୍ୟଲୋ ପାଞ୍ଚପୁତ୍ର ହେବେ ତୋର ଗର୍ଭେ
ସାତବର୍ଷେ ଶିରଚ୍ଛେଦ ସେମାନେ ହୋଇବେ
ଶୁଣି ବିଷାଦିତ ହେଲେ ଧୃତରାଷ୍ଟ୍ର ନୃପ
ବୋଲେ ଦୁଇବୋହୂ କୋପେବଂଶ ହେଲା ଲୋପ
ନମଇଁ ଶ୍ରୀନୀଳଗିରି ନାଥ ଜଗନ୍ନାଥ
ବଉଦ୍ଧରୂପେ ହୋଇଣ ଶଙ୍ଖଚକ୍ର ହସ୍ତ ।
ଆହେ ପ୍ରଭୁ କଳିକାଳ ବଡ଼ଇ ଦୁସ୍ତର
କୁଟିଳତା ପ୍ରବଞ୍ଚନା ମିଥ୍ୟାକଥା ଘର ।
ପରଘରବୁଡ଼ା ଯେହୁ ଅଟଇ ନିନ୍ଦୁକ
ହାତୀ ଘୋଡ଼ା ଚଢ଼ି ଅର୍ଥେ ଭରିଲେ ସିନ୍ଦୁକ ।
ସତ୍ୟେ ଥାଇ ତୋତେ ଧ୍ୟାୟି ଯେ ହେଲା ମଉନ
ସଂସାରେ କହିଲେ ତାକୁ ନିର୍ବୋଧ ଅଜ୍ଞାନ ।
ଏହିପରି ନରଙ୍କର ଦେଖି ବିଭୀଷିକା
ମନ ମଧ୍ୟରେ ହେଲିଣି ସର୍ବଦା ତାଟକା ।
ଯେହୁ ଯାହା କହୁ ତହିଁ ମୋର କିସ ଫଳ
କେବଳ ମାଗୁଛି ନାଥ ଦିଅ ଏହି ବର ।
ହୃଦୟ ସିଂହାସନରେ କର ଅଧିଷ୍ଠାନ
ଜପୁ ମୋ ରସନା କୃଷ୍ଣ ଶ୍ରୀମଧୁସୂଦନ ।
ଗତି ଅଗତି ବୋଲିଣ ସେ ଦୁଇ ବିଷୟ
ଯାହା ତୁ କରିବୁ ଯେଣୁ ଅଟୁ ଇଚ୍ଛାମୟ ।
ସେଥିପାଇଁ ତିଳେ ମାତ୍ର ନ କରେ ଭାବନା
ଶାରଳା ଦାସର କଥା ତୋତେ ଲାଗେ ସିନା



## ଭୀମସେନ ଅଶ୍ୱଥାମା ରଥ ଫିଙ୍ଗିଦେବା, ଅଶ୍ୱଥାମା ହସ୍ତୀର ନିଧନ ଓ ତାହାର ବଂଶାବଳୀ

ଶୁଣି ବୈବସ୍ୱତ ମନୁ ଏ ଅନ୍ତେ ଯା ହେଲା
ଅଢ଼ାଇ ପ୍ରହର ରାତ୍ରେ ଘଟୋତ୍କଚ ମଲା ।

ପୁତ୍ରର ନିଧନେ ଭୀମ ହୋଇ ମହାକ୍ରୋଧ
ନିଉପ୍ରୋଧ ହୋଇ ବୀର କରିଲାକ ଯୁଦ୍ଧ ।
ମହା ବାତରେ ଯେସନେ ବୃକ୍ଷ ତଳେ ଲୋଟେ
ଗଦା ବୁଲାଇ ତେସନେ ସମସ୍ତଙ୍କୁ ପିଟେ ।
ଅପାର ସୈନ୍ୟ ପଡ଼ିଲେ ତାର ରଣରଙ୍ଗେ
ରକ୍ତ ବିଲେପନ ହେଲା ସବୁଙ୍କର ଅଙ୍ଗେ ।
ସୈନ୍ୟ ପଡ଼ନ୍ତେ ପାବନି ଦ୍ୱିଗୁଣ ବଳିଷ୍ଠ
ଭୀମ ଅଶ୍ୱତ୍ଥାମା ଦୁହେଁ ଆସି ହେଲେ ଭେଟ ।
ପ୍ରତିଜ୍ଞା କରିଣ କୋପେ ବୋଲେ ଅଶ୍ୱତ୍ଥାମା
ଆଜ ତୋ କାଳ ପୂରିଲା ଜାଣ ଆରେ ଭୀମା
ଏତେ ବୋଲି କୋପେ ବୀର ହୋଇଣ ଅସ୍ଥିର
କୋଦଣ୍ଡ ଧରି ଗୁଣରେ କରିଲା ଟଙ୍କାର ।
ଲୁହା ପାଞ୍ଚଶର ଯେହୁ ଅତି ତୀକ୍ଷ୍ଣ ମୁନା
ତାକୁ ଘେନିଣ ବିନ୍ଧିଲା ନ ଯାଇ ଗଣନା ।
ମହା ଧନୁ ଏକ ଧରି ବୀର ବୃକୋଦର
ପୁଣି କାଙ୍କପକ୍ଷଯୁକ୍ତ ଲୁହା ପଞ୍ଚଶର ।
ତାକୁ ଧରି ବିନ୍ଧେ ଭୀମ ଅତି କ୍ରୋଧ ହୋଇ
ଦ୍ରୋଣଙ୍କ କୁମର ରଣେ ନିର୍ଭୟ ଅଟଇ ।
ଶରେ ଶର ପରିତାଳ ହୁଅନ୍ତେଣ ବେନି
ରୁଣୁଝୁଣୁ ଶବଦରେ ଉଠିଲା ବହନି ।
କେହି କାହାକୁ ଯେ ଦୁହେଁ ନୁହନ୍ତି ନା ଓଛ
ଯୁଝନ୍ତେ ସମରେ ବେନି ବୀର ସମକଚ୍ଛ ।
ପୁଣି ବିଂଶବାଣ କ୍ରୋଧେ ଧଇଲାକ ଦ୍ରୋଣୀ
ଭୀମସେନ ଉରକୁ ବିନ୍ଧିଲାକ ଟାଣି ।
ଯେସନେ ପ୍ରଳୟକାଳେ ମେଘମାନେ ଘୋଟି
ସେହିମତି ଆକାଶରୁ ହେଲା ଶରବୃଷ୍ଟି ।
ମାଇଲେକ ଚଉଷଠି ଶର ଗୁରୁସୁତ
ଯେସନେକ ଆକାଶରୁ ପଡ଼ଇ ନିର୍ଘାତ ।
ଭୀମସେନ ରଥ ଶତଖଣ୍ଡ ହୋଇ ଭାଜି
ପାଦଗତି ହୋଇ ଭୀମସେନ ଗଳଗାଜି ।
ଗଦାକୁ ବୁଲାଇଣ ଯେ ଧାଇଁଲା ପାବନି
ଅଶ୍ୱତ୍ଥାମା ପ୍ରହାରିଲା ଶର ଶତ ତିନି ।
ଗିରି ସମାନ ପଡ଼ିଲା ଭୀମ ବାମଅଙ୍ଗ
ତିନିଶତ ବାଣ ପଡ଼ି ହେଲା ସବୁ ଭଙ୍ଗ ।
ପୁଣି ନାରାଚ ବିନ୍ଧିଲା ଦ୍ରୋଣୀ ତିନିଶତ
ରୋମେ ରୋମେ ନିକିଳିଲା ଭୀମଦେହୁ ରକ୍ତ
ଯେଉଁରୂପେ ସର୍ପମାନେ ପଶନ୍ତି ବିବରେ
ତେମନ୍ତ ଶର ଚଳିଲା ଭୀମର ଶରୀରେ ।
ତ୍ରିପଣ୍ଡ ଗଳିତ ରକ୍ତ ଭୀମସେନ କାୟେ
କୋପଭରେ ଗର୍ଜ୍ଜଇ ସେ କାଳସର୍ପ ପ୍ରାୟେ ।
ତହୁଁ ବୃକୋଦର ରୂପ ଧଇଲା ପାବନି
ଶୂନ୍ୟ ଭୁବନେ ବିକାଶେ କମ୍ପେ ପୃଥ୍ୱୀ ତିନି ।
ରେ ରେ କାର କରି କୋପେ ଧାଇଁଣ ପ୍ରଚଣ୍ଡ
ଧଇଲା ଅଶ୍ୱତ୍ଥାମାର ଯାଇ ରଥଦଣ୍ଡ ।
ଶରୀର କମ୍ପେ କଦଳୀ ପତର ପରାୟେ
ରଥକୁ ଶୂନ୍ୟେ ବୁଲାଏ କରି ଚକ୍ରପ୍ରାୟେ ।
ଯେହ୍ନେବାଳପୋଏ ଟେକାଫିଙ୍ଗି ଦ୍ୟନ୍ତିଖେଳେ
ତେହ୍ନେ ଦ୍ରୋଣୀରଥ ଫିଙ୍ଗେ ପବନର ବାଳେ
ଭାରତ ଭୂମିକୁ ଜିଣି ବାରୁଣାର ବନେ
ଯମୁନା ସେପାରେ ପଡ଼େ ବତିଶ ଯୋଜନେ
ରଥ ଅଖ ଚକ ଭାଙ୍ଗି ମଲେ ଅଶ୍ୱଚାରି
ସାରଥି ମରିଲା ମଧ୍ୟେ ତଳେ ପଡ଼ିକରି ।
ରଥ ପଡ଼ିବାର ଦେଖି ଡିଏଁ ଅଶ୍ୱତ୍ଥାମା
ଯୋଜନ ଅନ୍ତରେ ଯାଇ ପଡ଼ିଲା ମହାତ୍ମା ।
କର ଚରଣ ତାହାର ତହିଁ ଭାଙ୍ଗିଗଲା
ରୁଧିରରେ ବିଲେପନ ଶରୀର ହୋଇଲା ।
ମୁଖ ନାସିକା ବାଟରୁ ବୋହିଲା ଶୋଣିତ
ଗତାତ୍ମା ପ୍ରାୟ ପଡ଼ିଲା ଦ୍ରୋଣଙ୍କର ସୁତ ।
ମାଳବ ଦେଶର ରାଜା ଅଟେ କୃତବର୍ମା
ତାହାର ହସ୍ତୀର ନାମ ପୁଣି ଅଶ୍ୱତ୍ଥାମା ।
ପାଞ୍ଚଲକ୍ଷ ଯୋଦ୍ଧା ଘେନି ସେହି ନୃପବର
କୋପାନଳେ ଝାସଦେଲା ଭୀମର ଆଗର ।
ସେହି ମହାମତ୍ତ ଅଶ୍ୱତ୍ଥାମା ହସ୍ତୀ ଚଢ଼ି
ଭୀମସେନ ଓଗାଳିଲା ବଜ୍ର ସେହ୍ନା ଭିଡ଼ି ।
ପରିଘ କୋନ୍ତ ଲାଙ୍ଗିଆ ପୁଣି କରବାଳ
ବିଜୁଳି ତେଜରୁ ବଳି ଦିଶଇ ଉଜ୍ଜ୍ୱଳ ।
ପାଞ୍ଚଲକ୍ଷ ଯୋଦ୍ଧା ଏକମୁଖ ହୋଇ ଉଠି
ଭୀମସେନକୁ ମାଇଲେ ନବନିଶି ଯାଠି ।
କୋପେ ଭୀମସେନ ଦେଲା ବାମଅଙ୍ଗ ପାତି
ପଡ଼ିଣ ଚୂର୍ଣ୍ଣ ହୋଇଲା ମୁଦ୍‌ଗର ଶକତି ।
ବାମ ଅଙ୍ଗ ପାତି ପାତି ଚାଲଇ ପାବନି
ଗୋଡ଼ାଇ ମାରେ ମାଳବ ଦେଶର ସଇନି ।
ରଥକୁ ରଥ କଚାଡ଼ି କରିଦିଏ ଚୂର
ଗଜକୁ ଗଜ ବିଘାତେ କରଇ ସଂହାର
ଅସଂଖ୍ୟ ସସ୍ର ସୈନ୍ୟକୁ ଚିଳେ ନାହିଁ ଶଙ୍କା ।
ସମରେ ନିର୍ବୀର ସେହି ଅଟେ ରଣରଙ୍କା ।
ରଣରେ ବିମୁଖ ହୋଇ ରହିଲେ ସଇନି
କେବା ଦନ୍ତେ କୁଟା ଧରି କରିଲେ ଦଇନୀ ।
ନିର୍ଦ୍ଦୟରେ ନିରପେକ୍ଷ ଅଟେ ଯାର ବାନା
ଶରଣେ ବୋଇଲେ ମାରେ ଆଗକରି କିନା ।

ତିନିଲକ୍ଷ ଯୋଦ୍ଧା ରଥୀ ଆଉ ଅଶ୍ୱହସ୍ତୀ
ବେନିଯୋଜନ ପର୍ଯ୍ୟନ୍ତେ ପଡ଼ିଲେ ପଦାତି ।
ଅସଂଖ୍ୟ ସୈନ୍ୟ ପଡ଼ିବା ଦେଖି କୃତବର୍ମା
ଆପଣେ ଟେକିଲା ମହାନାଗ ଅଶ୍ୱଥାମା ।
ତିନି ଯୋଜନ ଉପର୍ଗ ଅଶ୍ୱଥାମା ହସ୍ତୀ
ତା ଉପରେ ଚଢ଼ି ଶର ବିନ୍ଧଇ ନୃପତି ।
ବୈବସ୍ୱତ ମନୁ ପୁଚ୍ଛେ ଆହେ ବ୍ରହ୍ମବେତ୍ତା
ଏହି ନାଗର ଅସଂଖ୍ୟ ଅଟଇ ଯେ କଥା ।
ଏଥିର ତଦନ୍ତ ମୋତେ କହ ମହାମୁନି
ତବ ମୁଖୁଁ ଶୁଣି ମୁହିଁ ହୋଇବଇଁ ଜ୍ଞାନୀ ।
ବଦନ୍ତି ଅଗସ୍ତି ଶୁଣ ବିଲଙ୍କା ରାଜନ
ଏ ହସ୍ତୀର ବଂଶାବଳୀ କରୁଛି ଗାୟନ ।
ସିନ୍ଧୁ ମନ୍ଥନରୁ ଜାତ ଐରାବତ ହସ୍ତୀ
ବୈରାବତ ନାଗ ଅଟେ ଏହାର ସନ୍ତତି ।
ବୈରାବତର ନନ୍ଦନ ନାମ ମହାନାଦ
ଏହାର ନନ୍ଦନ ନାମ ମଦନ ଅନାଦ ।
ମଦନ ଅନାଦ ସୁତ ମହାନନ୍ଦ ହସ୍ତୀ
ମହାମେରୁ ବୋଲିକରି ଏହାର ସନ୍ତତି ।
ମହାମେରୁର ନନ୍ଦନ ରାୟ ବଜ୍ର ହସ୍ତୀ
ତାହାର ନନ୍ଦନ ଅଟେ ଗଜ ପୁଷ୍ପଦନ୍ତୀ ।
ଗଣପତିଙ୍କର ଶିର ପୁଷ୍ପଦନ୍ତ ମୁଣ୍ଡ
ପୂର୍ବେ ଶିବ କରିଥିଲେ ଯାକୁ ଦୁଇଖଣ୍ଡ ।
ପୁଷ୍ପଦନ୍ତର ନନ୍ଦନ ଗଜ ଅଶ୍ୱଦକ୍ଷ
ତାହାର ନନ୍ଦନ ବାରାନିଧି ସିନ୍ଧୁବକ୍ଷ ।
ସିନ୍ଧୁବକ୍ଷର ନନ୍ଦନ ଗିରିଜା ଉତ୍ତମା
ଗିରିଜା ନନ୍ଦନ ନାମ ଅଟେ ଅଶ୍ୱଥାମା ।
ଏହାର ସୁତ ସୁହସ୍ତୀ ନାମ ଅଟେ ତାର
ଭାରତଯୁଦ୍ଧେ ଦେଖିଲେ ଏ ଦୁଇ କୁଞ୍ଜର ।
ବିଶ୍ୱରୂପକୁ ଧଇଲେ ପୃଥ୍ୱୀ ସଙ୍ଗେ ସରି
ମହାରୂପ ହେଲେ ପୁଣି ହୁଏ ମେରୁଗିରି ।
ଉପରବଂଶ ମହିମା ପ୍ରତ୍ୟକ୍ଷରେ ଜାଣୁ
ତେରକ୍ରୋଶ ବ୍ୟାପିଅଛି ସେ ହସ୍ତୀର ତନୁ ।
ଭାରତର ଯୁଦ୍ଧଭୂମି ବାରଯୂଣ ସ୍ଥଳୀ
ଥୋର ହସ୍ତେ ଜମ୍ବୁଦ୍ୱୀପ ପାରଇ ସେ ତୋଳି ।
ଶୁଣି ନୃପତି ବୋଇଲା ମନୁ ନୃପରାୟ
ଅଶ୍ୱଥାମା ହସ୍ତୀଯୁଦ୍ଧ ଏବେ ମୋତେ କହ ।
ବଦନ୍ତ ଅଗସ୍ତି ଶୁଣ ବିଲଙ୍କାଧିପତି
ସେ ହସ୍ତୀକି ସିନା ଯୋଦ୍ଧା ପବନ ସନ୍ତତି ।
ଅଶ୍ୱଥାମା ହସ୍ତୀ ଯେହ୍ନେ ମନ୍ଦର ପରାୟେ
ଦ୍ୱିତୀ ମନ୍ଦର ଜାଣିଣ ଭୀମସେନ କାୟେ ।
ବୃକୋଦର ସ୍ୱରୂପକୁ ଭୀମ ପରକାଶି
ଅଶ୍ୱଥାମା କୁଞ୍ଜରକୁ ମନରେ ଆକ୍ରୋଶି ।
ବାଉନ ବାଉନ ଭାର ଗଦା ବେନିକରେ
ପୃଥିବୀ କମ୍ପିଲା ଭୀମସେନର ରଡ଼ିରେ ।
ବୁଲାଇଣ ଗଦାବର କରି ଅତିକ୍ରମ
ଅଶ୍ୱଥାମା କୁମ୍ଭସ୍ଥଳେ ପିଟେ କରି ତମ ।
ଶତଖଣ୍ଡ ହେଲା ଅସ୍ଥି କୁମ୍ଭସ୍ଥଳ ଭାଜି
ଘାଏ ମତ୍ତନାଗ ପଡ଼େ ହୋଇ ଗଳଗାଜି ।
ରଣ ଭୂଇଁରେ ପଡ଼ିଲା ବହୁ ସୈନ୍ୟ ମାଡ଼ି
ଆକାଶେ ଶୁଭିଲା ଭୀମସେନ ଘୋର ରଡ଼ି ।
ଆକାଶରେ ଦେଖୁଥିଲେ ଥାଇଣ ତ୍ରିଦଶେ
ଅଶ୍ୱଥାମା ହତ ବୋଲି ଶୁଭେ ଚଉପାଶେ ।
ଥାଟ ଯାକ ନିଶବଦ ଶୁଭେ ଏ ଶବଦ
ଶୁଣିକରି ସର୍ବଜନ ହୋଇଲେ ସ୍ତବଧ ।
ଜୟ ଜଗନ୍ନାଥ ଜୟ ଜୟ ଚକ୍ରଧର
ଚଉଦ ଭୁବନନାଥ ମହିମା ଅପାର ।
ଦୁଷ୍ଟଜନଙ୍କୁ ନିବାରି ସନ୍ଥଜନ ପାଳୁ
ତୋ ବାହାରେ ଅଛି କିଏ ପରମ ଦୟାଳୁ ।
ତୋର ନାମକୁ ଭୁଲି ନରେ ମନ୍ଦକର୍ମେ ମାତି
ନାନାଦି ଅକ୍ରିୟା କରି ବୁଲୁଥାନ୍ତି ନିତି ।
ଦିନେ ଭ୍ରମକ୍ରମେ ତୋର ନାମ ଦେଲେ ଧରି
ସକଳ ପାଶୋରି ତାକୁ ନେଉ କୋଳକରି ।
ମୁଁ କି ସେମାନଙ୍କଠାରୁ ଅଟଇ ନିତାନ୍ତ
ଡାକି ଡାକି ପ୍ରାଣ ମୋର ହେଲା ଓଷ୍ଠାଗତ
ଜାଣିଲି ହେ ନାଥ ମୋତେ ନାହୁଁ ତୁ ନିର୍ମାଣି
ତେଣୁ ଶୁଭୁନାହିଁ କର୍ଣ୍ଣେ ମୋ ଡାକିବା ବାଣୀ ।
ଶୁଣ ବା ନ ଶୁଣ ମୋର ଡାକିବାର ମୂଳ
ଶାରଳା ଦାସ ମାଗଇ ମୁକତି କେବଳ ।



## ଦ୍ରୋଣାଚାର୍ଯ୍ୟ ବଧ

ଏଥୁଅନ୍ତେ ପଚାରନ୍ତି ମନୁ ମହାରଥୀ
ହେ ଅଗସ୍ତି ମୁନି କହ ଦ୍ରୋଣଯୁଦ୍ଧ କଥା ।
ସେହି କଥାକୁ ଶୁଣାଇ ପୂରାଅ ମାନସ
ତବ ମୁଖୁଁ ଶୁଣି ମୁହିଁ ହୋଇବି ସନ୍ତୋଷ ।
ତାହା ଶୁଣି କହୁଛନ୍ତି କୁମ୍ଭମୁନି ସୁତ
ମନଦେଇ ଶୁଣ ତେବେ ତାହାର ଚରିତ ।
ଦ୍ରୋଣଗୁରୁ ଏହିରୂପେ ସମର କରନ୍ତି
ଯେହ୍ନେ ଅଗ୍ନିର ସମ୍ମୁଖେ କେହି ନ ରହନ୍ତି ।

କାଶୀଦେଶର ନୃପତି ନାମ କାଶୀଶ୍ୱର
ତାର ସଙ୍ଗେ ଅଛି ପାଞ୍ଚସହସ୍ର କୁଞ୍ଜର ।
ଦ୍ରୋଣଙ୍କ ଛାମୁରେ ଆସି ମିଳେ ନିଶାକାଳେ
ଦୁଃସହ ପ୍ରତିଜ୍ଞା ଦ୍ରୋଣ ଆକର୍ଷଣ ବେଳେ ।
ଧାମନ୍ତି ଯେ ଦ୍ରୋଣଗୁରୁ କାଶୀଶ୍ୱର ଦେଖି
ବିନ୍ଧନ୍ତି ନାରାଚ ଦୂରୁଁ ଧର୍ମକୁ ଉପେକ୍ଷି ।
ଯେଉଁପରି ପକ୍ୱଫଳ ବାତାଘାତେ ପଡ଼େ
ଶରାଘାତେ ସେହିରୂପେ ଯୋଦ୍ଧା ଶିର ଛିଡ଼େ
ଲକ୍ଷ ଲକ୍ଷ ଶର ମାରି ସମର କରନ୍ତି
କୋଟି କୋଟି ମୁଣ୍ଡ ଛିଡ଼ି କବନ୍ଧ ନାଚନ୍ତି ।
ଦ୍ରୋଣଶରେ କାଶୀଶ୍ୱର ହେଲେ ସୈନ୍ୟହତ
ତିନିଲକ୍ଷ ଗଜ ଯୋଦ୍ଧା ଘଡ଼ିକେ ନିପାତ ।
ହାବୋଡ଼ା ଶରରେ କାଶୀ ପଡ଼ିଲା ଗଜରୁ
ମହାକ୍ଷତ୍ରୀ ଅଟଇ ସେ ଆନ ଯୋଦ୍ଧାଠାରୁ ।
ଉତ୍ତାନଶାୟୀ ହୋଇଣ ପଡ଼ିଲାକ କ୍ଷିତି
କୁନ୍ତରେ ମାଇଲେ ପୁଣି ଦ୍ରୋଣ ସେନାପତି ।
ହୃଦୟରେ ବାଜି କୁନ୍ତ ପିଠି ଗଲା ଫୁଟି
ପୁଣି କର୍ଣ୍ଣ କଟାରିରେ ଶିର ଦେଲେ କାଟି ।
ପାଞ୍ଚ ଅଇବ୍ରତ ଯୋଦ୍ଧାମାନଙ୍କର ତୁଲେ
ଦ୍ରୋଣ ବିଘାତରେ କାଶୀଶ୍ୱର ପଡ଼ି ମଲେ ।
ଭାଟଦେଶର ନୃପତି ନାମ ମନସିଜ
ନବସସ୍ର ରାଜା ତୁଲେ ଗଲା ଯମରାଜ୍ୟ ।
କୌଶିକ ଦେଶର ରାଜା ବୀର ଜୁଳୁପାକ୍ଷ
ତିନିସସ୍ର ରାଜା ତୁଲେ ଦ୍ରୋଣ କାଟେ ବକ୍ଷ ।
କନାଉଜ ଦେଶ ରାଜା ନାମ ସତ୍ୟମନୁ
ତିରଣ ପରାୟେ କାଟେ ଦ୍ରୋଣ ତାର ତନୁ ।
ବିକ୍ଷତ୍ର ଦେଶର ରାଜା ଅଟେ ବିଦ୍ୟୁନ୍ମାଳୀ
ତିନିଶତ ପାରିଦଣ୍ଡ ସଙ୍ଗେ ମଲା ବଳୀ ।
ଯେଉଁରୂପେ ପର୍ଶୁରାମ ହୋଇ ଅବତାର
ପରଶୁ ଘାତେ ନକ୍ଷତ୍ରୀ କରିଲେ ସଂସାର ।
ଅବା ପକ୍ଷୀଯୁଦ୍ଧେ ଖେଦେ ଯେହ୍ନେ ପକ୍ଷୀସେଣା
ଭାରତ ଯୁଦ୍ଧରେ ଦ୍ରୋଣ ତେହ୍ନେ ଜଗଜ୍ଜିଣା ।
ଯାନ ବାହନ ଆଦି ଯେ ସଙ୍ଗେ କିଛି ନାହିଁ
ଧାମନ୍ତି ସେ ମହାଯତି ପାଦଗତି ହୋଇ ।
ତ୍ରିକଚ୍ଛ ବସନ ପିନ୍ଧି ସିଂହ ବକ୍ରଠାଣି
ବ୍ରାହ୍ମଣ କି ଶୂଦ୍ର ହେଉ ଅବିଚାରେ ହାଣି ।

ନବସସ୍ର ରାଜା ପାଞ୍ଚସସ୍ର ପାରିଦଣ୍ଡ
ତିନିଘଡ଼ି ମଧ୍ୟେ ଦ୍ରୋଣ କାଟିଦେଲେ ମୁଣ୍ଡ ।
ସୈନ୍ୟ ପଡ଼ିବାର ଦେଖି କୋପରେ ମାରୁତି
ଦ୍ରୋଣଙ୍କ ଛାମୁରେ ଯାଇ ମିଳିଲା ତଡ଼ତି ।
ରଥେକ ଆରୋହି ଯୁଦ୍ଧେ ବାହାରେ ନକୁଳ
କର୍ଣ୍ଣ ସଙ୍ଗେ ଯୁଦ୍ଧ କରେ ହୋଇଣ ପ୍ରବଳ ।
ତା ଦେଖି ରାଧାନନ୍ଦନ ବୁଲାଇ ପରିଘେ
ନକୁଳ ରଥରେ ନେଇ ପିଟିଲାକ ବେଗେ ।
କର୍ଣ୍ଣ ବିଘାତେ ନକୁଳ ରଥ ଯାଏ ଭାଜି
କୁନ୍ତ ବୁଲାଇଣ ତହୁଁ ଧାଏଁ ଗଳଗାଜି ।
ସେ କୁନ୍ତ ନେଇ ପିଟିଲା କର୍ଣ୍ଣବୀର ରଥେ
ପ୍ରହାରକେ ଫୁଟେ ରଥ ସାରଥି ସହିତେ ।
ପାଦଗତି ହୋଇ ତହୁଁ ଧାମେ ସୂର୍ଯ୍ୟବଳା
ଯେଉଁରୂପେ ମତ୍ତଗଜ ଦଉଡ଼େ ମୁକୁଳା ।
କୁନ୍ତ ବୁଲାଇ ନକୁଳ ପୁଣି ପ୍ରହାରଇ
ଆରେ ରହ ବୋଲି କର୍ଣ୍ଣ କୁନ୍ତକୁ ଧରଇ ।
କୁନ୍ତ ଧରନ୍ତେ ନକୁଳ ଶୂନ୍ୟହସ୍ତ ହେଲେ
କାଳଚକ୍ର ପ୍ରାୟେ କର୍ଣ୍ଣ ନେତ୍ର ବୁଲାଇଲେ ।
ବାମକରରେ ନକୁଳ ଡାହାଣେ ଖଡ଼ଗ
ଦନ୍ତେ ଅଧର ଚାପିଣ ହୋଇ ଅତିରାଗ ।
ବୋଇଲା ରେ ରେ ପାଣ୍ଡବା ପକାଇବି ହାଣି
ପଡ଼ିଛୁ ମୋ ହାତେ ଆଉ ନ ବର୍ତ୍ତିବୁ ପୁଣି ।
ଆଜି ନିଷ୍ଟୟ ହୋଇଲୁ ତୁହି ନିରିମାଖି
ତ୍ରୈଲୋକ୍ୟ ମଧରେ ତୋତେ କେ ପାରିବ ରଖି
ଏମନ୍ତ ସମୟେ ଆସି ଦୁର୍ଦ୍ଧକ୍ଷ କୁମର
ଲୁହାଗଦା ଘେନି ମିଳେ କର୍ଣ୍ଣର ପଛର ।
ଗଦା ବୁଲାଇଣ ବେଗେ ଗାନ୍ଧାର ଦୁଲାଳ
କର୍ଣ୍ଣ ଉପରେ ପ୍ରହାର କରିଲା ପ୍ରବଳ ।
ରାଧାର ନନ୍ଦନ ତହୁଁ ପଡ଼େ ମୂର୍ଚ୍ଛାହୋଇ
ମାଦ୍ରୀର ନନ୍ଦନ ଦେଖି ଗଲାକ ପଳାଇ ।
କର୍ଣ୍ଣ ଅସାଷ୍ଟମ ଦେଖି ବୀର ରାୟ ଶଲ୍ୟ
ଧାତିକାରେ ଉଭା ହେଲେ ରଣେ ମହାମଲ୍ଲ ।
ନକୁଳ ଦୁର୍ଦ୍ଧକ୍ଷ ଦୁହେଁ କର୍ଣ୍ଣେ ଥିଲେ ଘୋଟି
ଶଲ୍ୟବୀରଙ୍କୁ ଦେଖିଣ ରହିଲେ ପାଲଟି ।
ଶଲ୍ୟଙ୍କ ସଙ୍ଗେ ଦୁର୍ଦ୍ଧକ୍ଷ କରିଲା ସମର
ମୋହ ଛାଡ଼ିଣ ଉଠିଲା କର୍ଣ୍ଣ ମହାବୀର ।

ବେଗେ ଆରୋହିଲା ପୁଣି ମହା ମତ୍ତହସ୍ତୀ
ଅସ୍ତ୍ରକୁ ଧରିଣ ସେହୁ ଆମଞ୍ଚ କରନ୍ତି ।
ଧନୁରେ ଶର ପୂରାଇ ମହାବୀର କର୍ଣ୍ଣ
ଆସନ୍ତେ ଭେଟିଲା ତାକୁ ବୀର ଧୃଷ୍ଟଦ୍ୟୁମ୍ନ ।
କର୍ଣ୍ଣ ବୋଇଲାକ ଧୃଷ୍ଟଦ୍ୟୁମ୍ନ ମୁଖ ଚାହିଁ
ତୁହି ଯୁଦ୍ଧ କରୁଛୁରେ ତୋର ପିତା କାହିଁ ।
ଶୁଣି ଧୃଷ୍ଟଦ୍ୟୁମ୍ନ ବୋଲେ ଶୁଣରେ ରାଧେୟ
ଯୁଧିଷ୍ଠିଙ୍କ ସଙ୍ଗେ ଛନ୍ତି ପାଞ୍ଚାଳର ରାୟ ।
ଧୃଷ୍ଟଦ୍ୟୁମ୍ନର ବଚନେ ରାଧେୟ ବୋଇଲା
ଶିରଚ୍ଛେଦ ରାତ୍ର ସାତଘଡ଼ିଠାରେ ହେଲା ।
ଭରଦ୍ୱାଜଙ୍କ ନନ୍ଦନ ଦ୍ରୋଣ ମହାରଥୀ
ତୋ ପିତାକୁ ସମରରେ କଲେ ବିନଶ୍ୟତି ।
ତା ଶୁଣି ଧୃଷ୍ଟଦ୍ୟୁମନ ଶର ବେଗେ ବିନ୍ଧି
କର୍ଣ୍ଣର ଗଜ ବାହନ ପକାଇଲା ଛେଦି ।
ବିରଥ ହୋଇଲା ଯହୁଁ ସେନାପତି କର୍ଣ୍ଣ
ଆଡ଼ ହୋଇଗଲା ତାହା ଦେଖି ଧୃଷ୍ଟଦ୍ୟୁମ୍ନ ।
ସମରେ ତିନିପ୍ରହର ରାତ୍ର ହେଲା ଗତ
ଯୁକତେ ମକର ମାସ ଶୀତେ ଅଶକତ ।
କର ଚରଣ ଯୋଡ଼ିଣ ହେଲେ ଥରହର
ଅସ୍ତ୍ର ଧରି ନ ପାରନ୍ତି ତେଣୁ ଯେ ଯାହାର ।
ସୈନ୍ୟଙ୍କ ଆକୁଳ ଦେଖି ବୀର ଫାଲଗୁନି
କୋପରେ ବିନ୍ଧିଲା ଏକ ଅଗ୍ନିବାଣ ଘେନି ।
ପ୍ରଜ୍ୱଳିତ ହୋଇ ଅଗ୍ନି ଉଠେ ଦାବାନଳ
ସୈନ୍ୟଙ୍କୁ ଛାଡ଼ିଲା ଶୀତ ତେଜିଲେ ବିକଳ ।
ଅଗ୍ନି ତାପରେ ସାଷ୍ଟାମ ହେଲେ ସର୍ବଯୋଧୀ
ଧନୁ ଧରି ଶରକୁ ସେ ପାରିଲେକ ବିନ୍ଧି ।
ସେହ୍ନାକାଟି ରଥୀମାନେ ରଥ ତେଜ୍ୟାକଲେ
ପଦାତି ଅଗ୍ନି ଆକର୍ଷି ଉଠି ନ ଇଚ୍ଛିଲେ ।
ଉଭୟ ଥାଟ ମଧରେ ଶୁଭେ ଧନ୍ୟ ଧନ୍ୟ
ବୋଇଲେ ଦୀର୍ଘାୟୁ ହୋଇ ବର୍ତ୍ତ ହେ ଅର୍ଜ୍ଜୁନ ।
କଷ୍ଟୀଲୋକଙ୍କର ଜାଣି ପାରିଲୁ ତୁ ମନ
ଶତ୍ରୁ ମାରି ପଞ୍ଚରାଜ୍ୟେ ହୁଅ ତୁ ରାଜନ ।
ଜନଙ୍କ ମୁଖରୁ ସାଧୁ ବଚନକୁ ଶୁଣି
ପାଞ୍ଚଜନ୍ୟ ଶଙ୍ଖନାଦ କଲେ ଚକ୍ରପାଣି ।
ବୋଇଲେ ଧନ୍ୟ ଜୀବନ ତୋରରେ ଅର୍ଜ୍ଜୁନ
ଶତ୍ରୁମୁଖେ ଧନ୍ୟବାଦ ଶୁଣିଲା ମୋ କାନ ।

ଅଗ୍ନିର ତାପ ଲାଗନ୍ତେ ନିଦ୍ରା ଆସକତେ
ଅସାଷ୍ଟମ ହୋଇ ସର୍ବେ ପଡ଼ିଲେ ସମସ୍ତେ ।
ପିତା ହତ ଶୁଣି ମନେ ହୋଇ ଖେଦାନ୍ୱିତ
ଦ୍ରୋଣେ ଭେଟିଲେ ଦ୍ରୁପଦ ରାଜା ବେନିସୁତ
ଧୃଷ୍ଟଦ୍ୟୁମ୍ନ ବୋଲେ ଦ୍ରୋଣ କେଉଁ କର୍ମ କଲୁ
ଧର୍ମ କେମନ୍ତ ଗଛିବ ମିତ୍ରଦ୍ରୋହୀ ହେଲୁ ।
ଅନେକ ଥର ସମରେ ତୋତେ ମୁଁ ଛାଡ଼ିଲି
ପିତାର ମଇତ୍ର ଯେଣୁ ମାନ୍ୟସ୍ଥଳ ବୋଲି ।
ଏବେ ମୁଁ ଶୁଣିଲି ମୋତେ କହିଲାକ କର୍ଣ୍ଣ
ଆଜ ମୋର ହାତେ ତୋର ହରିଲା ଜୀବନ ।
ସମରେ ନ ନିଏ ଯେବେ ତୋହର ପ୍ରାଣକୁ
ବାହୁଡ଼ି କି ଯିବି ମୁହିଁ ପାଞ୍ଚାଳ ଦେଶକୁ ।
ଦ୍ରୋଣ ଧୃଷ୍ଟଦ୍ୟୁମ୍ନ ରଣେ ପଡ଼ିଲାକ ରୋଳ
ଶର ବିନ୍ଧାବିନ୍ଧି ତହିଁ ହେଲେ ଦୁଇକୁଳ ।
ରଥୀ ଯୋଦ୍ଧାମାନେ ରଥେ ପଡ଼ି ନିଦ୍ରାଗଲେ
ସାରଥିମାନେ ଘୋଟକ କୁଣ୍ଢାଇ ଶୋଇଲେ ।
ଗଜାରୋହୀ ଗଜକୁମ୍ଭେ ପଡ଼ି ହେଲେ ଘାରି
ପଦାତିମାନେ ପଡ଼ିଲେ ଶରକୁ ଆବୋରି ।
ଅଶ୍ୱପୃଷ୍ଠେ ନିଦ୍ରା ଗଲେ ଅଶ୍ୱାରୋହୀମାନେ
ଯାହାକୁ ନିଦ୍ରା ଘାରିଲା ଶୋଇଲେ ସେମାନେ
ଉଜାଣି ଦେଶର ରାଜା ନାମ ସତ୍ୟବର
ତାହାକୁ କରିଲା ବଧ ଶଲ୍ୟ ମହାବୀର ।
ନୈର୍ଋତ ଦେଶର ନୃପ ତାର ନାମ ଶିବ
ଶକୁନି ମନ୍ତ୍ରୀ ତାହାକୁ ଦେଲା ପରାଭବ ।
ଉଡ଼ଙ୍ଗ ଦେଶର ଅଟେ ଭୀମସେନ ରାଜ
ତାହାକୁ କରିଲା ବଧ ବିରାଟ ଆତ୍ମଜ ।
ବଙ୍ଗଦେଶର ନୃପତି ଶ୍ରୀକୃଷ୍ଣ କେଶରୀ
ତାକୁ ବଧିଲା ଶିଖଣ୍ଡୀ ନାମେ ଦଣ୍ଡଧାରୀ ।
ତିହୁଡ଼ି ଦେଶର ରାଜା ଅନଙ୍ଗଲସେନ
ତାହାକୁ କରିଲା ବଧ ରାଧାର ନନ୍ଦନ ।
ବିରଥ ଦେଶର ରାଜା ସୁରଥ ନୃପତି
ତାହାକୁ ବଧ କରିଲା ସହଦେବ ମନ୍ତ୍ରୀ ।
କାଉଁରୀ ଦେଶର ରାଜା ଅଟେ କାମପାଳ
ତାହାକୁ କରିଲା ବଧ କୁମାର ନକୁଳ ।
ବଙ୍ଗଳା ଦେଶର ରାଜା ଭୀମକ ନୃପତି
ତାହାକୁ ବଧ କରିଲା ଦୁଃଶାସନ କ୍ଷତ୍ରୀ ।

କୁଞ୍ଜଗଳ ଦେଶ ରାଜା ନାମ ଚନ୍ଦ୍ରାଜିତ
ଉତ୍ତର କୁମର ଦ୍ୱାରା ସେହୁ ହେଲା ହତ ।
ଖଡ଼ଗପୁରର ରାଜା ଅଙ୍ଗନାନୁପମ
ସେ ପଡ଼େ ଶିଖଣ୍ଡୀ ସଙ୍ଗେ କରିଣ ସଂଗ୍ରାମ ।
ଇନ୍ଦ୍ରଧ୍ୱଜ ନାମେ ରାଜା ରାଜ୍ୟ ତା ସୌରାଷ୍ଟ୍ର
ଭୀମସେନ ମୁଖେ ପଡ଼ି ମଲେ ତାର ଥାଟ ।
ନନ୍ଦସେନ ରାଜା ବୋଲି ଏକ ନୃପରାୟ
ଉତ୍ତର କୁମର ମୁଖେ ପଡ଼ି ହେଲା କ୍ଷୟ ।
ଯମୁନାପୁରର ରାଜା ନାମ ସଉଦାସ
ଶିଖଣ୍ଡୀ ସମରେ ପଡ଼ି ହେଲା ସେ ବିନାଶ ।
ପାଣିମଣ୍ଡଳର ରାଜା ଅଟେ ରଣଦକ୍ଷ
ତାହାକୁ କରିଲା ବଧ କୁମାର ଦୁର୍ଦ୍ଧକ୍ଷ ।
କୁଶମଣ୍ଡଳର ରାଜା ସେହୁ ଜମ୍ବୁକେଶୀ
ନକୁଳ ହସ୍ତରେ ସେହୁ ହେଲା ପ୍ରେତବାସୀ ।
କାମିନୀମଣ୍ଡଳ ରାଜା ବୀର ଚକ୍ରବର୍ତ୍ତୀ
ଅର୍ଜ୍ଜୁନ ସମରେ ସେହୁ ହେଲା ବିନଶ୍ୟତି ।
ଦୁରାନ୍ତକ ଦେଶ ରାଜା ନାମ ଦୁଷ୍ଟାନ୍ତକ
ତାହାକୁ କରିଲା ବଧ ବୀର ଭୀମସେନ ।
ଡାହାଳ ଦେଶର ରାଜା ଅଟେ ଚନ୍ଦ୍ରମାଳି
ସାତ୍ୟକିର ଶରାଘାତେ ପଡ଼ିଲାକ ଢଳି ।
ପ୍ରତାର ଦେଶର ରାଜା ନାମ ଚକ୍ରବର୍ତ୍ତୀ
ଦୁର୍ଜ୍ଜୟର ଶରାଘାତେ ପଡ଼େ ସେ ନୃପତି ।
ଯମଅନଳ ଦେଶର ରାଜା ବଙ୍ଗସେନ
ତାହାକୁ କରିଲା ବଧ ବୀର ଧୃଷ୍ଟଦ୍ୟୁମ୍ନ ।
ପାରଙ୍ଗ ଦେଶର ରାଜା ନାମ ବୀରଭଙ୍ଗ
ସମରରେ ବୃକୋଦର ବିଦାରେ ତା ଅଙ୍ଗ ।
ଜେନାବଳୀ ପାଟଣାର ବଜ୍ରସିଂହ ରାୟ
ସମରେ ନାଶିଲା ତାକୁ ବୀର ଧନଞ୍ଜୟ ।
ଇନ୍ଦ୍ର ମଣ୍ଡଳର ରାଜା ଅଟେ ବ୍ରହ୍ମଜାତି
ତାକୁ ବଧିଲା ସାତ୍ୟକି ଯେହୁ ମହାକ୍ଷତ୍ରୀ ।
ବିଜୟା ଦେଶର ରାଜା ନାମ ବିତପନ
ସମରେ ମାଇଲା ତାକୁ ବୀର ଦୁଃଶାସନ ।
କଞ୍ଚୁକ ଦେଶର ରାଜା ଯେହୁ ବଳରାମ
ତାହାକୁ ଗଦା ଆଘାତେ ନାଶକଲା ଭୀମ ।
ବ୍ରହ୍ମଦେଶର ନୃପତି ସହଦେବ ରାୟେ
ସେ ରାଜା ନାଶ ହୋଇଲା ଶଲ୍ୟଙ୍କର ଘାଏ

ଚେଦି ଦେଶର ନୃପତି ନାମ ମହାବଳୀ
ସମରରେ ସହଦେବ ତାକୁ କଲେ ଧୂଳି ।
ଶାକଲ୍ୟ ଦେଶର ରାଜା ଯେହୁ ହରିହର
ସେ ରାଜା ବଧ ହୋଇଲା ଦୁରାନ୍ତକ କର ।
ଇଚ୍ଛାବତୀ ଦେଶ ରାଜା ନାମ ଇଚ୍ଛୁମାଳ
ସହଦେବ ଶରେ ସେହୁ ଗଲା ଯମଆଳ ।
ଶବରୀ ଦେଶର ରାଜା ଶୌରୀ ନାରାୟଣ
ତାହାକୁ କରିଲା ନାଶ ବୀର ଦୁଃଶାସନ ।
ସଞ୍ଜୟ କହିଲା ଶୁଣ ରାୟ ଧୃତରାଷ୍ଟ୍ର
ରାତ୍ରଯୁଦ୍ଧରେ ପଡ଼ିଲେ ତୋର ଏତେ ଥାଟ ।
ଶୁଣ ବୈବସ୍ୱତ ମନୁ ବନ୍ଦନ୍ତି ଅଗସ୍ତି
ରଣ କରୁ କରୁ ଆସି ହୋଇଲା ପାହାନ୍ତି ।
ଶୋଇ ପଡ଼ିବାରୁ ସର୍ବେ ହୋଇଲେ ନିସ୍ତବ୍ଧ
ଅର୍ଜ୍ଜୁନ ବୋଇଲେ ତହୁଁ ରଣକର ବନ୍ଦ ।
ଐଶାନ୍ୟ କୋଣେ ଦିଶିଲା ଆସି ଶୁକ୍ରତାରା
ନବ ଶୋଭାରେ ଶୋଭିତ ହୋଇଲାକ ଧରା
ଉଷା ଆଗମନ ହେବା ତାମ୍ରଚୂଡ଼ ଜାଣି
ରଟିଲା ଆନନ୍ଦ ହୋଇ ଭୈରବ ରାଗିଣୀ ।
କାକ କୋକିଳ ଡାକିଲେ ତାଙ୍କ ଡାକ ଦେଖି
କାକଳି କରିଲେ କ୍ରମେ ଆଉ ଆଉ ପକ୍ଷୀ ।
ଦେବାଳୟରେ ହୋଇଲା ମଙ୍ଗଳ ଆଳତି
ଘଣ୍ଟା ଘଣ୍ଟ ଶଙ୍ଖନାଦେ କମ୍ପିଲାକ କ୍ଷିତି ।
ପ୍ରଭାତ ହୁଅନ୍ତେ ବହେ ଶୀତଳ ପବନ
ପୂର୍ବ ଆକାଶ ଦିଶିଲା ଲୋହିତ ବରନ ।
ସୂର୍ଯ୍ୟଦେବ ଦିଶିଲେକ ରଙ୍ଗ ଚକପରି
ମାନବଗଣ ଉଠିଲେ ଶଯ୍ୟା ପରିହରି ।
ଅଶ୍ୱତ୍ଥାମା ହତ ବୋଲି ଶୁଭିଲା ଶବଦେ
ଅନୁସରି ଦ୍ରୋଣଗୁରୁ ପୁତ୍ର ଖୋଜେ ହାଦେ ।
ଲୋଡ଼ି ଲୋଡ଼ି ଖୋଜନ୍ତି ସେ ଥାଟଯାକେ ବୁଲି
ବୋଲନ୍ତି ଅର୍ଦ୍ଧରାତ୍ରରୁ ପୁତ୍ର ନ ଦେଖିଲି ।
ସେ ପୁତ୍ର ବଧ କରିବା କିଏ ଅଛି କ୍ଷମ
ଚକ୍ରକୂଟେ ମାଇଲେ ବା ଶ୍ରୀପୁରୁଷୋତ୍ତମ ।
ତହିଁରେ ଭ୍ରାନ୍ତି ମୋହର ଅଛଇ ଅଳପ
ତହୁଁ ଶବ ଖୋଜିବାକୁ କରିଲେ ସଂକଳ୍ପ ।
ଖୋଜି ନ ପାଇଲେ ପୁତ୍ର ବୀର ଚୂଡ଼ାମଣି
ଅଶ୍ୱତ୍ଥାମା ହତ ବୋଲି ପୁଣି ଶୁଭେ ବାଣୀ ।

ତହୁଁ କର୍ଣ୍ଣ ଅଗ୍ରତରେ ପଚାରିଲେ ଗୁରୁ
ଅଶ୍ୱଥାମା କେଣେ ଗଲା ତୋହର ସଙ୍ଗରୁ ।
କର୍ଣ୍ଣ ବୋଇଲେ ଗୁରୁ ହେ ନ କହିବି ମିଥ୍ୟା
ରାତ୍ର ନବ ଘଡ଼ିରୁ ସେ ହୋଇଲାଣି ହତ୍ୟା ।
ସମର ରହିବ ବୋଲି ନ କହୁ ତୋ ଆଗେ
ରଥ ଭଗ୍ନବେଳେ ସେହୁ ଥିଲା ମୋର ସଙ୍ଗେ
ପୁଣି ପଚାରିଲେ ଶଲ୍ୟ ନିକଟକୁ ଯାଇ
ଅଶ୍ୱଥାମା ହତ କଥା ସତ୍ୟ କି ଅଟଇ ।
ଦ୍ରୋଣ ବଚନେ କହନ୍ତି ରାୟଗୁରୁ ଶଲ୍ୟ
ପୁତ୍ରର ବାରତା ତୋର କାହିଁ ଅଛି ଭଲ ।
ସବୁଙ୍କୁ ପୁଚ୍ଛନ୍ତି ଦ୍ରୋଣ କିଏ ଅଛ ଦେଖି
ଏକମାତ୍ର ପୁତ୍ର ମୋର ହୋଇଲା ନିର୍ମାକ୍ଷୀ ।
ଦ୍ରୋଣ ପଚାରିଲେ ପୁଣି ଶକୁନି ମନ୍ତ୍ରୀକି
ଅଶ୍ୱଥାମାକୁ ଦେଖିଛ ଗଲା ସେ କେଣିକି ।
ଦ୍ରୋଣ ଆଗରେ ନିରାଶ କରି କହେ ଖଳ
ଅଶ୍ୱଥାମା ମଲା ରାତି ନବଘଡ଼ି ବେଳ ।
ଅଶ୍ୱଥାମା ତୁ କାହୁଁ ପାଇବୁ ଆବର
ବାପ ଜୀଇଁ ଥାଉଁ ଥାଉଁ ମରିଲା କୁମର ।
କୁଳକ୍ଷୟ ମନ୍ତ୍ରୀ କହେ ଝିଙ୍ଗାସ କରିଣ
ଏମନ୍ତ ପୁତ୍ର ମରିଲା ତୁ ଅଛୁ ବଞ୍ଚିଣ ।
ସମର ରହିବା ଦେଖି କୃଷ୍ଣ ଅରଜୁନ
ଯୁଧିଷ୍ଠିଙ୍କ ନିକଟକୁ କରିଣ ଗମନ ।
ଯୁଧିଷ୍ଠିଦେବ ପୁଚ୍ଛିଲେ ଶୁଣ ସହଦେବ
କେତେ ଆମ୍ଭର ପଡ଼ିଲେ ହୋଇ ମୃତ୍ୟୁଶବ ।
ଯୁଧିଷ୍ଠି ଅଗ୍ରତେ ସହଦେବ ଯା କହିଲା
ଦ୍ରୋଣ ଗୁରୁଙ୍କ ସମରେ ଦ୍ରୁପଦ ମରିଲା ।
କର୍ଣ୍ଣବୀର ମାଇଲାକ ମଘଦେଶ ଥାଟ
ପାଞ୍ଚ ଅକ୍ଷୌହିଣୀ ତୁଲେ ନୃପତି ବିରାଟ ।
ରଥ ଗଜ ଯୋଦ୍ଧା ବୋଲି କେ କରିବ ଲେଖା
ଅଗାଧ ସମୁଦ୍ରେ କାହିଁ କାଠ ହେବ ଯୋଖା ।
ରାତ୍ରର ଯୁଦ୍ଧେ ପଡ଼ିଲେ ପନ୍ଦର ମର୍ଭୁତ
ଦୁଇ ସହସ୍ର ରଥୀ ଯେ ତିନିସସ୍ର ରଥ ।
ଗଜ ଯୋଦ୍ଧାଏ ପଡ଼ିଲେ ତେର ଯେ ମର୍ଭୁତ
ଅଶ୍ୱ ଯେ ଏଗାର କୋଟି ହୋଇଲେ ନିପାତ ।
ଚାରିବୃନ୍ଦ ପଦାତିକ ପଡ଼ିଲେ ଆବର
ଏତେ ସୈନ୍ୟ ଗଣିବାକୁ ଶକ୍ତି ହେବ କାର ।

ପୁଣି ପୁଚ୍ଛିଲେ ମନ୍ତ୍ରୀକି ଧର୍ମ ମହୀପାଳ
ଦୁର୍ଯ୍ୟୋଧନର ପଡ଼ିଲେ କେତେ କେତେ ବଳ
ମନ୍ତ୍ରୀ ବୋଲେ ଦୁର୍ଯ୍ୟୋଧନ ଶ୍ୱଶୁର ଭୁମନ୍ୟୁ
ଶିଖଣ୍ଡୀ ରଣେ ଛେଦନ ହେଲା ତାର ତନୁ ।
ରାଜା ମିତ୍ର ଅଳାମ୍ବୁଷ ତହିଁ ନାଶଗଲା
ତା ନନ୍ଦନ ଅଳାୟୁଧ ସେ ମଧ ପଡ଼ିଲା ।
ମାଳବ ଦେଶର ରାଜା ନାମ କୃତବର୍ମା
ତାହା ସହିତରେ ନାଶଗଲା ଅଶ୍ୱଥାମା ।
ଯୁଧିଷ୍ଠି ପୁଚ୍ଛିଲେ ପୁଣି କହ ସହଦେବ
ଅଶ୍ୱଥାମାକୁ କିଏ ସେ କଲା ପରାଭବ ।
ସହଦେବ କହିଲାକ ବୀର ବୃକୋଦର
ରଥଦଣ୍ଡ ଧରି ଫିଙ୍ଗିଦେଲା ବହୁଦୂର ।
ସରସ୍ୱତୀ ନଦୀତୀରେ ବାରୁଣାର ବନ
ଭାରତ ଭୂଇଁକି ଅଟେ ବତ୍ରିଶ ଯୋଜନ ।
ରଥ ସହିତରେ ଯାଇ ପଡ଼େ ଅଶ୍ୱଥାମା
ଏତେଦୂରେ ପଡ଼ି ମଧ ନ ମଲା ମହାତ୍ମା ।
ଗୋବିନ୍ଦ ବୋଇଲେ ଦେବ ଶୁଣ ଧର୍ମସୁତ
ଦ୍ରୋଣ ତୁମ୍ଭଙ୍କୁ ପଚାରି ଆସିବେଟି ଏଥ ।
ଅଶ୍ୱଥାମା ହତ ବୋଲି କହିଲେକ ବାଣୀ
ଦ୍ରୋଣ ପ୍ରାଣତ୍ୟାଗ ହେବ ସେହିକଥା ଶୁଣି ।
ଶୁଣସି କେଶବ ଆହେ ବଦନ୍ତି ଯୁଧିଷ୍ଠି
କେମନ୍ତେ କହିବି ମିଥ୍ୟା କରିନାହିଁ ଦୃଷ୍ଟି ।
ଦ୍ରୋଣ ପୁଚ୍ଛିଲେ କି ଧର୍ମ ନ କରିବ ରକ୍ଷା
ଗୁରୁ ଛାମୁରେ କେମନ୍ତେ କହିବାକୁ ମିଥ୍ୟା ।
ଶିବ ଦେବତାଙ୍କଠାରେ ଯେ ମିଥ୍ୟା କହଇ
ଗଳିତ କୁଷ୍ଠବ୍ୟାଧି ତା ଶରୀରେ ହୁଅଇ ।
ମାତା ପିତାଙ୍କ ଛାମୁରେ ଯେ କହିବ ମିଥ୍ୟା
ନିଶ୍ଚୟ ସେ ଜନଙ୍କର ବଂଶ ନୁହେଁ ରକ୍ଷା ।
ଗୁରୁଙ୍କ ଛାମୁରେ ମିଥ୍ୟା କହେ ଯେଉଁ ଜନ
ଇହଲୋକେ କଷ୍ଟ ମଲେ ନରକେ ପତନ ।
ଯୁଧିଷ୍ଠି ଦେବଙ୍କ ଏହିପରି ବାକ୍ୟ ଶୁଣି
ପ୍ରଣତି ହୋଇ କହିଲେ ଦେବ ଚକ୍ରପାଣି ।
ଉପାୟ ପ୍ରକାରେ ଯେବେ ଶତ୍ରୁକରି ବଧ
ଧର୍ମ ବର୍ଦ୍ଧିତ ହୁଅଇ ସର୍ବକାର୍ଯ୍ୟ ସିଦ୍ଧ ।
ନାରାୟଣଙ୍କ ବଚନେ କହନ୍ତି କୌନ୍ତେୟ
ମୋର ବଳେ ମିଥ୍ୟା କହି ନୁହଇ ନିଶ୍ଚୟ ।

ମୋତେ ପଛକେ ପ୍ରାପତ ନୋହୁ ରାଜ୍ୟଭାର
ମିଥ୍ୟା ନ କହିବି ମୁହିଁ ଦ୍ରୋଣଙ୍କ ଆଗର ।
ଶ୍ରୀକୃଷ୍ଣ ବୋଇଲେ ତହୁଁ ଶୁଣ ଧର୍ମରାୟ
ଅଶ୍ୱତ୍ଥାମା ହସ୍ତୀ ହତ ଶୁଣିଛ ନିଶ୍ଚୟ ।
ନର କି ଗୁଞ୍ଜର ଅଶ୍ୱତ୍ଥାମାର ମରଣ
କରିବ ଧୀରେ କୁଞ୍ଜର ଶବ୍ଦ ଉଚ୍ଚାରଣ ।
ଅନେକ ବାରେ ତିଆରି କହିଲେ ଶ୍ରୀହରି
ଯୁଧିଷ୍ଠି ଶୁଣି ସମସ୍ୟା ନ ଦେଲେ ତାହାରି ।
ଅତି ଶୋକରେ ଆକୁଳ ହୋଇ ଦ୍ରୋଣଗୁରୁ
ଦୁର୍ଯ୍ୟୋଧନକୁ ବୋଇଲେ ଶୋକ କରୁ କରୁ
ବାବୁ କୁଳମଣ୍ଡନ ତୁ ମାନଚକ୍ରବର୍ତ୍ତୀ
ଅଶ୍ୱତ୍ଥାମାର ବିଷୟେ ଜାଣ କେଉଁ ରୀତି ।
ମାନଗୋବିନ୍ଦ ବୋଇଲା ଥିଲି ରଣ ମଧ୍ୟେ
ନିଶ୍ଚେ ଅଶ୍ୱତ୍ଥାମା ତୋର ନାଶ ହେଲା ହାଦେ
ଶୁଣି ଧନୁତୂଣ ଫିଙ୍ଗି ଖଡ୍ଗ ଏକ ଘେନି
ଅରୁଣ ଉଲ୍ଲୋଳ ପ୍ରାୟେ ବୁଲେ ଚକ୍ଷୁ ବେନି ।
ଯୁଧିଷ୍ଠିରଙ୍କ ଛାମୁରେ ପ୍ରବେଶିଲେ ଦ୍ରୋଣ
ପ୍ରଣାମ ହେଲେ ପାଣ୍ଡବ ବୀର ପାଞ୍ଚଜଣ ।
ଦ୍ରୋଣଗୁରୁ ବୋଇଲେକ ବିଦ୍ୟା ହେଉ ପ୍ରାପ୍ତ
ମୋହର ଆୟୁଷ ଘେନି ବର୍ତ୍ତ ପାଞ୍ଚଭ୍ରାତ ।
ପଞ୍ଚ କଟକରେ ହୁଅ ତୁମ୍ଭେ ନୃପରାଣ
ଏମନ୍ତ ପ୍ରକାରେ ଦ୍ରୋଣ କରିଣ କଲ୍ୟାଣ ।
ବୋଇଲେ ତୁ ଯୁଦ୍ଧ କରୁଥିଲୁରେ ଯୁଧିଷ୍ଠି
ମୋର ଅଶ୍ୱତ୍ଥାମାକୁ କି ହୋଇଲା ଅରିଷ୍ଟି ।
ଏ ମହାସମରେ ତାକୁ କେ କଲା ସଂହାର
ଦେଖିଥିଲେ ଶୁଣିଥିଲେ କହ ମୋ ଆଗର ।
ଯୁଧିଷ୍ଠି ବୋଇଲେ ତୁମ୍ଭେ ଶୁଣ ଗୁରୁପିତା
କହି ନ ପାରିବି ମୁହିଁ ତାର ତଥ୍ୟ କଥା ।
ନର ବା କୁଞ୍ଜର ହେଉ ଅଶ୍ୱତ୍ଥାମା ହତ
ଇତି କୁଞ୍ଜର ମରିବା ଅଟଇ ପ୍ରକୃତ ।
ଏହି କଥାକୁ କହିଲେ କରି ଅତି ଧୀର
ଏକାଳେ ଫୁଙ୍କିଲେ ଶଙ୍ଖ ଦେବ ଚକ୍ରଧର ।
ଯୁଧିଷ୍ଠିରଙ୍କ ବଚନ ଶୁଣି ଗୁରୁଦ୍ରୋଣ
ମୂର୍ଚ୍ଛାଗତ ହୋଇ ହସ୍ତୁ ଛାଡ଼ିଲେ କୃପାଣ ।
ଧୃଷ୍ଟଦ୍ୟୁମ୍ନ ଯୁଧିଷ୍ଠିଙ୍କ ଥିଲା ପଛକତି
ନୟନ ଠାରିଣ ଦେଲେ ତାକୁ ଶିରୀପତି ।
ତୋର ପିତାଶତ୍ରୁ ଅଟେ ହାଦେ ଗୁରୁଦ୍ରୋଣ
କି ଚାହୁଁ ଖଡ଼ଗ ଘେନି ଯାକୁ ବେଗେ ହାଣ ।
କୃଷ୍ଣଙ୍କ ବଚନେ ବେଗେ ସେ ଧୃଷ୍ଟଦ୍ୟୁମନ
ଦ୍ରୋଣ ବକ୍ଷସ୍ଥଳେ ଖଡ୍ଗ ହାଣିଲେ ବହନ ।
ବେନିଖଣ୍ଡ ହୋଇକରି ଛିଡ଼ିଗଲା କାୟେ
ରକ୍ତ ଉଠିଲା ଆକାଶୁଁ ବ୍ରହ୍ମଲୋକ ଯାଏ ।
ରଥ ସଜକରି ଆସୁଥିଲା ଅଶ୍ୱତ୍ଥାମା
ଯମୁନା ତୀରେ ବାରତା କହେ କୃପବର୍ମା ।
ଆରେ ମନ କାହିଁପାଇଁ କରୁ ନଟ କୂଟ
ନ ଜାଣୁ କି ଯମ ତୋର ହୋଇଛି ନିକଟ ।
ଯାହାକୁ ଧରଇ ଥରେ ନ ଛାଡ଼ଇ ତାକୁ
ରହିଯାଏ ସେହୁ କରି ପାଟି ପାକୁପାକୁ ।
ତେତେବେଳେ କିଏ ତୋତେ ହୋଇବ ସହାୟ
ବେଳ ଥାଉଁ ଥାଉଁ ତାର ନ କରୁ ଉପାୟ ।
ନଶ୍ୱର ଶରୀରପ୍ରତି କେଡ଼େ ତୋ ଯତନ
ଖାଇବାକୁ ସୁଧାଦେଇ ବିଷ କରେ ଦାନ ।
ମଳ ମୂତ୍ର ସ୍ୱେଦରୂପେ ହୁଅଇ ସେ ଜାତ
ବାହାରି ନ ଗଲେ ତୋତେ କରଇ ସେ ଘାତ
ଅତଏବ କହେ ତୁହି ହୁଅ ସାବଧାନ
ହରେ ରାମ କୃଷ୍ଣ ରଟ ଶ୍ରୀମଧୁସୂଦନ ।
ପଥକୁ ସମ୍ବଳ ନିଶ୍ଚେ ହୋଇବ ସେ ତୋର
କୋଟିଏ ଯମ ଯାହାର ଅଟଇ କିଙ୍କର ।
ଜୀବେ ଦୟା ନାମେ ସଦା କର ରେ ବିଶ୍ୱାସ
ଦ୍ରୋଣପର୍ବରେ କହଇ ଶ୍ରୀ ଶାରଳା ଦାସ ।



## ଅର୍ଜ୍ଜୁନଙ୍କର କୋପ ଓ ଅଙ୍ଗଦର ପିତୃଋଣ ପରିଶୋଧ

ଏଥୁଅନ୍ତେ ବୈବସ୍ୱତ ମନୁ ମହାରାଜା
ଅଗସ୍ତିଙ୍କ ପାଦେ କରି ନାନାବିଧ ପୂଜା ।
ସହସ୍ର ପ୍ରଣାମ କରି ହୋଇ କୃତକୃତ୍ୟ
ବୋଇଲେ ହେ ମହାଭାଗ କରିଲ ମୁକତ ।
ଦ୍ରୋଣ ବଧ କଥା ମୋତେ କହିଲ ବିସ୍ତାରି
ଗୁରୁବଧ ଦେଖି ପାର୍ଥ ରହିଲେ କିପରି ।
ସେହିକଥା ଶୁଣିବାକୁ ବଳେ ମୋ ମାନସ
ଅଗସ୍ତି ମୁନି କହନ୍ତି ଶୁଣ ହେ ନରେଶ ।

ଦ୍ରୋଣଙ୍କ ନିଧନ ଦେଖି ପାର୍ଥ ପରିତାପି
କରେ ଖଡ୍‌ଗ ଘେନି ଧୃଷ୍ଟଦ୍ୟୁମ୍ନେ ମହାକୋପୀ
ଗୁରୁ ମୋର ଅଚେତନ ପୁତ୍ରକଷ୍ଟ ଶୁଣି
ଅଦୋଷେ ଅଯୁଦ୍ଧେ କିପାଁ ପକାଇଲୁ ହାଣି ।
ଅଧରେ ଦନ୍ତକୁ ଚାପି ଧାମନ୍ତେ କିରୀଟୀ
ଶ୍ରୀହରି ଧଇଲେ ତହୁଁ ପାର୍ଥ ଖଡ୍‌ଗମୁଷ୍ଟି ।
ଆରେ ଅର୍ଜୁନ କାହାକୁ ତୁହି କୋପ କରୁ
ବିବାଦେ ପଶିଲେ କିମ୍ପା ତୋ ପିଅର ଗୁରୁ ।
ଏ ମହାଭାରତେ ପଶି ତୁ ଏଡ଼େ ସଦୟ
ସେ ଦ୍ରୋଣ ଥିଲେ ତୁମ୍ଭରି ହୁଅନ୍ତା କି ଜୟ ।
ଆବର ଧୃଷ୍ଟଦ୍ୟୁମ୍ନର ଅଟେ ପିତାବୈରୀ
ମୈତ୍ର ଦ୍ରୋହ କଲା ଦ୍ରୋଣ ଧର୍ମ ନ ବିଚାରି ।
ଦ୍ରୋଣଗୁରୁ ହସ୍ତେ ଅସ୍ତ୍ର ଥିବା ପରିଯନ୍ତେ
ହର ବ୍ରହ୍ମା ଇନ୍ଦ୍ର ସରି ନୁହନ୍ତି ଜଗତେ ।
ଅଶ୍ୱତ୍ଥାମା ହସ୍ତୀ ହତ ବୋଇଲେ ଯୁଧିଷ୍ଠି
ସେ ପଦକ ଶୁଣିଥିଲେ ଧରି କୃପାଣଟି ।
ପଞ୍ଚ ପାଣ୍ଡବ ତୁମ୍ଭଙ୍କୁ ପକାନ୍ତା ସେ ହାଣି
ମୋର ବଳେ ରକ୍ଷାକରି ନ ପାରନ୍ତି ପୁଣି ।
ଭଲକଥା କରିଲାକ ବୀର ଧୃଷ୍ଟଦ୍ୟୁମ୍ନ
ତା ପିତାଶତ୍ରୁ ଦ୍ରୋଣଙ୍କୁ କରିଲା ନିଧନ ।
ପୁତ୍ର ହୋଇଣ ଯଦ୍ୟପି ପିତାକାର୍ଯ୍ୟ କରି
ଏକୋବନ ପୁରୁଷକୁ ସ୍ୱର୍ଗେ ନିଏ ତରି ।
ଯୋଗ୍ୟପୁତ୍ର ହୋଇ ପିତା ନ କଲେ ତାରଣ
ପିତୃଲୋକ ଘେନି ପଡ଼େ ନର୍କରେ ଯାଇଣ ।
ଶୁଣ ତୁ ଅର୍ଜୁନ ତୋର ମନୁ ଛାଡ଼ି ବ୍ୟଥା
ସାବଧାନେ ଶୁଣ ତ୍ରେତାଯୁଗର ବାରତା ।
ବାଳିକୁ ବଧ କରିଲେ ଦେବ ରଘୁପତି
ତାହାର ପୁତ୍ର ଅଙ୍ଗଦ ଥାଟେ ସେନାପତି ।
ହରିସଖା ଘେନିଣ ଯେ ଜାମ୍ବବର ବୁଦ୍ଧି
ମନ୍ଦର ଗିରି ଓପାଡ଼ି ବାନ୍ଧିଲେ ବାରିଧି ।
ଶଏ ଚଉବିଂଶ ଯୂଣ ବନ୍ଧର ଦୀର୍ଘତା
ବତ୍ରିଶଯୂଣ ହୋଇଲା ତାର ପ୍ରସାରିତା ।
ଚଉଦଯୂଣ ହୋଇଲା ଉଚ୍ଚରେ ତାହାର
'ରାମଚନ୍ଦ୍ର ବନ୍ଧାଇଲେ ବନ୍ଧ ଏ ପ୍ରକାର ।
ପର୍ବତ ସାଗର ବନ୍ଧା ଶୁଣି ଲଙ୍କନାଥ
ମନରେ ହୋଇଲା ତାର ଆଶଙ୍କା ବହୁତ ।
ଅସୁର ସୈନ୍ୟଙ୍କୁ ରାଇ ବୋଲେ ଲଙ୍କେଶ୍ୱର
ବାହାର କବାଟ ବେଗେ ପାଡ଼ିଦିଅ ମୋର ।
ଏକୋଇଶ ବନ୍ଧଦ୍ୱାର ଯେହୁ ସେନାପତି
ଲଙ୍କା ଗଡ଼ଦ୍ୱାର ସବୁ ନିରୋଧି ପଡ଼ନ୍ତି ।
ବିଭୀଷର ବୋଇଲେକ ଶୁଣ ଦାଶରଥି
କବାଟ ପାଡ଼େ ରାବଣ ରଣେ କରି ଭୀତି ।
ବିଭୀଷଣ ବାଣୀ ଶୁଣି ଶ୍ରୀରାମ ପ୍ରଚଣ୍ଡ
କୋପଭରରେ ଶ୍ରୀରାମ ଧଇଲେ କୋଦଣ୍ଡ ।
ବିଭୀଷଣ ବୋଇଲେକ ଶୁଣ ଦାଶରଥି
ଲଙ୍କା ଗଡ଼େ ଶିରଚ୍ଛେଦ କର ଲଙ୍କପତି ।
ଶ୍ରୀରାମ ପାଦେ ଲକ୍ଷ୍ମଣ ହୋଇ ପରିଣାମି
ରାବଣକୁ କୋପ କିମ୍ପା ଏଡ଼େ ଦେବ ସ୍ୱାମୀ ।
ଆଗେ ଶ୍ରୀମୁଖକୁ ଦେଇ ଲଙ୍କା ବରଗିବା
କି କହେ ରାବଣ ତାହା ପ୍ରଥମେ ବୁଝିବା ।
ଶ୍ରୀମୁଖ ଶୁଣି ଯଦ୍ୟପି ସୀତା ଦେବ ଫେରି
ଦୈତ୍ୟକୁ ମାରିବା କିମ୍ପା ବହୁ ଜୀବ ଧରି ।
ଲକ୍ଷ୍ମଣ ବଚନ ଶୁଣି ହସିଲେ ରାଘବ
ଶ୍ରୀମୁଖ ଲେଖିଣ ମୁଦ କରିଲେ ଜାମ୍ବବ ।
ଶ୍ରୀରାମ ବଚନ ଶୁଣି ମନ୍ତ୍ରୀ ଚୂଡ଼ାମଣି
ଆଦ୍ୟେ ବଂଶାବଳୀ ଦେଇ ଶ୍ରୀମୁଖ ନିର୍ମାଣି ।
ଶ୍ରୀହସ୍ତେ ମୁଦ୍ରିକା ମୁଦ ଦେଇ ରଘୁମଣି
ଅଙ୍ଗଦକୁ ହକାରିଣ ଆଜ୍ଞାଦେଲେ ପୁଣି ।
ଶ୍ରୀମୁଖ ଘେନିଣ ଚଳେ ତହୁଁ ବାଳିସୁତ
ବିକ୍ରମି ଲଙ୍କାର ଦ୍ୱାରେ ପ୍ରବେଶିଲା ଦୂତ ।
ପ୍ରଥମ ଦ୍ୱାରେ ସୁବର୍ଣ୍ଣ ସିଂହ ଭାଙ୍ଗି ଦେଇ
ଭିତରେ ପଶେ ଅଙ୍ଗଦ ଗଳଗାଜି ହୋଇ ।
ପୁଣି ଚଉରାଶୀ ଗଡ଼ ଭାଙ୍ଗିଣ ଅଙ୍ଗଦ
ଜଗତୀ ତଳେ ମିଳିଲା କରି ବାହାନାଦ ।
ରେ ରେ ରାବଣ ବୋଲିଣ ଡାକଦେଲା ରାଗେ
ଜଗତୀରୁ ଆସି ତୁହି ପ୍ରଣମରେ ବେଗେ ।
ତଦପରେ ଶ୍ରୀମୁଖକୁ ଘେନି ନାରୀଚୋର
ଲକ୍ଷ୍ମୀ ଛାଡ଼ିଗଲା ତୋତେ ଜନ୍ମ ଯେ ପ୍ରକାର ।
ରାବଣ ବୋଇଲା ତୁହି ଅଛୁ କାହାକତି
ଅଙ୍ଗଦ ବୋଲେ ଶ୍ରୀରାମଚନ୍ଦ୍ରେ ଦୂତପତି ।
ରାବଣ ବୋଲେ ତୁ ଆଉ ଶ୍ରୀରାମ ଥାଟରେ
ଲଙ୍କାପୋଡ଼ା ବୋଲି ଏକ ଜାଣୁ କି ବାନରେ

ରାବଣ୍ୟ ବାକ୍ୟେ ଅଙ୍ଗଦ ହୋଇ ଉର୍ଦ୍ଧ୍ୱରେତା
ବୋଲେ ବହୁ ରାମଦୂତ କେ କରେ ଗଣିତା ।
ଅଙ୍ଗଦ ବଚନ ଶୁଣି ରାବଣ ବୋଇଲା
ବହୁ ସୈନ୍ୟ ମାରି ମୋର ଲଙ୍କା ପୋଡ଼ିଦେଲା
ଅଙ୍ଗଦ ବୋଲେ ଜାଣିଲି ତାର ତଥ୍ୟ ଏବେ
ମାଲ୍ୟବନ୍ତେ ରାମଚନ୍ଦ୍ର ରହିଥିଲେ ଯେବେ ।
ଏକ ବାନର ଛାମୁରେ କହିଲାକ କାନ୍ଦି
ରାବଣେଶ୍ୱର ମାଇଲା ଦେବ ମୋତେ ବାନ୍ଧି
ବାନର ସୈନ୍ୟ ତା ଶୁଣି ବୋଇଲେ ଝିଙ୍ଗାସି
ଲଙ୍କାର ଅସୁରବଳ ନ ପାରିଲୁ ଧ୍ୱଂସି ।
ଏତେବୋଲି ଗର୍ଜିମାରି ଧାଇଁଲେ ସକଳେ
ଦେଖାନାହିଁ ପଳାଇଲା ଜୀବନ ବିକଳେ ।
ଏ କଥା ଶୁଣି ରାବଣ ହୋଇଲା ସ୍ତବଧ
ଶ୍ରୀମୁଖ ଦିଅ ବୋଲିଣ ବଢ଼ାଇଣ ପାଦ ।
ଅଙ୍ଗଦ ବସେ ଗୁଡ଼ାଇ ଆପଣାର ପୁଚ୍ଛ
ଜଗତୀରୁ ଅଧିକ ସେ ହୋଇଲାକ ଉଚ୍ଚ ।
ତାହା ଦେଖିଣ ବିମୁଖ ହେଲା ଦଶାନନ
ବାମକରେ ଶ୍ରୀମୁଖକୁ ଘେନି କୋପମନ ।
ମନ୍ତ୍ରୀକୁ ଦ୍ୟନ୍ତେ ପଢ଼ିଲା ଲେଖା ବିବରଣୀ
ପୁଣି ରାବଣ ପ୍ରତିଜ୍ଞା କରେ ଶିରଝୁଣି ।
ତା ଦେଖି ଅଙ୍ଗଦ ରାଗେ ମାରେ ବଜ୍ରମୁଥ
ଭାଜି ଚୂର୍ଣ୍ଣ ହୋଇଗଲା ବ୍ରହ୍ମା ଦେବା ରଥ ।
ରାବଣ ଶିର ମୁକୁଟ ଦରାଣ୍ଡି ଧଇଲା
ଜଗତୀ ଚାଳକୁ ଭାଙ୍ଗି କାଖରେ ଯାକିଲା ।
ପୁଣି ରାବଣ ହୃଦରେ ପ୍ରହାରିଲା ପାଦ
ଦେଖନ୍ତି ଅସୁରକୁଳ କ୍ଷେପିଲା ଅଙ୍ଗଦ ।
ରାମ ବିଜେ କରିଛନ୍ତି ଯାଇ ବେଲବନ
ସେଠାରେ ବାଳି ନନ୍ଦନ କଲାକ ଦର୍ଶନ ।
ଜଗତୀ ଚାଳ ମୁକୁଟ ତଳେ ଥୋଇଦେଇ
ସହସ୍ରେକ ପ୍ରଣିପାତ ହେଲା ପାଦେ ଯାଇ ।
ତାହା ଦେଖିଣ ଆଶ୍ଚର୍ଯ୍ୟ ହେଲେ ରଘୁନାଥ
ବର ମାଗରେ ଅଙ୍ଗଦ ତ୍ରିବାର ମୋ ସତ୍ୟ ।
ଅଙ୍ଗଦ ବୋଇଲା ତୁମ୍ଭେ ପିତା ବୈରୀ ମୋର
ମୋର ହସ୍ତେ ବଧ ହେବ ଦିଅ ଏହି ବର ।
ଏହା ଶୁଣି କୋପଭର ହୋଇ ହନୁମନ୍ତ
ମାଡ଼ି ବସିଲା ଅଙ୍ଗଦ ବୀରକୁ ତ୍ୱରିତ ।
ରହ ରହ ବୋଲି ରାମ ଧଇଲେ ହନୁକୁ
ଛାଡ଼ି ବାବୁ ଯା ଉଚିତ ମାଗିଲା ଆମ୍ଭଙ୍କୁ ।
ଆମ୍ଭଙ୍କୁ ସରି ନୋହିବ କରିଲେ ଯେ ରଣ
କେଉଁରୂପେ ଉଦ୍ଧରିବ ତାର ପିତୃରଣ ।
ଏଥିରେ ଅଛଇ ବାବୁ ତାକୁ ବହୁ ଧର୍ମ
ନ ଜାଣି କିପାଇଁ କରୁ ଏହିପରି କର୍ମ ।
ବଦନ୍ତି କେଶବ ତୁହି ଶୁଣ ସବ୍ୟସାଚି
ତ୍ରେତୟା ଯୁଗେ ଏରୂପେ ଚରିତ ହୋଇଛି ।
ତୁହି କିମ୍ବା କୋପକରୁ ଏ ଧୃଷ୍ଟଦ୍ୟୁମ୍ନକୁ
ପିତା କର୍ମ କଲା ବହୁଧର୍ମ ହେଲା ତାକୁ ।
ଜୟ ଜୟ ରାମଚନ୍ଦ୍ର କୌଶଲ୍ୟା ନନ୍ଦନ
ଚାରିମୂର୍ତ୍ତି ହୋଇ ମର୍ତ୍ତ୍ୟେ ହେଲେ ଅବତୀର୍ଣ୍ଣ ।
ମହୀଭାରା ଉଶ୍ୱାସିଲ ରାବଣକୁ ମାରି
ତେଣୁ ନାମ ବହିଅଛ ପ୍ରଭୁ ରାବଣାରି ।
ମହା ମହା ଗିରି ଧରି ବାନ୍ଧିଲ ସାଗର
ସେ ଗିରି କିଞ୍ଚିତ ମାତ୍ରେ ନ ହୋଇଲା ଭାର ।
ଜଳରେ ଭାସିଲା ସେହୁ ହୋଇ ସୋଲବତ
ତୁମ୍ଭ ନାମର ମହିମା ଅଟଇ ଏମନ୍ତ ।
ମୋର ହୃଦୟ ବେଦନା ଗିରିଠାରୁ ଭାରି
ତେଣୁ ରହିଅଛି ପ୍ରଭୁ ଭୟେ ଅପସରି ।
ମରା ମରା ଜପିଥିଲା ଦସ୍ୟୁ ରତ୍ନାକର
ଆହେ ରଘୁନାଥ ତାକୁ କରିଲ ଉଦ୍ଧାର ।
କାଣ୍ଡ କୋଦଣ୍ଡେ ଛେଦିଲ ତାର ପାପଚୟ
ବାଲମୀକ ନାମେ କଲ ତାର ପରିଚୟ ।
ମୋ ଦୂରିତ ଛେଦିବାକୁ ନାହିଁ ଶରାସନ
ତେଣୁ ରହିଅଛି ଅବା ହୋଇଣ ମଉନ ।
ଶୁଣ ବା ନ ଶୁଣ ପଦ୍ମପାଦ ନ ଛୁଡ଼ିବି
ଶାରଳା ଦାସ କହଇ ଜଡ଼ି ରହିଥିବି ।



## ଅଶ୍ୱଥାମାର ବ୍ରହ୍ମଅସ୍ତ୍ର ପ୍ରୟୋଗ, ଦ୍ରୋଣଙ୍କ ମୃତପିଣ୍ଡଦାହ, ଅଶ୍ୱଥାମାର ଶୋକ ଓ ଅସ୍ତ୍ର ଶସ୍ତ୍ର ଦାନ

ବଦନ୍ତି ଅଗସ୍ତି ଶୁଣ ହେ ମନୁରାଜନ
ରଥ ସଜକରି ଆସେ ଦ୍ରୋଣର ନନ୍ଦନ ।

ଯମୁନାକୁ ପାରିହୋଇ ବାଟେ ଆସୁଥିଲା
କୃପବର୍ମା ଶୋକକରି ଏଣୁ ଯାଉଥିଲା ।
ଅଶ୍ୱତ୍ଥାମାକୁ ଦେଖିଣ ଯମୁନାର କୂଳେ
ରୋଦନ କରିଲା ଉଚ୍ଚେ ଭିଣୋଇ ବିକଳେ ।
କାହିଁ ଯାଇଥିଲୁ ଆରେ ବାବୁ ଅଶ୍ୱତ୍ଥାମା
ତୋର ବଧ ଶୁଣି ମଲା ଦ୍ରୋଣ ମହାତମା ।
ଅଶ୍ୱତ୍ଥାମା ହତ ବୋଲି ଯହୁଁ ଶୁଭେ ବାଣୀ
ଦ୍ରୋଣ ମୂର୍ଚ୍ଛାଗଲା ତହୁଁ ତୋର ହତ ଶୁଣି ।
ଦ୍ରୁପଦ ରାଜା ନନ୍ଦନ ସେ ଧୃଷ୍ଟଦ୍ୟୁମନ
ଦ୍ରୋଣ ଶିର ଛେଦ କଲା ହୋଇ କୋପମନ
ଦ୍ରୋଣ ନାଶଗଲା ବୋଲି ଯହୁଁ କହେ କୃପ
ଶୁଣି ଦ୍ରୋଣି ବସିଲାକ ଯାଇ ମହାତାପ ।
ପୁଣି କୋପେ ଅଶ୍ୱତ୍ଥାମା ବ୍ରହ୍ମଅସ୍ତ୍ର ଧରି
ପାଣ୍ଡବଙ୍କୁ ମାର ବୋଲି ଦେଲାକ ତିଆରି ।
ଧୃଷ୍ଟଦ୍ୟୁମ୍ନ ସହିତରେ ପକାଇବ ମାରି
ଅସ୍ତ୍ରକୁ ଛାଡ଼ିଲା ତହୁଁ ମହାକୋପ କରି ।
ମହା ବ୍ରହ୍ମାଶରକୁ ସେ ପେଷିଲାକ ଦ୍ରୋଣି
କୋପରେ ଗର୍ଜନ କଲେ କାଳସର୍ପ ଜିଣି ।
ଆକାଶକୁ ଘୋଟିଣ ସେ ଆସେ ବ୍ରହ୍ମଶର
ପାଣ୍ଡବ ବିନାଶ ପାଇଁ ହୋଇ ତତପର ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଉତପାତ ହୋଇ
ଉଭୟ କୁଳର ସୈନ୍ୟ ନ ପାରିଲେ ରହି ।
ସହଦେବଙ୍କୁ ପୁଚ୍ଛିଲେ ଦେବ ନାରାୟଣ
ଉତପାତ ହୁଏ କିମ୍ପା କହ ତା କାରଣ ।
କିସ ଅଗୋଚର ପ୍ରଭୁ କହିବି ତୋ ଆଗ
ଅଶ୍ୱତ୍ଥାମା ଆସୁଥିଲା ହୋଇ ଅତିବେଗ ।
ବାଟରେ କହିଲା ତାକୁ ଯାଇ କୃପାଚାର୍ଯ୍ୟ
ଶୁଣିଣ କରିଲା କୋପ ଦ୍ରୋଣର ଆତ୍ମଜ ।
ସ୍ୱାମୀ ମହାବ୍ରହ୍ମଶର ଏବେ ଅଛି ପେଷି
ଏହିକ୍ଷଣି ସମସ୍ତଙ୍କୁ ଯିବ ସେହି ନାଶି ।
ଅର୍ଜ୍ଜୁନକୁ ରାଇ ଆଜ୍ଞାଦେଲେ ହୃଷୀକେଶ
ନାରାୟଣ ଅସ୍ତ୍ରକୁ ତୁ ଏବେ ନେଇ ପେଷ ।
ସହଦେବର ବାକ୍ୟରେ ନାରାୟଣ ସ୍ମରି
ନାରାୟଣାସ୍ତ୍ରକୁ ପାର୍ଥ ମନରେ ସୁମରି ।
ପାତାଳ ବୈକୁଣ୍ଠପୁରେ ଥିଲେ ବିଷ୍ଣୁବାଣ
ଅର୍ଜ୍ଜୁନ ପାଶେ ପ୍ରବେଶ ହୋଇଲେ ତକ୍ଷଣ ।
ବ୍ରହ୍ମାସ୍ତ୍ରକୁ ନାରାୟଣ ଅସ୍ତ୍ର ବେଗେ ସନ୍ଧି
ବାସବସୁତ ଆକର୍ଷି ଶର ଦେଲା ସନ୍ଧି ।
ବ୍ରହ୍ମଶର ବିଷ୍ଣୁଶର ଦୁହେଁ ହେଲେ ଭେଟ
ବ୍ରହ୍ମାଣ୍ଡ କମ୍ପିଲା ଦେବେ ପାଇଲେକ କଷ୍ଟ ।
ଆକାଶେ ରହି ନ ପାରି ବୃନ୍ଦାରକଗଣ
ବ୍ରହ୍ମାଙ୍କ ଛାମୁରେ ଯାଇ ପଶିଲେ ଶରଣ ।
ଦୁଇ ଅସ୍ତ୍ରଙ୍କର ତେଜ ଆଘାତର ଘାଏ
ହସ୍ତିନାକୁ ପଳାଇଲା ଦୁର୍ଯ୍ୟୋଧନ ରାୟେ ।
ଯୁଧିଷ୍ଠିର ଆଦି ସର୍ବେ ଗଲେ ଅପସରି
କେତେ ସୈନ୍ୟ ପୋଡ଼ିମଲେ ପଳାଇ ନ ପାରି
ଏକା ସେ ସ୍ଥାନେ ରହିଲେ କୃଷ୍ଣ ଫାଲଗୁନି
ଆବର ରହିଲେ କୃପ ଅଶ୍ୱତ୍ଥାମା ବେନି ।
ଚବିଶ ଯୋଜନ ଯାଏ ଘୁଞ୍ଚିଗଲେ ବଳ
କୁରୁକ୍ଷେତ୍ରେ ଚାରିଜଣ ରହିଲେ କେବଳ ।
ମୁନେ ମୁନେ ପରିତାଳ ହେଲା ବେନି ଅସ୍ତ୍ରେ
ପୃଥିବୀ କମ୍ପିଲା ସେହି ଦୁଇବାଣ ଘାତେ ।
ବିହନ୍ତା ପୁରୁଷ ଯାଇ କହିଲେ ହେ ବ୍ରହ୍ମା
ମଧ୍ୟସ୍ୱର୍ଗକୁ ତୋହର ନାଶେ ଅଶ୍ୱତ୍ଥାମା ।
ଶୁଣି ମରାଳ ବାହନେ ଯାଇ ଦେବପତି
ଅଶ୍ୱତ୍ଥାମାକୁ ବୁଝାଇ କଲେ ଶାନ୍ତମୂର୍ତ୍ତି ।
ବ୍ରହ୍ମାସ୍ତ୍ରକୁ ବ୍ରହ୍ମା ନିଜେ ଘେନିଲେ ହସ୍ତରେ
ନାରାୟଣାସ୍ତ୍ରକୁ କୃଷ୍ଣନେଲେ ଅତଃପରେ ।
ରଣକ୍ଷେତ୍ରେ ପଡ଼ିଥିଲା ଦ୍ରୋଣଙ୍କର ଶବ
ତାକୁ ଘେନିଗଲେ ଦ୍ରୋଣି ଆବର ମାଧବ ।
ଗଙ୍ଗାକୂଳରେ ଅଟଇ ସପ୍ତବାଟୀ ବଟ
ଦ୍ରୋଣଙ୍କୁ ଦହନ କଲେ ତାହାର ନିକଟ ।
ପୁଣି ଜାହ୍ନବୀରେ ସ୍ନାନକରି ଦୁଇକ୍ଷତ୍ରୀ
ଯେ ଯାହା ସ୍ଥାନକୁ ଦୁହେଁ ଚଳିଲେ ତଡ଼ତି ।
ଆଶ୍ୱତ୍ଥାମାର ବଦନ କୁରୁରାୟ ଦେଖି
ଅଶ୍ରୁଜଳ ବହେ ରଙ୍ଗବର୍ଣ୍ଣ ବେନି ଆଖି ।
ଧୃତରାଷ୍ଟ୍ର ଦୁଃଶାସନ ଶଲ୍ୟ କର୍ଣ୍ଣବୀର
ଶୋକ କରିଣ ସକଳେ ହୁଅନ୍ତି କାତର ।
ରାଜାପାଶେ ଅସାଷ୍ଟମେ ପଡ଼େ ଅଶ୍ୱତ୍ଥାମା
କୋଳେ ଧରି ମୁଖେ ନୀର ସିଞ୍ଚେ କୃପବର୍ମା ।
ଅସାଷ୍ଟମେ ବହୁଶୋକ କରିଲାକ ଦ୍ରୋଣି
ସକଳେ ହୋଇଲେ ଦୁଃଖୀ ତାର କର୍ମ ଶୁଣି ।

ଶୋକ ଅବସ୍ଥାରେ ଦ୍ରୋଣି ବଚନ ଭାଷଇ
ମୋତେ ସେନାପତି କର ଆହେ କୁରୁସାଇଁ ।
ପାଣ୍ଡବବଳ ନାଶିବି ମୋର ପିତା କଷ୍ଟେ
ଏକାଙ୍ଗକ୍ଷତ୍ରୀ କରିବି ତୋତେ ପଞ୍ଚରାଷ୍ଟ୍ରେ ।
ତୋର ପରାୟ ପୁରୁଷ ଆଶ୍ରା କରିଥିଲୁ
କଳ୍ପତରୁ ସେବି ଏବେ ନିରାଶ ହୋଇଲୁ ।
ପିତାରଣ ଶୁଝି ମୋର ମାନ ଉଦ୍ଧାରିବି
ପାଣ୍ଡବ ଧୃଷ୍ଟଦ୍ୟୁମନ କୃଷ୍ଣଙ୍କୁ ମାରିବି ।
ରାଜା ବୋଇଲେ ତୁ କ୍ଷତ୍ରିକୁଳେ ଅବତରି
ତ୍ରିଜୀବୀ ବର ମାଗିଲୁ ମରଣକୁ ଡରି ।
ଆଦ୍ୟୁ ବୋଲେ ନ କରିବି ତୋତେ ସେନାପତି
ବାକ୍ୟବିଚଳିତେ ପୁଂସ ହୋନ୍ତି ଅଧୋଗତି ।
ଯେତେବେଳ ପରିଯନ୍ତେ ପିଣ୍ଡେ ଥିବ ପ୍ରାଣ
ସତ୍ୟ ଲଙ୍ଘିଲେ ଜୀବନ ହେବ ଅକାରଣ ।
ପୃଥିବୀ ଚଳିବଟିକି ହେଲେ ବିଚଳିତ
ହାରିବା ଜିଣିବା କଥା ଅଟେ ଅନ୍ୟମତ ।
ଦ୍ରୋଣି ବୋଲେ ମୋର ବୋଲ ନ କରିଲୁବାବୁ
ପଛେ ସୁମରିଲେ ଆଉ ତିଳେ ନ ପାଇବୁ ।
ଅଧରକୁ ପୁଷ୍ଟ କରି ବୋଲେ କୁରୁରାଜା
ଆରେ ଅଶ୍ୱତ୍ଥାମା ମୋତେ ଏ ସବୁ ନ ବୁଝା ।
ପୂର୍ବ ଛାଡ଼ି ସୂର୍ଯ୍ୟ ଉଦେ ହୋଇଲେ ପଶ୍ଚିମ
ଚରାଚର ଜୀବ ଚିନ୍ତା ଛାଡ଼ି ଦେବ ଧର୍ମ ।
ଜଳ ଛାଡ଼ି ପର୍ବତରେ ଫୁଟିବ କମଳ
ସ୍ଥାନ ଛାଡ଼ି ସିନ୍ଧୁ ଯେବେ ଲଙ୍ଘିବଟି କୂଳ ।
ଅମାବାସ୍ୟା ରାତ୍ରେ ଯେବେ ଉଦେ ଶଶଧର
ଚନ୍ଦ୍ରନଷ୍ଟ ହେବ ଯେବେ ପୂର୍ଣ୍ଣିମା ନିଶିର ।
ସ୍ୱର୍ଗ ଛାଡ଼ି ଯେବେ ମର୍ତ୍ତ୍ୟେ ଯିବେ ବୃନ୍ଦାରକ
ତଥାଚ ଆନ ନୋହିବ ମହତଙ୍କ ବାକ୍ୟ ।
କହୁ କହୁ ମହାରୋଷ କୁରୁରାଜା ହେଲେ
ଅଶ୍ୱତ୍ଥାମାକୁ ବୋଇଲେ ଥିଲେ ଅବା ଗଲେ ।
ନିଷ୍ଠୁର କରି କହିଲା ଯହୁଁ ଧାର୍ତ୍ତରାଷ୍ଟ୍ରି
ତହୁଁ ଦ୍ରୋଣଙ୍କ କୁମର ରାଗେ ଗଲା ଉଠି ।
ମନେ ବିଚାରିଲା ହେବି ଅସ୍ତ୍ରଶସ୍ତ୍ର ତ୍ୟାଗୀ
ତୀର୍ଥବାସୀ ହୋଇ ମୁହିଁ ହେବି ମହାଯୋଗୀ ।
ଦୁର୍ଯ୍ୟୋଧନକୁ ଯାଇଣ ଶଲ୍ୟ ଜଣାଇଲା
ଅଶ୍ୱତ୍ଥାମାର ଚରିତ ଏମନ୍ତ ହୋଇଲା ।

ଶୁଣି ଦୁର୍ଯ୍ୟୋଧନ ଶୋକେ ଆକୁଳ ହୋଇଲା
ଅଳମ୍ବୁଷ ଅଳାୟୁଧ ଜୟଦ୍ରଥ ମଲା ।
ଭୀଷ୍ମ ଶରଶଯ୍ୟା କଲେ ନାଶଗଲେ ଦ୍ରୋଣ
କି ବୁଦ୍ଧି କରିଣ ଏବେ ହେବି ପରିତ୍ରାଣ ।
ଏମନ୍ତ ବାତୁଳ ହେଲେ ଦ୍ରୋଣଙ୍କ ଆତ୍ମଜ
ଆଉ କି ସମର କରି ଲଭିବି ମୁଁ କାର୍ଯ୍ୟ
ଦ୍ରୋଣ ମହାବୀର ଭରଦ୍ୱାଜଙ୍କ ନନ୍ଦନ
ଏମନ୍ତ କ୍ଷତ୍ରୀର ହେଲା ମସ୍ତକ ଛେଦନ ।
ମଘବା କରଇ ଶଙ୍କା ଦ୍ରୋଣ କଲେ ରଣ
କାଳେ ଶିରଚ୍ଛେଦ ହେଲା ଏ ଅସ୍ତ୍ର ଧରିଣ ।
ଆହେ ସର୍ବଯୋଗମନ୍ତ୍ର ହୁଏ ବିନଶ୍ୟତି
କାଳେ ସର୍ବ ବିଦ୍ୟାମନ୍ତ୍ର ହୁଏ ବିନଶ୍ୟତି ।
ଅସ୍ତ୍ରବିଦ୍ୟାର ଅଟଇ ବହୁତ ଦୁର୍ଗୁଣ
ମହା ମହା ଦ୍ୱନ୍ଦ୍ୱ ଆଣି କରେ ସଂଘଟଣ ।
ଦ୍ରୋଣଗୁରୁ ଥିଲେ ସବୁ ଗୁଣରେ ପଣ୍ଡିତ
ମନ୍ତ୍ର ପାଠକଲେ ବ୍ରହ୍ମା ହୁଅନ୍ତି ଶଙ୍କିତ ।
କୃପଙ୍କ ଆଗରେ ଦ୍ରୋଣି ଯାଇଣ କହିଲା
ରାଜା ମୋତେ ସେନାପତି ଯଦ୍ୟପି ନ କଲା
ତେଣୁ ପିତାଙ୍କର ଶତ୍ରୁ ନ ପାରିଲି ସାଧି
ଅସ୍ତ୍ର ଥିଲେ ପୁଣି ତୁଚ୍ଛା ହୋଇବି ବିବାଦୀ ।
ଅତଏବ ଅସ୍ତ୍ର ଶସ୍ତ୍ର କରିଦେବି ଦାନ
ନାନାଦି ତୀର୍ଥକୁ ଯାଇ କରିବି ସ୍ନାହାନ ।
ସହଦେବ ଜଣାଇଲା ଶୁଣି ଚକ୍ରପାଣି
ପିତା ବିଯୋଗେ ବହୁତ ଶୋକକଲା ଦ୍ରୋଣି
ଦୁର୍ଯ୍ୟୋଧନ ସେନାପତି ନ କରିଲା ଯହୁଁ
ଅସ୍ତ୍ରମାନ ଦାନଦେବ କହିଲାକ ତହୁଁ ।
ଭଲ ବିପ୍ର ପାଇଲେ ସେ ଦେବ ଅସ୍ତ୍ରଦାନ
ତାହା ଘେନିବାକୁ ଦେବ ଅଟୁ ତୁ ଭାଜନ ।
ଗଙ୍ଗାକୂଳେ ଅଛି ଦେବ ଜଟିବଟ ତଳେ
ସମସ୍ତ ଦାନ ଦେବାକୁ ରହିଛି ସେ ସ୍ଥଳେ ।
ମାନଗୋବିନ୍ଦ ଦ୍ରୋଣିକୁ ସେନାପତି କଲେ
ରଖି ନ ପାରିବୁ ନାଥ ଆମ୍ଭଙ୍କୁ ତୁ ଭଲେ ।
ଏତେବେଳେ ଭଲବେଳ ହୋଇଅଛି ହରି
ନିର୍ଭ୍ରାନ୍ତ ହୋଇଣ ତୁମ୍ଭେ ଯାଅ ବେଗକରି ।
ସହଦେବର ବଚନେ ସାନନ୍ଦ ଗୋବିନ୍ଦ
ବୋଇଲେ ଘେନିବା ଦାନ ତାକୁ କରି ମନ୍ଦ ।

ପ୍ରତ୍ୟକ୍ଷ ହୋଇଲେ ଦେବ ଉତ୍ତମ ବ୍ରାହ୍ମଣ
ଲମ୍ବିତ କରିଣ ଜୁଡ଼ା ତ୍ରିକଚ୍ଛ ବସନ ।
ଦ୍ୱାଦଶ ଚିତା ଶ୍ରୀ ଅଙ୍ଗେ ଶ୍ରୀବତ୍ସ ଲାଞ୍ଛନ
ଯଜ୍ଞୋପବୀତ କନ୍ଧରେ ଦିଶେ ଶୋଭାବନ ।
ଚନ୍ଦ୍ରକୂଟ କୁଶବିଡ଼ି ହସ୍ତେ ଛନ୍ତି ଧରି
ରୁଦ୍ରାକ୍ଷର ଜପାମାଳ ହୃଦୟରେ ଭରି ।
ପାଣ୍ଡବଙ୍କ ଛଳେ ନିଜ ରୂପ କଲେ ଗୋପ୍ୟ
ଦ୍ରୋଣି ନିକଟକୁ ଗଲେ ବ୍ରାହ୍ମଣ ସ୍ୱରୂପ ।
ଗଙ୍ଗାତୀରେ ଜଟିବଟ ତଳେ ଅଛି ବସି
ଛାମୁରେ ପଢ଼ିଲେ ବେଦ ଦେବ ବ୍ରହ୍ମରାଶି ।
ଗାୟତ୍ରୀ ଧନୁର୍ବେଦକୁ ପଢ଼ିଲେ ସେ ବାଛି
ଶୁଣି ଦ୍ରୋଣନନ୍ଦନର ନ ସ୍ଫୁରିଲା କିଛି ।
ଅଶ୍ୱାଥାମା ବୋଲେ ବିପ୍ର ଶସ୍ତ୍ର ଦେବି ତୋତେ
ଧନୁ ଅସ୍ତ୍ର ବିନା ଆନ ନ ମିଳିବ ତୋତେ ।
ଗୋବିନ୍ଦ ବୋଇଲେ ବାବୁ କରିବୁ କି ନାସ୍ତି
ତୁହି କୋପକଲେ ମୁହିଁ ପାରିବି କି ବର୍ତ୍ତି ।
ବ୍ରାହ୍ମଣ ହୋଇଣ ଯେବେ ପଶଇ ଦାନରେ
ଯେ ଯାହା ଦିଅଇ ତାହା ଘେନଇ ବେଭାରେ
ଉପର ହସ୍ତରେ ଦିଏ ଦ୍ରୋଣଙ୍କ ସନ୍ତତି
ତଳହସ୍ତ ପାତି ନେଲେ ଦେବ ଶିରୀପତି ।
ଯେତେ ଅବା ଅଙ୍ଗେ ରହିଥିଲା ତା ଭୂଷଣ
ରଥ ଅଶ୍ୱ ଆଦିକରି ଦେଲାକ ଦାନେଣ ।
ଘେନିଲେ ସେ ମହାଦାନ ଦେବ ଦଇତ୍ୟାରି
ଶସ୍ତ୍ରମାନ ରଥେ ରଖି ଚଳିଲେ ଶ୍ରୀହରି ।
ଇନ୍ଦ୍ରପ୍ରସ୍ଥରେ ପ୍ରବେଶ ହେଲେ ଜଗଭୂତ
ଭୀମସେନର ଗୋଚରେ ଦେଲେ ଧନୁ ରଥ ।
ଅସ୍ତ୍ର ଶାସ୍ତ୍ର ଦେଇଣ ସେ ତପୋଧନ ବେଶେ
ଜଷାବସ୍ତ୍ର ପରିଧାନେ ନାନା ତୀର୍ଥେ ପଶେ ।
ପିତୃକାର୍ଯ୍ୟ ସାରିଲା ସେ ଗଣ୍ଡୁକୀର ତୀର୍ଥେ
ଦଣ୍ଡ କମଣ୍ଡଳୁ ଘେନି ମିଳି ରାଜାଗ୍ରତେ ।
ବିଜୟ ମାନଗୋବିନ୍ଦ ଉତ୍ତମ ଆସନେ
ଦ୍ରୋଣି ପ୍ରବେଶିଲା କୁରୁନାଥ ସନ୍ନିଧାନେ ।
ତପୋଧନ ବେଶ ଦେଖି ବୋଇଲା ଶକୁନି
ଏତେକାଳେ ଦ୍ରୋଣି ତୋର ଜୀବ ହେଲା ଧନୀ
କ୍ଷତ୍ରିହୋଇ ପିତୃକାର୍ଯ୍ୟ କରି ନ ପାରିଲୁ
ତ୍ରିଜୀବୀ ହୋଇଣ ନିଜ ଜୀବନ ରଖିଲୁ ।
ତ୍ରିଜୀବୀ ହୋଇଣ ଯେଣୁ ମରଣକୁ ଡରି
ପିତାଶତ୍ରୁ ନ ମାଇଲେ କେଉଁ ଧର୍ମେ ସରି ।
ଦ୍ରୋଣି ବୋଲେ ବ୍ରହ୍ମଶର କଲି ମୁଁ କ୍ଷେପଣ
ଉପାୟରେ ବଞ୍ଚାଇଲେ ତାକୁ ନାରାୟଣ ।
ଶକୁନି ବୋଇଲା ବିପ୍ରକୁଳେ ତୁ ଜନମ
ତୋଠାରୁ ଦାନ ଘେନିବା କେ ହେଲା ସକ୍ଷମ
ଅଶ୍ୱଥାମା ବୋଲେ ଏକ ଦ୍ୱିଜେ ଦେଲି ଦାନ
ଶକୁନି ବୋଇଲା ଏବେ ବିଚାର ତୋ ମନ ।
ତୋହଠାରୁ ସବୁ ଶସ୍ତ୍ର କୃଷ୍ଣ ନେଇ ହରି
ଅନ୍ତର୍ଯ୍ୟାମୀ ନାଥ ସେହୁ ଗଲେ ମାୟାକରି ।
ପାଣ୍ଡବ ରକ୍ଷଣେ ହରି କୂଟ ଭିଆଇଲେ
ତାହାଙ୍କ କପଟ ଜାଣି ନ ପାରିଲୁ ହେଳେ ।
ଅଶ୍ୱଥାମା ବୋଲେ ମୁହିଁ ଶସ୍ତ୍ର ଦେଲି ଦାନ
କୃଷ୍ଣ ଘେନିଲେ ଯଦ୍ୟପି ହେଲା ବହୁ ପୁଣ୍ୟ ।
ପର୍ଶୁରାମ ଅବତାରେ ଅସ୍ତ୍ର ଦେଇଥିଲେ
କାହ୍ନା ଅବତାରେ ତାହା ବାହୁଡାଇ ନେଲେ ।
ଯେ ଆମ୍ଭଙ୍କୁ ନେଇଥିଲା ସେହୁ ଘେନିଗଲା
ମଧ୍ୟେ କେବଳ ମୋ ପିତା ଶିରଚ୍ଛେଦ ହେଲା
ଅଶ୍ୱଥାମା ବୋଇଲା ହୋ ମାନଚକ୍ରବର୍ତ୍ତୀ
ମୋ ବଚନ ଶୁଣିବୁ କି ତୁହି ନା ଏ ଘାନ୍ତି ।
ଶ୍ରୀକୃଷ୍ଣ ତୁମ୍ଭ ସର୍ବଙ୍କୁ ନାଶିବେ ଉପାୟେ
ଗ୍ରାମ ଦେଇ ପାଣ୍ଡବଙ୍କୁ ଥୁଅ କୁରୁରାୟେ ।
ଭୀଷ୍ମଶରଶଯ୍ୟା କଲେ ଦ୍ରୋଣ ହେଲେ ହତ
ଆମ୍ଭେ ଅସ୍ତ୍ର ତ୍ୟାଗୀ ହୋଇ ହେଲୁ ତପୋବନ୍ତ
ଶଲ୍ୟ ସହିତରେ ଜାଣ ନାଶଯିବ କର୍ଣ୍ଣ
ଶକୁନି ମନ୍ତ୍ରୀର କାର୍ଯ୍ୟ ହୋଇବ ସାଧନ ।
ଅଶ୍ୱଥାମାର ଏମନ୍ତ ବଚନକୁ ଶୁଣି
ରାଧେୟ ସଭାମଧ୍ୟରୁ ଉଠେ ଶିରଝୁଣି ।
ରହ ରହ ଅଶ୍ୱଥାମା ଦେଖିବୁ ମୋ ଯୁଦ୍ଧ
ଆଜଦିନ ଅନ୍ତେ ନିଶ୍ଚେ ପାଣ୍ଡବଙ୍କ ବଧ ।
ଆହେ ଅଶ୍ୱଥାମା ଆମ୍ଭ ଗୁରୁ ଯେବେ ଦ୍ରୋଣ
ମାରିବି ଦ୍ରୁପଦ ପୁଅ କରି ଘୋର ରଣ ।
ଅଶ୍ୱଥାମା ବୋଲେ ତୋ କଥାରେ ଆଶ୍ରେକଲେ
ମାନଗୋବିନ୍ଦ ସକଳ ବୁଡ଼ାଇ ବସିଲେ ।
ଯାଉଛି ପ୍ରୟାଗ ତହିଁ ଥିବି ଦିନ ଚାରି
ଜାଣିବି କ୍ଷତ୍ରିୟପଣ କେମନ୍ତ ତୁମ୍ଭରି ।

କର୍ଣ୍ଣ ବୋଇଲେ ଶିରେ ବାନ୍ଧି ମୁକୁଟ ତୁରିତେ
ହେଲା ଯୁଦ୍ଧ କରି ଭୀଷ୍ମ ଦ୍ରୋଣଙ୍କୁ ଦେଖନ୍ତେ ।
ଶିବ ବ୍ରହ୍ମା ବିଷ୍ଣୁ ଅବା ଆସୁ ପୁରନ୍ଦର
ପାଣ୍ଡବ ରଖିବା କ୍ଷମ ନୋହିବ କାହାର ।
ରାଧେୟ ପ୍ରତିଜ୍ଞା ଦେଖି ମାନଚକ୍ରବର୍ତ୍ତୀ
କର୍ଣ୍ଣ ଶିରରେ ମୁକୁଟ ବାନ୍ଧିଲାକ ଧାତି ।
ଭୀଷ୍ମଦଶଦିନ ଯୁଝି କଲେ ଶରଶଯ୍ୟା
ଦ୍ରୋଣ ସମରେ ପଡ଼ିଲେ ନବସସ୍ର ରାଜା ।
ଦ୍ରୋଣ ଦ୍ୱିତୀୟ ଯୁଦ୍ଧରେ ପଡ଼େ ଅଭିମନ୍ୟୁ
ତୃତୀୟ ଯୁଦ୍ଧେ ପଡ଼ିଲା ସିନ୍ଧୁ ରାଜା ସୂନୁ ।
ଚତୁର୍ଥ ରାତ୍ର ଯୁଦ୍ଧରେ ବହୁସୈନ୍ୟ ବଧ
ପଞ୍ଚମ ଦିବସେ ହେଲା ଦ୍ରୋଣ ଶିରଚ୍ଛେଦ ।
ଦ୍ରୋଣ ଅନ୍ତେ ସେନାପତି ହୋଇଲେ ଯେ କର୍ଣ୍ଣ
ପାଞ୍ଚଲକ୍ଷ ରଥସବୁ ଅଟଇ ସୁବର୍ଣ୍ଣ ।
ନବଲକ୍ଷ ହସ୍ତୀ ସର୍ବେ ମହାମତ୍ତ ଦନ୍ତା
ଅର୍ବୁଦେ ଅଶ୍ୱ ପଦାତି ଅଟେ ଅଗଣିତା ।
ତାଡ଼ ତୋଡ଼ର ବାହୁଟି ପୁଣି ଜଗଦ୍‌ବଳା
ମଣିମୁକୁଟ କୁଣ୍ଡଳ ଗଳେ ରତ୍ନମାଳା ।
କଣୟରଥେ କେଶରୀ ଲାଙ୍ଗୁଡ଼ର ଧ୍ୱଜା
ବେନିକୋଟି କଣୟକୁ ବୃଷ୍ଟି କଲା ରାଜା ।
ରାଧେୟ ସ୍ମରଣ କଲା ଦେବୀ କାତ୍ୟାୟିନୀ
ଜୟ ତୁ ଜୟ ତୁ ମାତ କାମାକ୍ଷୀ ଜନନୀ ।
ଜୟ ତୁ ଜୟ ମାତା ଗୋ ଅରିଷ୍ଟ ନିବାରୁ
ତୋର ନାମ ସୁମରନ୍ତେ ସର୍ବଦା ତୁ ତାରୁ ।
ଜୟ ତୁ ଜୟ ତୁ ମାଗୋ ଅଟୁତୁ ପିଙ୍ଗଳା
ଜୟ ତୁହି ମହାମାୟୀ ତୁ ସର୍ବମଙ୍ଗଳା ।
ଜୟ ତୁ ଜୟ ତୁ ମାତ ଅଟୁ ବିଶ୍ୱରୂପୀ
ସକଳ ଜନଙ୍କୁ ସଦା ରଖୁ ତୁ ଅଦ୍ୟାପି ।
ତୁହି ମାତ ମାତଙ୍ଗିନୀ ତୁହି ଗୋ ଶାରଳା
ଧ୍ୟାନ ଧାରଣା ଜନଙ୍କ ସଙ୍ଗେ ତୋର ଖେଳା ।
ଜୟ ତୁ ଜୟ ତୁ ମାତ ତୁହି ନାରାୟଣୀ
ଦେବ ଦାନବ ମାନବ ଶରଣ ରକ୍ଷଣୀ ।
ତୁହି ମାତ ରୂପାନ୍ତରେ ଅଟୁ ଗୋ ହିଙ୍ଗୁଳା
କାତ୍ୟାୟିନୀରୂପେ ମାଗୋ ହେଉ ମତିଭୋଳା
ତୁହି ମାତ ମହାମନ୍ତ୍ରରୂପୀ ଗୋ ଗାୟତ୍ରୀ
ଜଗତଜନ ମାତାଙ୍କ ଅଟୁ ଜନୟିତ୍ରୀ ।
ତୁ ମାତା ଅଟୁ ପ୍ରଳୟକାଳ ରକ୍ଷାକାରୀ
ତୋ ପାଦେ ଶରଣ ପଶେ ରଖ ଶାକମ୍ଭରୀ ।
ଶୂଦ୍ରମୁନି ଶାରଳାର ଘେନ ଏ ବିନତି
ସର୍ବଦା ମୋ ହୃଦେ ଥାଇ କର ତୁ ବସତି ।
ଆହେ ବିଜ୍ଞଜନମାନେ ନ ଧରିବ ଦୋଷ
ଦ୍ରୋଣପର୍ବ ହେଲା ଏହିଠାରେ ଶେଷ ।

## ଦ୍ରୋଣପର୍ବ ସମାପ୍ତ

# ମହାଭାରତ

## ବିଜ୍ଞାପନ

ନିମ୍ନଲିଖିତ ପୁସ୍ତକ ସବୁ ସରସ କାଗଜରେ ସୁନ୍ଦର ଛାପା ହୋଇ ବିକ୍ରୟ ନିମିତ୍ତ ଗଚ୍ଛିତ ଅଛି। କ୍ରୟ କରିବା ପାଇଁ ଆପଣଙ୍କ ନିକଟସ୍ଥ ପୁସ୍ତକ ବ୍ୟବସାୟୀଙ୍କ ସହିତ ଯୋଗାଯୋଗ କରନ୍ତୁ। ଏଥିରେ ସତନ୍ତ୍ର କମିଶନ ବ୍ୟବସ୍ଥା ଅଛି।

## ଅଷ୍ଟାଦଶ ପୁରାଣ

- ବ୍ରହ୍ମପୁରାଣ ସେଟ୍
- ପଦ୍ମପୁରାଣ ସେଟ୍
- ମହାବିଷ୍ଣୁ ପୁରାଣ
- ଶିବ ପୁରାଣ ସେଟ୍
- ନାରଦ ପୁରାଣ
- ମାର୍କଣ୍ଡେୟ ପୁରାଣ
- ଅଗ୍ନି ପୁରାଣ
- ଭବିଷ୍ୟ ପୁରାଣ
- ବ୍ରହ୍ମବୈବର୍ତ୍ତ ପୁରାଣ ସେଟ୍
- ଲିଙ୍ଗ ପୁରାଣ
- ବରାହ ପୁରାଣ
- ସ୍କନ୍ଦ ପୁରାଣ
- ବାମନ ପୁରାଣ
- କୂର୍ମ ପୁରାଣ
- ମତ୍ସ୍ୟ ପୁରାଣ
- ଗରୁଡ଼ ପୁରାଣ
- ବ୍ରହ୍ମାଣ୍ଡ ପୁରାଣ
- ଭାଗବତ ସେଟ୍



ପ୍ରକାଶକ-
ଧର୍ମଗ୍ରନ୍ଥ ଷ୍ଟୋର ™
ଅଲିଶା ବଜାର, କଟକ-୨
ଫୋନ୍ : (୦୬୭୧)୨୫୦୮୨୯୬
website : www.dharmagranthastore.com